

# ଶାରଳା ।
# ଚଣ୍ଡୀ ଯୁଦ୍ଧ

---

ଶ୍ରୀ ନିତ୍ୟାନନ୍ଦ ସାହୁ ଓଗେରଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।

କଟକ ଅରୁଣୋଦୟ ଯନ୍ତ୍ରାଳୟରେ

ପ୍ରିଣ୍ଟର ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ତୃତୀୟବାର ମୁଦ୍ରିତ ।

* ପ୍ରାପ୍ତିସ୍ଥାନ *

ଅରୁଣୋଦୟ ପୁସ୍ତକାଳୟ,

ବାଲୁବଜାର, ପୋଃ ଅଃ ଚାନ୍ଦନୀଚୌକ କଟକ

ମୂଲ୍ୟ ୫ ୧୯ ୧୯୩୫ ଏକଟଙ୍କା ମାତ୍ର ।

# ଚ ଣ୍ଡୀ ପୁ ରା ଣ ।

## ସୂ ଚି ପ ତ୍ର ।



ସ ମା ପ୍ତ ।

# ଚଣ୍ଡୀପୁରାଣ ।

## ବା

## ଚଣ୍ଡୀଯୁଦ୍ଧ ।

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥

ଯଂ ବ୍ରହ୍ମା ବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ-
ର୍ବେଦୈଃସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତ ତଦ୍ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥

ହରେ ମୁରାରେ ମଧୁକୈଟଭାରେ
ଗୋବିନ୍ଦ ଗୋପାଳ ମୁକୁନ୍ଦ ଶୌରେ ।
ଯଜ୍ଞେଶ ନାରାୟଣ କୃଷ୍ଣ ବିଷ୍ଣୋ
ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ ॥

ମଧ୍ୟେ ସୁଧାବ୍ଧି ମଣିମଣ୍ଡପରତ୍ନବେଦୀ-
ସିଂହାସନୋପରିଗତାଂ ପରିପୀତବର୍ଣ୍ଣାଂ ।
ପୀତାମ୍ବରାଂ କନକଭୂଷଣମାଲ୍ୟଶୋଭାଂ
ଦେବୀଂ ଭଜାମି ଧୃତମୁଦ୍ଗରବୈରିଜିହ୍ୱାଂ ॥

---

### ✱ ଗଣେଶଙ୍କ ବନ୍ଦନା । ✱

ଜୟ ଜୟ ଗଣେଶ୍ୱର ଜୟ ବିଘ୍ନରାଜ ।
ଦର୍ଶନେ ପ୍ରସନ୍ନେ ଯାର ହୁଏ ସିଦ୍ଧକାର୍ଯ୍ୟ ॥
ଶିବଜାନନ୍ଦନ ସ୍ୱାମି ଭକତବତ୍ସଳ ।
ତାଣ୍ଡବ ନୃତ୍ୟରେ ନାଥ ଅନୁବ୍ରତେ ଖେଳ ॥
ଜୟ ଜୟ ବକ୍ରତୁଣ୍ଡ ସ୍ଥୂଳ ଉଦର ।
ପାଶ ଅଙ୍କୁଶରେ ଶୋଭା ପାଏ ତୋର କର ॥
ଅଷ୍ଟାଦଶ ପୁରାଣର ଅଟୁ ଆଦ୍ୟମୂର୍ତ୍ତି ।
ଭକ୍ତଜନେ ବର ଦେଉ ହୋଇ ତୋଷମତି ॥
କଉତୁକେ ବଢାଇଲୁ କାମ କାଳନିଦ୍ରା ।
ଜପ ତପରେ ତୁ ସାଧ କଲୁ ସର୍ବମୁଦ୍ରା ॥
ମେରୁ ତୁଲ୍ୟ ମଉଳ ତୋ ଅଟେ ଡଗଡୋଳା ।
ଚତୁର୍ଦ୍ଦଶ ନାୟକ ତୁ ସଦା ରଙ୍ଗେ ଖେଳା ॥
ତୋହର କୃପାରେ ମୂର୍ଖ ହୁଅଇ ପଣ୍ଡିତ ।
ହୃଦ୍ଗତ ଅଛଇ ତୋର ଠାରୁ ସର୍ବଶାସ୍ତ୍ର ॥

ସ୍ଥୂଳଶୋଣ୍ଡ ଭୁଜ ତୋର ଅତ୍ୟନ୍ତ ସୁନ୍ଦର ।
ମୂଷିକବାହନେ ତ୍ରିମୁ ରୁଦ୍ରାଂଶ ପୁର ॥
ଭକତଜନସ୍ଥନ ସ୍ୱାମି ତୁ ଚଣ୍ଡିନାୟକ ।
ସର୍ବଦେବେ ଅଗ୍ରପୂଜ୍ୟ ଯାବତ ଚନ୍ଦ୍ରାର୍କ ॥
ଜଗତର ନାଥ ଦେବ ସୃଷ୍ଟିର କରତା ।
ଅଷ୍ଟାଦଶ ପୁରାଣର ତୁହି ଯେ ବକତା ॥
ତୋହର ମହିମା ମୁଖେ କେହୁ କହିପାରେ ।
ବାରିନିଧିକ ଗଣ୍ଡୁଷ କଲୁ ତୃଷାତୁରେ ॥
ସପତସମୁଦ୍ର ଗୋପ୍ୟ ତୋର କୁମ୍ଭସ୍ଥଳ ।
ନ ଭରିଲା ଶଣ୍ଡବର୍ଣ୍ଣ ମହାର୍ଣ୍ଣବ ଜଳ ॥
ନାଥ ତୁହି ରଖାକଲୁ ସପ୍ତଦ୍ୱୀପା ପୃଥ୍ୱୀ ।
ତୋର ହେତୁ ଚରାଚର ବରତୁଅଛନ୍ତି ॥
କାର୍ତ୍ତିକେୟ ପ୍ରହାରଲେ ବାମପାଦ ତୋତେ ।
ଦକ୍ଷିଣଦନ୍ତ ଭଗନ ହୋଇଲା ତଦର୍ଥେ ॥
ସେ ଭଗ୍ନଦନ୍ତ ପଡ଼ନ୍ତେ ଅବନୀ ଉପରେ ।
ଉପାଗତ ହେଲା ମଷୀ ଦନ୍ତ ମହାସ୍ତ୍ରରେ ॥
ପୃଥ୍ୱୀ ଦୁଃଖ ଦେଖି ସୂତକଲେ ଶୂଳପାଣି ।
ବାମକରେ ସମ୍ଭାଳିଲୁ ଭଗ୍ନଦନ୍ତ ଅଣି ॥
କୋପ ସମ୍ଭାଳି ନ ପାରୁ ତୋର ବାଳବୁଦ୍ଧି ।
ତୁମାରେ ଶାପ ଦହିଲୁ ହେଉ କୁଷ୍ଠବ୍ୟାଧି ॥
ତୋର ନାମ ଚନ୍ଦ୍ରବାରୁ ପାଇଲେ ସେ ରକ୍ଷା ।
ଅପଦ ଶାସ୍ତ୍ର କର ତୁ ବୁଝାଇଲୁ କକ୍ଷା ॥
ଅମୃତ ଭୋଜନେ ତବ ଶରୀର ଭୂପତି ।
ନମସ୍ତେ ନମସ୍ତେ ମହାବିନାୟକ ମୂର୍ତ୍ତି ॥
ଝମ ଝମ ବାଜେ ତୋର ଚରଣେ ନୂପୁର ।
ଚଳେ ମଷୀ ପାଇ ଯାର ଅଙ୍ଗୁଷ୍ଠର ଭର ॥
ସ୍ୱାମି ରାଗରାଜ ଯେହ୍ନେ ମାଳବ ବସନ୍ତ ।
ଭୂପାଳ ଯେ ଅଶାବରୀ ଗୁଞ୍ଜରୀ ସହିତ ॥
କାମୋଦୀ କଳହଂସା ଆଉ ପଟ୍ଟହ ମଞ୍ଜରୀ ।
କର୍ଣ୍ଣାଟ ସିନ୍ଧୁଡ଼ା ଆଦ କର ଧନାଶ୍ରୀ ॥
ମଲ୍ଲାର ଚନ୍ଦ୍ରାଦେଶାକ୍ଷ ତୋଡ଼ି ରାମକେରୀ ।
ବଙ୍ଗାଳାଶ୍ରୀ ଗାନ୍ଧାର ଯେ କେଦାରବଦକର ॥
ବସନ୍ତବରାଡ଼ି ଗୁର୍ଜ୍ଜରୀ ଯେ କୁମ୍ଭକାମୋଦୀ ।
କାଳି ମଙ୍ଗଳବରାଡ଼ି ଭଇରବୀ ଆଦ ॥
ଏ ରାଗ ରଜାଏ ହେନ ସୁନ୍ଦରୀ ନକର ।
ଝଟଥାନ୍ତି ଦେବ ତବ ଚରଣ ତଳର ॥

ଗୁଣସାଗର ନାଥ ତୁ ଅଟୁ ମହାବାହୁ ।
ନର ହୋଇ ତୋ ମହିମା ବର୍ଣ୍ଣିବ ବା କେହୁ ॥
ବିଘ୍ନରାଜ ପାଦ ଥାଉ ମମ ହୃଦଗତେ ।
ବନ୍ଧବ କୃତାନ୍ତ ଦଣ୍ଡୁ ତୋତେ ସୁମରନ୍ତେ ॥
ମନ୍ମଥ ତୁଲ୍ୟ ସୁନ୍ଦର ବିନାୟକ ନାମ ।
ଦର୍ଶନେ ପ୍ରସନ୍ନେ ନାଥ ଖଣ୍ଡୁ ପାପତମ ॥
କାମିନୀ ମୋହନ ସ୍ୱାମି ମହେଶ ଅଙ୍ଗଜ ।
ମୃଣାଳ ପରାୟେ ଯାର ଅଟେ ଚତୁର୍ଭୁଜ ॥
ଯୋଗେଶ୍ୱର ନାଥ ତୁହି ସଦା ସିଦ୍ଧରୂପ ।
ହେଲେ ବଢାଇଲୁ ସ୍ୱାମି କୃତାନ୍ତର ଦର୍ପ ॥
ସାଧୁ ସନ୍ଥ ପଣ୍ଡିତର ଅଟୁ ଗଳାମାଳ ।
ସୁର ସିଦ୍ଧ ମୁନିଗଣେ ଥାଉ ପ୍ରତିପାଳ ॥
ତୁ ଦେବ ଜଗଜ୍ଜୀବନ ପ୍ରଭୁ ଚିନ୍ତାମଣି ।
ତୋ ନାମ ଭଜିଲେ ଭବୁଁ ତରଯାନ୍ତି ପ୍ରାଣୀ ॥
ସୃଷ୍ଟି ପାଳନକରତା ଅଟେ ଗଣେଶ୍ୱର ।
ମୋ ଶିରକମଳ ନ୍ୟସ୍ତ ପଦ୍ମରେ ତୋହର ॥
ଅକାଶ ପ୍ରାୟେ ଘୋଟିଛି ମୋତେ ମୋହଫାଶି ।
ଏଥୁଁ ରକ୍ଷାକର ମୋତେ ମୁକ୍ତିଗତି ଦେସି ॥
ମୁହିଁ ତୋତେ ଭେଟିଲଇଁ କଳ୍ପବଟ ତଳ ।
ପ୍ରସନ୍ନ ହୋଇବା ମୋତେ ଗିରିଜାଦୁଲାଳ ॥
ସର୍ବ ସମ୍ପଦ ପାଇଲି ତୁମ୍ଭ ଦରଶନେ ।
ମନୋରଥ ପୂର୍ଣ୍ଣକର ମୋହର ଅବଦ୍ୟେ ॥
ସ୍ୱାମି ଅଜପା ମନ୍ତ୍ରରେ ଯାର ଯୋଗଲୟ ।
ତୋହର ପ୍ରସନ୍ନେ ନାଥ ହୋଇବ ନିର୍ଭୟ ॥
ଶ୍ରୀ ବିଘ୍ନରାଜର ନାମ ହୃଦୟରେ ଭାବ ।
ସୁଜନଙ୍କ ହିତେ ରତ ଶ୍ରୀ ଶାରଳା କବ ॥



## ✱ ବିଷ୍ଣୁ ବନ୍ଦନା । ✱

ଜୟ ଜୟ ଜଗନ୍ନାଥ ରାଜୀବଲୋଚନ ।
ସର୍ବଜନ ଲୟ ତବ ପାଦପଙ୍କଜେଣ ॥
ବିକଚ ନୀଳେନ୍ଦୀବର ପ୍ରାୟ ମୁଖ ଶୋଭ ।
ସାରଦାବକ୍ଷେ ସିନ୍ଧୁସୁତା ପ୍ରାଣବନ୍ଧୁ ।
ସଂସାର ଅନ୍ଧକାରକୁ ତୁହି ପୂର୍ଣ୍ଣଇନ୍ଦୁ ॥
ଜଗଜ୍ଜନ ସୋଦର ତୁ ବସୁଦେବ ବାଳ ।
କଉତୁକେ ବିନାଶିଲୁ ଅସୁରଙ୍କ ବଳ ॥

ବାମକରେ ଶଙ୍ଖ ଦକ୍ଷକରେ ସୁଦର୍ଶନ ।
ନରକୁତାରଣ ଜୟ ଜୟ ଭଗବାନ ॥
ଅନନ୍ତ ସୃଷ୍ଟି ଯାହାର ଗର୍ଭେ ହୋଏ ଲୀନ ।
ମନୁଷ୍ୟ ହୋଇ ମୁହିଁ କି କରବ ବର୍ଣ୍ଣନ ॥
ଜଗତଜନ ରକ୍ଷକ ଜଗନ୍ନାଥ ନାମ ।
ପୁରୁଷଙ୍କ ଶ୍ରେଷ୍ଠ ହେତୁ ପୁରୁଷ ଉତ୍ତମ ॥
ଅନିତ୍ୟ ସଂସାର ଏଥିଁ ନାହିଁ ଥଳ କୂଳ ।
ପୁରୁଷୋତ୍ତମ ନାମ ମୋ ବୋଇତ କେବଳ ॥
ଜୟ ଜୟ ରାମଚନ୍ଦ୍ର ରାଜୀବନୟନ ।
ଜୟ ଜୟ ରାମଚନ୍ଦ୍ର କୌଶଲ୍ୟାନନ୍ଦନ ॥
ବିଦ୍ୟାବନ୍ତ ପଣେ ନାଥ ଅଟୁ ତୁ ସୁଜ୍ଞାନୀ ।
ଇହଲୋକେ ଦାତା ବୋଲି ତୁମ୍ଭଙ୍କୁ ଯେ ଜାଣି ॥
ଗୁଣ ଗମ୍ଭୀର ନାଥ ତୁ ଅଟୁ ସତ୍ୟସନ୍ଧ ।
ମାୟା କୂଟରେ ଛେଦିଲୁ ଦୁଷ୍ଟ ଦଶକନ୍ଧ ॥
ମାୟାକୁ ତୁ ମାୟା କରି ପାତିଅଛୁ ଛନ୍ଦ ।
ରଜତମ ନାଶ ନାଶେ ତୋ ପଦାରବିନ୍ଦ ॥
ଗହଳ ବୋଲି ତୁ ନାଥ ଅଟୁ ଗନ୍ଧଭୋଗୀ ।
ଧ୍ୟାନ ଧାରଣାରେ ସଦା ପରଂହଂସ ଯୋଗୀ ॥
ହୃରଥ ବୋଲିଣ ତୁହି ସବୁ ତହିଁ ଅଗ ।
ଜୂରଅଙ୍କଠାରୁ ବଳି ସେନ୍ତୁ ଅଛୁ ଭଗ ॥
ସତ୍ୟବନ୍ତ ପଣେ ଏକା ତୁହି ସତ୍ୟସନ୍ଧ ।
ଏ ମୋହ-ସଂସାରସିନ୍ଧୁ ଅଟେ ଅତି ଦ୍ୱନ୍ଦ ॥
ହଟ ଯେ ବୋଲନ୍ତି ସ୍ୱାମି ତୁ ହଟନାଗର ।
ଦୟାବନ୍ତ ପଣ ତୋର ସବୁ ଜନ୍ତୁଠାର ॥
ବନ୍ଧୁ ବୋଲନ୍ତିଣ ରାମ ବିପକ୍ଷି ସପକ୍ଷ ।
ଏଁ ଅଖିଳ ସଂସାରତ ସବୁ ଅଟେ ମିଛ ॥
ଶରଣପଞ୍ଜର କରୁ ବଇର ମୁକତ ।
ସ୍ଥିର ବୋଲନ୍ତିଣ ରାମ ତୁହି ଶାନ୍ତମୂର୍ତ୍ତି ॥
ସୁନ୍ଦରବନ୍ତ ତୁହିତ ସଂଗ୍ରାମେ ଶକତା ।
ସ୍ନେହକାଶ ବୋଲନ୍ତିଣ ତୁହି ମାତା ପିତା ॥
ସତ୍ୟ ପାଳିବାକୁ ନାଥ ତୋତେ ନାହିଁ ସର ।
ଜ୍ଞାନୀ ବୋଲନ୍ତିଣ ତୁହି ଚଇତନ୍ୟକାଶ ॥
ଅଥଳକୁ ଥଳ ତୁହି ଜଳକୁ କମଳ ।
କମଳକୁ ଗନ୍ଧ ତୁହି ଗନ୍ଧେ ପରିମଳ ॥
ଚୁମ୍ବିବାକୁ ରାମ ତୁହି ଅଟୁନା ଭ୍ରସଳ ।
ଭାବ ଅଭାବ ଯେ ସ୍ୱାମି ଜାଣୁ ତୁ ସକଳ ॥

ଭକତଜନର ଭାବ ତୁମ୍ଭେ ଏକା ଜାଣ ।
ସେବକ ଅନୁରୂପରେ କର ଯେ ପାଳନ ॥
ଅଚିନ୍ତା ଚିନ୍ତାମଣି ହେ ଅଟ ଜ୍ଞାନଗୁରୁ ।
ନିଶ୍ଚଳ ପଣରେ ତୁମ୍ଭେ ଅଟ ମହାମେରୁ ॥
ଶୀତଳ ଗୁଣରେ ତୁମ୍ଭେ ମଳୟ ପବନ ।
ଉପଭୋଗ ବୋଲିବାକୁ ମଳୟ ଚନ୍ଦନ ॥
ତୁମ୍ଭେ ଯହିଁ ନାହିଁ ରାମ ତହିଁ ନାହିଁ କିଛି ।
ଧ୍ୟାନ ଧାରଣାରେ ଅଟ ତୁମ୍ଭେ ଶିବରଷି ॥
ମନ ପ୍ରକୃତି ପବନ ମହିମା ଯେ ମାନ ।
ଜଳସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ॥
ସଜ୍ଜନ ବନ୍ଦନ ରାମ ବିକଟଙ୍କୁ ବାଙ୍କ ।
ପରମ ଯୋଗରେ ରାମ ଅଟ ନିଷ୍କଳଙ୍କ ॥
ଅଗ୍ନି ସ୍ୱରୂପରେ ରାମ ସବୁ କର ଧ୍ୱଂସ ।
ମୁନିମାନଙ୍କର ପୁଣି ପରଂଯୋଗ ହଂସ ॥
ନିରାକାର ଅବତାର ତୁମ୍ଭେ ସୂର୍ଯ୍ୟବଂଶୀ ।
ଗୁଣସାଗର ନାଥ ତୁ ବଇକୁଣ୍ଠବାସୀ ॥
ବିଦଣ୍ଡିତ ଲୋକେ ନାଥ ଦଣ୍ଡିବାକୁ କ୍ଷମ ।
କି ସ୍ତୁତି କରବ ତବ ମୁଁ ମୂର୍ଖ ଅଧମ ॥
ମହିମା ତୁମ୍ଭର ଧାତା ନ ପାରଇ କହି ।
ମାନବ ହୋଇଣ ମୁହିଁ କିସ କହିବଇଁ ॥
ମୋହରେ ମୋହିଲ ସ୍ୱାମି ଜଗତର ଜନ ।
ଉତ୍ତନ୍ତା ବୁଦ୍ଧନ୍ତା ନାଥ ରାଜୀବନୟନ ॥
ହସ୍ତୀକି ତୁ ମତ୍ତକରୁ ମତ୍ତକୁ ଅଙ୍କୁଶ ।
ମୁହିଁ ତୋତେ ସ୍ତୁତି ଅବା କରିବଇଁ କିସ ॥
ରାମ ନାମ ବେନିବର୍ଣ୍ଣ ମାଗଇ ମୁଁ ତୋତେ ।
ହସ୍ତରେ ହେଉ ପ୍ରାପତ ଆଜ୍ଞାଦଅ ମୋତେ ॥
ପ୍ରାଣନାଶ କାଳେ ଶବ୍ଦେ ଥିବୁ ମୋର ହର ।
ତବ ନାମ ଚନ୍ଦ୍ର ଭବଜଳୁଁ ଯିବ ତର ॥
ଜ୍ଞାନେ ହରିନାମ ରଟି ଧ୍ୟାନେ ହରିନାମ ।
ଯାହା ମୁନିଜନମାନେ କରନ୍ତି ଅଧ୍ୟାନ ॥
ଅହର୍ନିଶି ରାମ ନାମ ଭରୁଥିବ ପୁଣି ।
ଏ ମାୟା ସଂସାର ଅନ୍ଧକାର ଯିବ ଜଣି ॥
ନାରାୟଣଙ୍କର ଧ୍ୟାନେ ଦୁଃଖନାଶ ଯାଇ ।
ନାମ ସୁମରନ୍ତେ ବଇକୁଣ୍ଠ ପୁର ପାଇ ॥
ନରକତାରଣ ନାଥ ନାମ ତୋର ହର ।
ଯେଉଁ ନାମ ସୁମରନ୍ତେ ଭବବନ୍ଧ ତର ॥

ମଧୁକୈଟଭ ନିବାରଣ ନାମ ତୋର ।
ତୋ ନାମ ଚଣ୍ଡୀବଳ ଦେଉ ଅଭୟ ଯେ ବର ॥
ପାଦସେବା କଲେ ନାଥ ସମ୍ପଦ ଦେଉ ।
କ୍ରୋଧ କଲେ ଦୁଃଖ ଦେଇ ସମ୍ପଦକୁ ନେଉ ॥
ରାମ ନାମ ସ୍ମରିଲେ ନର୍କୁ ତରିଯାଇ ।
ସେହି ରାମ ନାମ ଗୋଷ୍ଠ ହୃଦେ ମୁଁ ଭାବଇ ॥
ତାରକମନ୍ତ୍ର ନାମରେ ତୋର ନାମଗୋଷ୍ଠି ।
ରାମ ରାମ ବୋଲି ସଦା ଭାବନ୍ତି ଧୂର୍ଜଟି ॥
ମହାଦେବ ଉଚ୍ଚାରନ୍ତି ଯେଣୁ ତୋର ନାମ ।
ପାପୀ ହେଲେ ମଧ୍ୟ ହୁଏ ବ୍ରହ୍ମାର ସମାନ ॥
ରାମ ନାମ ଭବ ଭାବ ଦେବ ପଶୁପତି ।
ହରିହର ଏକଆତ୍ମା ଜଗତେ ବିଖ୍ୟାତି ॥
ଅହେ ବୁଧ ଜନେ ମୋର ନ ଧରିବା ଦୋଷ ।
କଳିତ କର୍ମରୁ ଏହା ହୋଇଲାକ ଦୃଶ୍ୟ ॥
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ ସନ୍ଧି ।
ନ ଜାଣଇ ଅକ୍ଷର ଯେ ଜାସ ଅବା ବୁଦ୍ଧି ॥
ଏଡ଼େବଡ଼ ପଣ୍ଡିତ ମୁଁ ଅଟଇ ସଂସାରେ ।
ଶାରଳା ଦାସ ମୋ ନାମ ପ୍ରକଟ ଲୋକରେ ॥



* ଦୁର୍ଗାସ୍ତୁତି । *

ଜୟ ଜୟ ଦୁର୍ଗା ମାଗୋ ଦୁର୍ଗତିନାଶିନି ।
ଜୟ ଜୟ ଦୁର୍ଗା ମାଗୋ ସଙ୍କଟତାରିଣି ॥
ଜୟ ଜୟ ଦୁର୍ଗା ମାଗୋ ସଦାଶିବ ଜାୟା ।
ଶତବାହୁ ଜନକକୁ ଜିଣି ତୋର କାୟା ॥
ସତ୍ୟଯୁଗେ କୃପାଜଳ ନାମେ ଏକବ୍ରହ୍ମା ।
ସୃଷ୍ଟିର କରତା ଅଟେ ସେହୁ ମହାତମା ॥
ତାର କୁଟଳ ଉତପତ୍ତି ଯେଉଁ ମହାଦେବୀ ।
ମନୁଜାନ ବଖାଇଲେ ପରମ ବୈଷ୍ଣବୀ ॥
ନାମ ତାଙ୍କର ନର୍ମଦା ଦେବୀ ସରସ୍ୱତୀ ।
ଶାସ୍ତ୍ରରେ ଜଡ଼ିତା ସେହୁ ସର୍ବଦା ଭୂପତି ॥
କଳିତ ଦୋଷରେ ପିତାମହଙ୍କର ଶାପେ ।
ମର୍ତ୍ତରେ ଜନମ ଅଛି ଶ୍ରୀ ହିଙ୍ଗୁଳାରୂପେ ॥
ଜମ୍ବୁଦ୍ୱୀପ ଭରତଖଣ୍ଡ ଦାବସ୍ଥ ଐଶାନ୍ୟେ ।
ଗୋପ୍ୟ ହେଲେ ଚନ୍ଦ୍ରଭାଗା ତୀର୍ଥତଟ ସ୍ଥାନେ ॥
ପରଶୁରାମ ପାଟଣା ଯେ କନକାବତୀ ।
ଦେବୀ ରୂପେ ରହି ତହିଁ ଲୋକଙ୍କୁ ପାଳନ୍ତି ॥
ଜଗତ୍‌ଜନତାରିଣୀ ସେ ଶାରଳା ବୋଲାଇ ।
ତାହାଙ୍କର ନାମ ହୃଦେ ଭାବେ ସଦା ମୁହିଁ ॥
ଅଭୟା ଭବାନୀ ମାଗୋ ଶ୍ରୀଶାରଳା ଦେବୀ ।
ଶୂଦ୍ରମୁନି ଶାରଳା ଯେ ଅଛି ତୋତେ ଭାବି ॥
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି ।
ସଂଯୋଗରେ ଭେଟିଲଇଁ ଅଭୟା କାମାକ୍ଷୀ ॥
ନାହିଁ ନୋହିବ ନୋହୁଛି ଏହି ଘୋର ଯୁଗେ ।
ତୁମ୍ଭ ମା ବରଦାୟିନୀ ଅଟ ମଧ୍ୟସ୍ୱର୍ଗେ ॥
ତୋହର ଚରଣେ ମାଗୋ ଶରଣ ମୁଁ ନିତ୍ୟ ।
ତୋ ପାଦକମଳେ ରହିଥାଉ ମୋର ମାଥ ॥
ମୋହଠାରେ ଅନୁଗ୍ରହ କର ଗୋ ଭବାନି ।
ଏ ଭବସିନ୍ଧୁ ତରିବି ତବ ନାମ ଗୁଣି ॥
ଶ୍ରୀଚଣ୍ଡୀ ଶାରଳା ଦେବୀ କହେ ଯାହା ନିତ୍ୟେ ।
ମୁହିଁ ତାହା ଲେଖିଯାଏ ଜଗଜ୍ଜନ ହିତେ ॥
ସେ ଦେବୀ ପାଦପଦ୍ମେ ମୁଁ ନିତ୍ୟ କରେ ସେବା
ଶୂଦ୍ରମୁନି ଶାରଳାକୁ ପ୍ରସନ୍ନ ହୋଇବା ॥
ଝଙ୍କଡ଼ପୁରବାସିନୀ ଯେ ଶାରଳା ଦେବୀ ।
ତାହାଙ୍କର କୁମର ମୁଁ ଶ୍ରୀ ଶାରଳା କବି ॥
ଅହେ ବୁଧଜନେ ମୋତେ ସେ ଯାହା କହଇ ।
ଅରୁଣ ଉଦୟ କାଳେ ତାହା ମୁଁ ଲେଖଇଁ ॥



* ମହିଷାସୁରର ତପସ୍ୟା ଓ ବରଲାଭ । *

କୁରୁ ପାଣ୍ଡବ ବଂଶରେ ପରୀକ୍ଷିତ ରାଜେ ।
ଅଜ୍ଞାନ ବାଳ ଭାବରେ ଋଷି ଶାପ ପାଏ ॥
ବାମନାସା ପୁଟେ କଲା ତକ୍ଷକ ବିଘାତ ।
ଅନ୍ତର୍ଜଳେ ଥାଇ ରାଜା ହେଲା ବିଚଳିତ ॥
ବିଷଘାତରେ ଶରୀରର ଲାଗେ ମହାଜ୍ୱାଳା ।
ନାରାୟଣଙ୍କୁ ଚିନ୍ତିଲା ଅଭିମନ୍ୟୁବଳା ॥
ହରି ଚିନ୍ତନ୍ତେ ବହିଲା ତହିଁ ବିଷ ବାତ ।
ଶୁକମୁନି ଭେଟିଲେକ ପରୀକ୍ଷ ଅଗ୍ରତ ॥
ବେଦଶାସ୍ତ୍ରରେ ନିର୍ଣ୍ଣିତ ଯେବଣ ମହାତ୍ମା ।
ଧର୍ମ ଉଦ୍ଧତ ବେଳକୁ ମିଳେ ସେ ପୁଣ୍ୟାତ୍ମା ॥
ଅନ୍ତର୍ଜଳେ ଥାଇ ପ୍ରଣିପାତ କଲା ରାଜା ।
ଏ ମୋହର କଷ୍ଟ ଦେଖ ଅହେ ବ୍ରହ୍ମଦ୍ୱିଜା ॥
ଏହା କହି ନବତନ ବସ୍ତ୍ର ରତ୍ନମାଳ ।
ଧୂପ ଦୀପ ନଇବେଦ୍ୟ କର୍ପୂର ତାମ୍ବୂଳ ॥

ଚନ୍ଦନ ଚତୁଃସମ ଯେ ସୁବର୍ଣ୍ଣ ଶ୍ରୀଫଳ ।
ଗନ୍ଧପୁଷ୍ପ ଶୁକ୍ଳବସ୍ତ୍ର ନାନାବିଧ ଫଳ ॥
ସୁବର୍ଣ୍ଣ ଘଟରେ ଗଙ୍ଗା ଜଳକୁ ପୂରାଇ ।
ଚୂତପତ୍ର ନାରିକେଳ ତା ଉପରେ ଥୋଇ ॥
ସୁବର୍ଣ୍ଣ ଥାଳୀରେ ଦୂର୍ବାକ୍ଷତକୁ ରଖାଇ ।
ମାଣିକ୍ୟ ପ୍ରଦୀପରେ ଗୁଆ ଘୃତକୁ ଜଳାଇ ॥
ଅତିଭକ୍ତିରେ ଦେଇ ମୁନିଙ୍କ ଚରଣେ ।
କର ଯୋଡ଼ି ପଚାରଇ ବିନୟ ବଚନେ ॥
ହେ ମୁନି ମୋହର ଠାରୁ ବୁଡ଼ିଲା ମୋ ବଂଶ ।
କପରି ଉଦ୍ଧାର ହେବ କୁହ ବ୍ୟାସଶିଷ୍ୟ ॥
ରାଜାର ଭକତି ଦେଖି କହନ୍ତି ସେ ଯତି ।
ଏକଲକ୍ଷ କରି ରାଜା ଶୁଣ ହରି କୀର୍ତ୍ତି ॥
ପୁରାଣ ଶୁଣିଲେ ତୋର ଦୁର୍ଗତି ଖଣ୍ଡିବ ।
ଅନାୟାସେ ବଇକୁଣ୍ଠ ଭୁବନେ ମିଳିବ ॥
ଦୈବଯୋଗେ ବ୍ରହ୍ମଶାପ ହୋଇଛି ତୁମ୍ଭଙ୍କୁ ।
ଭାବନା ନ କର ରାଜ୍ୟ ଚିତ୍ତେ ଏ କଥାକୁ ॥
ଏହା ଶୁଣି କହଇ ଯେ ଅଭିମନ୍ୟୁସୁତ ।
ହେ ମୁନି ତୋହର ହେତୁ ହୋଇବି କୃତାର୍ଥ ॥
କେତେ ଥର ଏ ମହୀରେ ହରି ଅବତରି ।
ମହୀଭାର ବିନାଶିଲେ ଦୁଷ୍ଟଙ୍କୁ ସଂହାରି ॥
ତାହା କିଛି କିଛି ମୁହିଁ ଅଛି ପୂର୍ବୁ ଶୁଣି ।
କେଉଁପରି ଦୁର୍ଗାରୂପେ ଶୈଳନନ୍ଦିନୀ ॥
ମହିଷାସୁର ଦୈତ୍ୟକୁ ବଧକଲେ ରଣେ ।
ଏହା ଶୁଣିବି ହେ ମୁନି ତୁମ୍ଭର ପ୍ରସନ୍ନେ ॥
ଶ୍ରୀଚଣ୍ଡୀ ପୁରାଣ ମୋର ଶୁଣିବାକୁ ଇଚ୍ଛା ।
ସଂକ୍ଷେପେ ଶୁଣାଇ ପୂର୍ଣ୍ଣ କର ମନୋବାଞ୍ଛା ॥
ଶୁଣିକରି ସାନନ୍ଦ ଯେ ଶୁକ ମହାତମା ।
ବୋଇଲେ କହିବା ତୋତେ ଦୁର୍ଗାଙ୍କ ମହିମା ॥
ଏକମନା ହୋଇ ଶୁଣ ଏ ପୁଣ୍ୟ ଚରିତ ।
କଶ୍ୟପ ଋଷିଙ୍କ ଯୋଗେ ଅସୁରେ ସମ୍ଭୂତ ॥
ସିଂହିକାର ଗର୍ଭୁ ଜାତ ରାହୁ ନାମେ ଦୈତ୍ୟ ।
ଅମୃତ ଖାଇଣ ସେହୁ ହେଲା ବଳବନ୍ତ ॥
ଜମ୍ଭୁ ଦଇତ୍ୟ ହୋଇଲା ରାହୁର କୁମର ।
ଜମ୍ଭୁଦଇତର ପୁତ୍ର ବୀର ଜପାସୁର ॥
ଜପାସୁରର ତନୟ ଦପାସୁର ବୋଲି ।
ଦପାସୁରର ନନ୍ଦନ ଅଙ୍ଗିର ଯେ ବଳୀ ॥

ଅଙ୍ଗିର ନନ୍ଦନ ନାମ ବୋଲି ଯମସାର ।
ମସ୍ତ ଦୈତ୍ୟର କୁମର ଅଟେ ଲୋହାସୁର ॥
ଲୋହାସୁରର ନନ୍ଦନ ଅଳେଖ ବୋଲିଣ ।
ଅଳେଖ ନନ୍ଦନ ହେଲା ତାରକା ଯେ ପୁଣ ॥
ତାରକାସୁର ନନ୍ଦନ ମହାମାୟୀ ବୀର ।
ମହାମାୟୀ ସୁତ ବଜ୍ରନାଭ ବୀରବର ॥
ବଜ୍ରନାଭର ନନ୍ଦନ ଅସୁର ମାରୁତ ।
ମାରୁତର ନନ୍ଦନ ଯେ ଅଟଇ କାଳସ୍ତ ॥
ଶୁଣ ତୁହେ ପରୀକ୍ଷିତ ସତ୍ୟଯୁଗ କାଳେ ।
ନାରାୟଣ ଯୋଗନିଦ୍ରା ଲକ୍ଷ୍ମୀଦେବୀ କୋଳେ ॥
ତାରକାସୁର ନାମରେ ଯେଉଁ କରୁଣପ ।
ନାନାତୀର୍ଥେ ବୁଲି ଭାଙ୍ଗେ ଋଷିଙ୍କର ତପ ॥
କାମକୁ ଦହିଲେ ଯେଉଁ କାଳେ ସଦାଶିବ ।
ଷଡ଼ାନନ କୁମର ହେଲା ତାଙ୍କର ସମ୍ଭବ ॥
ସେ କୁମର ବଧକଲା ତାରକା ଅସୁର ।
ତାହାସୁତ ବଳିଷ୍ଠ ଯେ ସଜଦାସସୁର ॥
ନିରୋଧ କରିଲା ଯାଇଁ ସେ ସ୍ୱର୍ଗ ଭୁବନ ।
ଅମର ତେଜି ପଳାଇ ଗଲେ ଦେବଗଣ ॥
ଏହା ଶୁଣି ପୁଚ୍ଛା କରେ ପରୀକ୍ଷିତ ରାଜ୍ୟେ ।
ହେ ମୁନି କହିଲ ଏବେ ଅପୂର୍ବ କଥାଏ ॥
ସିଂହିକା ଗର୍ଭରୁ ଜାତ କେମନ୍ତେ ଅସୁର ।
ସେ ସିଂହିକା ଅଟଇ ଯେ ନନ୍ଦନୀ କାହାର ॥
ପରୀକ୍ଷିତ ବାକ୍ୟ ଶୁଣି ତୋଷ ମହାମୁନି ।
ପ୍ରସନ୍ନ ହୋଇ କହନ୍ତି ମହା ବ୍ରହ୍ମଜ୍ଞାନୀ ॥
ଶୁଣ ପରୀକ୍ଷିତ ରାଜେ ଏ ପୁଣ୍ୟ କାହାଣୀ ।
ଅକ୍ଲେଶରେ ତରିଯିବ ଭବ ସିନ୍ଧୁପାଣି ॥
ଦକ୍ଷ ପ୍ରଜାପତିର ଯେ ଷାଠିଏ କୁମାରୀ ।
ଏଥିଁ ଏକ ବଳଣ ଯେ ଅତ୍ୟନ୍ତ ସୁନ୍ଦରୀ ॥
ପୁତ୍ର ଜାତ ଅନେକ ହେଲେ ଅନେକ ଦୁହିତା ।
ଦେଖି ପ୍ରଜାପତିର ଯେ ଚିତ୍ତେ ଗର୍ବିତା ॥
ଅସୁର ଅଂଶରେ ଜାତହେବାରୁ ସିଂହିକା ।
ତାର ତହିଁ ଉତପତ୍ତି ରାହୁ ହେଲା ଏକା ॥
ସୁଧା ବଣ୍ଟନ ବେଳରେ ବଧ ହେଲା ରାହୁ ।
ବେନିଖଣ୍ଡ ହୋଇଣ ସେ ହେଲା ସପ୍ତ ବାହୁ ॥
ଶୁଣି ପରୀକ୍ଷିତ ରାଜା ବୋଲଇ ବଚନ ।
ପ୍ରଥମୁ ଅସୁରମାନେ କାହୁଁ ହେଲେ ଜନ୍ମ ॥

ଅତ୍ୟନ୍ତ ଅଦ୍ଭୁତ ମୁନି ଏ କଥା ଅଟଇ ।
ଅତିଶୟ ସନ୍ଦେହ ମୋ ମନକୁ ଲାଗଇ ॥
ମହା ବଳଷ୍ଠ ଅଟନ୍ତି ସର୍ବ ଯାତୁଧାନ ।
ଏଥିର କାରଣ ମୋତେ କୁହ ତପୋଧନ ॥
ଏମନ ରାଜାର ମୁଖୁଁ ଶୁଣି ଶୁକ ବ୍ରହ୍ମା ।
କହନ୍ତି ତା ସାବଧାନେ ଶୁଣ ମହାତମା ॥
ମହା ପ୍ରଳୟ ବୋଲିଣ ଯେତେବେଳେ ହୋଏ ।
ନବଦ୍ୱୀପା ପୃଥ୍ୱୀ ସବୁ ଥିଲା ଜଳମୟେ ॥
ନିଦ୍ରିତ ଯେ ନିରଞ୍ଜନ ଦେବ ଯୋଗବଳେ ।
ଆଦି ମାହେଶ୍ୱରୀ ବାକ୍ୟ ଦେବୀଙ୍କର କୋଳେ ॥
କର୍ଣ୍ଣ ମଳ ତ୍ୟାଗ କଲେ ଦେବ ନାରାୟଣ ।
ତହୁଁ ଉପୁଜିଲେ ବେନିବୀରେ ତତକ୍ଷଣ ॥
ଆକାଶ ଉପରକୁ ସେ କୌଣପ କ୍ଷେପିଲେ ।
ନାମ ଅଟେ ତାଙ୍କ ମଧୁ କଇଟଭ ଭଲେ ॥
ନାରାୟଣ ସୀମସ୍ଥାନେ ଛନ୍ତି ବାକ୍ୟଦେବୀ ।
ବିଷ୍ଣୁଙ୍କୁ କୋଳେ ଧରି ସେ ପରମବୈଷ୍ଣବୀ ॥
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାକ ଜଳେ ପୂର୍ଣ୍ଣ ।
ସେ ବେନି ଦୈତ୍ୟଙ୍କ ତହିଁ ନ ଭଜନ୍ତି ଚରଣ ॥
ଅତ୍ୟନ୍ତ ସୁନ୍ଦରୀ ସେହୁ ଦେଖି ଧବଳାଙ୍ଗୀ ।
ବେନିବୀରେ ଆସି ତାଙ୍କୁ ସୁରତ ଯେ ମାଗି ॥
ଭୟେ ସରସ୍ୱତୀ ଦେବୀ ତୋଳି ଦେବରାୟେ ।
କହିଲେ ଦୁଷ୍ଟପ୍ରକୃତ ଏ ଅସୁର ଦୁହେଁ ॥
ଶୁଣି ନାରାୟଣ ଯୋଗ ନିଦ୍ରାରୁ ଉଠିଲେ ।
କାଳାନଳ ନେତ୍ରେ ତାଙ୍କୁ ତରଟି ଚାହିଁଲେ ॥
କରେ ଚକ୍ର ଧରଣ ସେ ବୁଲାଇ ବୁଲାଇ ।
ଅସୁରଙ୍କ ଉପରକୁ ମାଇଲେ ନଚାଇ ॥
ଭୟେ ମଧୁ କଇଟଭ ଗଲେ ଅପସରି ।
ବିଷ୍ଣୁ ଉଗ୍ରତେଜ ଦେଖି ମହାଭୟ କରି ॥
ପୁଣି ଆସି କରଯୋଡ଼ି ଆଗେ ହେଲେ ଉଭା ।
ବିନୟୀ ହୋଇ କହନ୍ତି ଏମନ୍ତେ ଦାନବା ॥
ସ୍ୱାମି ନ ଛାଡ଼ିଣ ଅମ୍ଭେ ଅରଜିଲୁ ଦ୍ରୋହ ।
ତହିଁକି ମାଗୁଛୁ ଶାସ୍ତି ଏହିରୂପେ ଦିଅ ॥
ସଲିଳ ନ ଥିବା ସ୍ଥାନେ ଅମ୍ଭଙ୍କୁ ଯେ ମାରି ।
ଅପରାଧୀ ହୋଇଅଛୁ ପଦରେ ତୁମ୍ଭର ॥
ଶୁଣି ନାରାୟଣ ଏହା ଦୈତ୍ୟଙ୍କର ତହୁଁ ।
ବଳେ ଉପାଡ଼ିଲେ ତାଙ୍କ ଜାନୁ ଦୁଇବାହୁ ॥

ଗଦା ପ୍ରହାରରେ ତାଙ୍କ ମାଂସ କଲେ ଲୋଗ୍ନ ।
ଜଳଉପରେ ପକାଇ ପୃଥ୍ୱୀ କଲେ ସଞ୍ଚା ।
ମେଦକୁ ମରଦ କରେ ସର୍ଜ୍ଜିଲେ ମେଦିନୀ ।
ଏରୂପେ ମେଦିନୀ ହେଲେ ସେହି ଦୈତ୍ୟ ବେନି ॥
ଶୁକମୁନି ବୋଇଲେ ହେ ଶୁଣ ତୁ ପରୀକ୍ଷ ।
ଅସୁରଙ୍କ ମାଂସେ ମହୀ ହୋଇଛି ପ୍ରତ୍ୟକ୍ଷ ॥
ପୃଥିବୀରେ ଜନମନ୍ତି ଯେତେକ କୌଣପ ।
ତେଣୁ ତାଙ୍କର ହୁଅଇ ଅତିଶୟ ଦର୍ପ ॥
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିଜାତି ।
ଏହିମାନେ ମେଦିନୀକି ଗରୁ ଯେ ହୁଅନ୍ତି ॥
ମସୀଦାସ ନୃପତିର ଅଟେ ମସୀଅଳି ।
ପୂର୍ବ ପରମ୍ପରେ ପରଜା ଥାଏ ପ୍ରତିପାଳି ॥
ମସୀଦାସର ନନ୍ଦନ ସୌଦାସ ରାକ୍ଷସ ।
ଜଳତରଙ୍ଗ ବୋଲିଣ ଅଟେ ତାର ଶିଷ ॥
ଜଳତରଙ୍ଗ ନନ୍ଦନ ନାମ ବୀରମେଧା ।
ଦେବତାଙ୍କ ସଙ୍ଗେ ବାଦୀ ହେଲେ ସେ ସର୍ବଦା ॥
ତାହାର ନନ୍ଦନ ହେଲା ଦୈତ୍ୟ କୃତକେଶୀ ।
ସଂସାରକୁ ଦହିଲା ସେ ନାଶି ସର୍ବଋଷି ॥
କୃତକେଶୀର ନନ୍ଦନ ଅଟେ ଶୁର ନାମ ।
ଏହା ଭୟେ ଦେବେ ତ୍ୟାଗ କଲେ ସ୍ୱର୍ଗଧାମ ॥
ତାହାର ତନୟ ଜଟାସୁର ନାମ ହେଲା ।
ଭାସ୍କର ଯେ ଶୁଭାସ୍କର ନାମ ବୋଲାଇଲା ॥
ସିଂହଳାସୁର ଭାସ୍କର ଦଇତର ପୁତ୍ର ।
ବଜ୍ରସିଂହ ବୋଲି କରି ହେଲା ତାର ସୁତ ॥
କପଳସିଂହ ଯେ ବଜ୍ରସିଂହର ନନ୍ଦନ ।
ବଢ଼ାଇ ପ୍ରତାପୀ ଜୟ କଲା ତ୍ରିଭୁବନ ॥
ମନ୍ତ୍ର ଜପି ଈଶ୍ୱରଙ୍କୁ କଲା ବହୁ ପୂଜା ।
ନିରାହାରରେ ରହିଲା କଷ୍ଟେ ମହାରାଜା ॥
ଚତୁର୍ଦ୍ଦଶ ବରଷ ସେ ତପେ ଦେଲା ମନ ।
ମହାକଷ୍ଟ ଦେଖି ଶିବ ହୋଇଲେ ପ୍ରସନ୍ନ ॥
ବରମାଗ ବତ୍ସ ବୋଲି ଈଶ୍ୱରଦେବତା ।
କପିଳସିଂହ ବୋଲେ ମୁଁ ହେବି ରଣଜିତା ॥
ସ୍ତମ୍ଭନ ବିଦ୍ୟା ତାହାକୁ ଦେଲେ ମହାଦେବ ।
ବୋଇଲେ ତୋ ସୁରତରେ ସ୍ତ୍ରୀରୀତୋଷ ହେବ ॥
ବୀର୍ଯ୍ୟବନ୍ତ ହୁଅ ବାବା ବୋଇଲେ ଶଙ୍କର ।
ଶୃଙ୍ଗାର ରସରେ ଜିତା ହୁଅ ବୀରବର ॥

ଏ ବର ଦେଇ ଈଶ୍ବର ହେଲେ ଅନ୍ତର୍ଦ୍ଧାନ ।
ଅସୁର ଭୋଗକରଇ ବସ୍ତୁ ସ୍ତ୍ରୀଗମାନ ॥
ଶୁଣ ପରୀକ୍ଷ କପିଳସିଂହର ଭାରିଯା ।
ଶୃଙ୍ଗାରଭୟରେ ସେହୁ ସ୍ୱାମି କଲା ତେଜ୍ୟା ॥
ପଳାଇଲା ମଇଁଷିର ସ୍ୱରୂପେ ଯୁବତୀ ।
ସିଂହଳଦ୍ୱୀପରେ ଗୋପ୍ୟ ହୋଇଲାକ ଯାଇ ॥
ଯମବାହନ କୃତାନ୍ତ ନାମରେ ମଇଁଷି ।
ସିଂହଳ ଦ୍ୱୀପେ ସର୍ବଦା ଚରଇ ସେ ଅସି ॥
ଶୁଣ ନୃପସିଂହ କୃଷ୍ଣ ଅମାବାସ୍ୟାଦିନ ।
ମଙ୍ଗଳ ବାସର ମଘାନକ୍ଷ ବଦ୍ୟମାନ ॥
ସେ ଦିନ ଯମବାହନ ସିଂହଳ ଦ୍ୱୀପରେ ।
ଚରଇ କୋମଳପତ୍ର ତୃଣ ତୋଷଭରେ ॥
କପିଳସିଂହ ଭାରିଯା ମଇଁଷି ଶରୀର ।
ଧରିଥିଲା ତାହାକୁ ସେ ଦେଖେ ନୃପବର ॥
ପଳାଏ ସେ ତରଭରେ ମନେ ଭୟ ପାଇ ।
ଜୀବନର ବିକଳରେ ପଛକୁ ନ ଚାହିଁ ॥
ଯମବାହନ ଦେଖି ତା ପଛେ ଗୋଡ଼ାଇଲା ।
କପିଳସିଂହ ଭାରିଯା ବେଗେ ପଳାଇଲା ॥
ନବଲକ୍ଷ ଯୋଜନ ସେ ହୋଇଲା ଅନ୍ତର ।
କଦଳୀ ପତ୍ର ପରାୟେ ତନୁ ଥରହର ॥
ସେ ସିଂହଳଦ୍ୱୀପମଧ୍ୟେ ବନସ୍ତେକ ଅଛି ।
ତହିଁର ଭିତରେ ନଦୀ ବହଇ କାମାକ୍ଷୀ ॥
ସେ କାମାକ୍ଷୀ ନଦୀ ତୀରେ ସୁବର୍ଣ୍ଣ ପର୍ବତ ।
ଶିଂଶପାନାମରେ ତରୁ ତା ଶିଖରେ ସ୍ଥିତ ॥
ସେହୁ ପର୍ବତଉପରେ ଶିଂଶପାର ତଳେ ।
ମଇଁଷିଙ୍କ ଯମାସନ ଧଇଲାକ ବଳେ ॥
ତାର ସଙ୍ଗେ କ୍ରୀଡ଼ାକଲା ଅତିଆନନ୍ଦରେ ।
ଅକ୍ଷୟ ରେତ ରହିଲା ଯହୁଁ ତା ଗର୍ଭରେ ॥
ସଇନ୍ଦୁ କୁମର ଏକ ଜନମ ହୋଇଲା ।
ତଳେ ପଡ଼ି ଶିଶୁଗୋଟି ସାର୍ଦ୍ଧରଡ଼ ଦେଲା ॥
ମହାବଳବନ୍ତ ତାର ଅଟେ ମହାତେଜ ।
ମଇଁଷିର ମୁଣ୍ଡଗୋଟା ଶରୀର ଦନୁଜ ॥
କୋଟି ଅର୍କକୁ ଜିଣଇ ଆପଣାର ତେଜେ ।
ପର୍ବତ ପରାୟ ତାର ଶରୀର ବିରାଜେ ॥
ଏଣେ କପିଳସିଂହ ଯେ ଭ୍ରମେ ଚଉକତି ।
ଅନେକ ଦେଶ ସେ ବୁଲି ଲୋଡ଼ିଲ ଯୁବତୀ ॥
ଲୋଡ଼ୁ ଲୋଡ଼ୁ ଭେଟିଲେ ସେ କପିଳ ମହର୍ଷି ।
ମଇଜ ହୋଇ ତାହାଙ୍କୁ ଅନେକ ଆଶ୍ୱାସି ॥
ବୋଇଲା କୁଆଡ଼େ ଗଲା ମୋହର ଭାରିଯା ।
ନବବୟସୀ ସେ ବାଳା ଅଟେ ନାରୀରାଜା ॥
ତାହାକୁ ନ ପାଇ ମୁହିଁ ପୃଥିବୀ ଭ୍ରମିଲି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଭେଟ ନ ପାଇଲି ॥
ଋଷି ବୋଇଲେ ଯାହାର ନାହିଁ ପ୍ରିୟ ଯୁବତୀ ।
ଅନ୍ତମେ ତାହାକୁ କାହିଁ ହେବ ସଦଗତି ॥
ଦିନେ ମୁଁ ସିଂହଳଦ୍ୱୀପେ ବୁଲି ଯାଇଥିଲି ।
ମଇଁଷ ମଇଁଷୀ ବେନି ସେଠାରେ ଦେଖିଲି ॥
ସେ ମଇଁଷୀ ବୋଇଲା ମୁଁ ନୋହେ ଏହୁ ଜୀବ ।
କପିଳସିଂହ ନାରୀ ମୁଁ ଅଟଇ ଜାଣିବ ॥
ତୁ ଅଟୁ ଦେବବାହନ ମୁଁ ଅଟେ ଅସୁରୀ ।
ତୋହର ମୋହର ପ୍ରୀତି ହେବ କେଉଁ ପରି ॥
ଯମବାହନ ସେ କଥା କାନେ ନ ଶୁଣିଲା ।
ବଳାତ୍କାରେ ତାହା ସଙ୍ଗେ ପୀରତି କରିଲା ॥
ଏତେ କହି କପିଳ ଯେ ଗଲେ ଅନ୍ତର୍ଦ୍ଧାନେ ।
ଅସୁର ଅତ୍ୟନ୍ତ କୋପ କଲା ପଞ୍ଚମନେ ॥
ମୁହୂର୍ତ୍ତିକେ ସିଂହଳରେ ପ୍ରବେଶିଲା ଯାଇଁ ।
ଦେଖିଲା ମଇଁଷୀ ନିଜ ନାରୀ ଅଛି ହୋଇ ॥
ଅତି ଅନନ୍ଦ ହୋଇଲା ଦେଖି ଦୈତ୍ୟରାଜା ।
କଣ୍ଠସୁ ଗିର ନିକଟେ ଭେଟିଲା ଭାରିଯା ॥
ସ୍ୱାମୀଙ୍କ ଦେଖିଣ ନାରୀ ସଙ୍କୁଚିତମତି ।
ନିଜରୂପ ଧଇଲା ସେ ଛାଡ଼ିଣ ବିକୃତି ॥
ବୋଇଲା ତୁମ୍ଭର ତେଜ ସହି ମୁଁ ନ ପାରି ।
ପଳାଇ ଅଇଲି ଏଥେଁ ଦେହ ଗୋପ୍ୟକରି ॥
ଯମବାହନ କୃତାନ୍ତନାମରେ ମଇଁଷି ।
ବଳାତ୍କାରେ ସେହି ମୋର ସତୀତ୍ୱ ବିନାଶି ॥
ମୁଁ ଦୋଷୀ ହେଲି ନାଥ ଏଥୁଁ ବାଞ୍ଛିତ ଯା ।
ଏ ପୁତ୍ର ଦେଖିଲେ ଲୋକେ ହେବ ବଡ଼ ଲଜ୍ଜା ॥
କପିଳସିଂହ ବୋଲେ ମୁଁ ନ ଯିବଇଁ ଦେଶ ।
ଏ ପୁତ୍ରକୁ ଘେନ ଏଥେଁ କରିବା ଗୋ ବାସ ॥
ଶୁଣ ପରୀକ୍ଷ କହନ୍ତି ଶୁକ ମହାମୁନି ।
ସିଂହଳ ଦ୍ୱୀପେ ରହିଲେ ସେହୁ ବେନି ପ୍ରାଣୀ ॥
କାମାକ୍ଷୀ ତୀରେ ରହିଲେ ସେହି ଘର କରି ।
ସେ କଟକ ନାମ ହେଲା ଜେନାବଳୀ ପୁରୀ ॥

ପୁତ୍ରଙ୍କୁ କୋଳେ ଧରିଣ ବଜ୍ରଙ୍ଗି ଚଳିଲା ।
ମହିଷାସୁର ବୋଲିଣ ନାମ ତାର ଦେଲା ॥
କପିଳସିଂହ ଭାରଯା ମହିଷାଙ୍କୁ ଘେନି ।
ରାଜ୍ୟ କରେ ଶତ୍ରୁନ୍ତେ ନାଶଣକେ ପୁଣି ॥
ଏହିରୂପେ କଲ ଦିନ ହୁଅନ୍ତେ ଅତୀତ ।
ମହିଷା ବିଚାର କରେ ଆପଣାର ଚିତ୍ତ ॥
ତପସ୍ୟା କରି ମୁଁ ମହାବଳିଷ୍ଠ ହୋଇବି ।
ଧାତା ବରେ ଅମରତ ହୋଇ ମୁଁ ପାରିବି ॥
ବାହୁବଳେ ତ୍ରିଭୁବନ କରିବଇଁ ସାଧି ।
ଦେବତା ରାକ୍ଷସ-କରେ ହେବ ମୁଁ ଅବଧ ॥
ଏବେ ଚିନ୍ତିଣ ସେ ତପେ ଦେଲା ତହିଁ ମନ ।
ନିରାହାରେ ଲକ୍ଷ୍ୟ କଲା ବିଧାତା ଚରଣ ॥
ନଅ ସହସ୍ର ବରଷ ତପ ଆଚରିଲା ।
ଦୁର୍ବାର ଦନୁଜ ହୃଦେ ଧାତାଙ୍କୁ ଧ୍ୟାଇଲା ॥
ସୁପ୍ରସନ୍ନ ନୋହିଲେକ ଯହୁଁ ବିଧାତାଏ ।
ଅନଳ ଭିତରେ ମାଂସ କାଟିଣ ପକାଏ ॥
ଧାତାଙ୍କ ପ୍ରସାଦେ ମାଂସ ପୁଣି କଅଁଳଇ ।
ପୁଣି ପୁଣି କାଟି ମାଂସ ଅଗ୍ନିତ ଦିଅଇ ॥
ଏହି ପରକାରେ ତପ କରିଲା ଦାନବ ।
ପୂର୍ବରୁ ଯା ନ ହୋଇଛି ଯାହା କ ନୋହିବ ॥
ତଥାପିତ ନ ଦ୍ରବିଲା ଧାତାଙ୍କ ଚିତ୍ତ ।
ପୁଣିହିଁ ଶରୀର ଦଗ୍ଧ କରେ ଯାତୁଧାନ ॥
ବିଂଶ ସହସ୍ର ବରଷ ଶରୀର ବିନାଶି ।
ଅଗ୍ନିତ ଘେନିଣ ଅଗ୍ନି ମଧ୍ୟେ ଯାଏ ପଶି ॥
ଅନଳ ଭିତରେ ସେହି ନିବେଶନ୍ତେ କାୟା ।
ଦହନ ନୋହିଲ ପିତାମହଙ୍କର ମାୟା ॥
ଜ୍ୱଳନ୍ତା ଅନଳେ କରେ ଶରୀରକୁ ତ୍ୟାଗ ।
କଭୁ ନ କରେ ତପକୁ କେବେ ପରିତ୍ୟାଗ ॥
ଏମନ୍ତ କଠୋର ତପ ଦେଖି ପିତାମହ ।
ଅଶୀ ସହସ୍ର ବରଷେ ଜାଣିଲେ ତା ସ୍ନେହ ॥
ମହାକଷ୍ଟ ଦେଖି କରି ସର୍ବ ବୃନ୍ଦାରକେ ।
ଧାତାର ପୁରକୁ ତହୁଁ ଚଳିଲେ ସଶଙ୍କେ ॥
ଇନ୍ଦ୍ର ରୁଦ୍ର ଶମନ ଯେ ବାୟୁ ବୃହସ୍ପତି ।
ଚନ୍ଦ୍ରମା ସୂର୍ଯ୍ୟ ବରୁଣ ଅଳକାଧିପତି ॥
ଗ୍ରହଗଣ ଆଦି କରି ସର୍ବ ଦେବଗଣେ ।
ବ୍ରହ୍ମଙ୍କ ସନ୍ନିଧିରେ ଗଲେ ଦୁଃଖମନେ ॥
ଯଶୋବନ୍ତୀ ଭୁବନରେ ବିଜେ ବେଦବର ।
ଆସ୍ଥାନର ତଳେ ଉଭା ହେଲେ ସର୍ବସୁର ॥
ଶତ ସହସ୍ର ପ୍ରଣାମ ଚରଣରେ କଲେ ।
ଦେଖି ପ୍ରତିବାକ୍ୟ ତାଙ୍କୁ ବିଧାତା ବୋଇଲେ ॥
କେଉଁ କାରଣେ ଆଇଲ ସର୍ବ ଦେବଲୋକେ ।
କଷ୍ଟ କିବା ପଡ଼ିଅଛି କୁହ ଆମ୍ଭ ପାଖେ ॥
ବୃହସ୍ପତି ବୋଇଲେ ତୁ ଜଗଜ୍ଜନ ବନ୍ଧୁ ।
ଜଗତତାରଣ ନାଥ କୃପାଜଳସିନ୍ଧୁ ॥
ତୁ ଦେବ ସକଳ ଜନମାନଙ୍କ କରତା ।
ତୁ ଯେ ନବଦ୍ୱୀପ ସପ୍ତସାଗର ବିଧନ୍ତା ॥
ତୁ ଦେବ ଛପନ କୋଟି ଜୀବ ଅର୍ଜିଅଛୁ ।
ସ୍ଥାବର ଜଙ୍ଗମ ତୋର ହେତୁ ବର୍ତ୍ତିଅଛୁ ॥
ଆଦିଅନ୍ତ ମଧ୍ୟ ତୋତେ ଲାଗେ ସର୍ବଚିନ୍ତା ।
ପ୍ରଳୟ ଧାରଣେ ନାଥ ତୁ ଅଟୁ ବିଧାତା ॥
ତୋହର ଚେତନାରୁ ଯେ ସର୍ବ ଦେବଦେବୀ ।
ପାଳନା କରୁଛୁ ତୁହି ଚରାଚର ଭବ ॥
ଭୋ ଦେବ ତୋ ଯୋଗେ ସ୍ୱର୍ଗେ ଅମ୍ଭର ଯେ ବାସ
ମହିଷାସୁରର ତପ ଦେଖି ଲାଗେ ତ୍ରାସ ॥
ଇନ୍ଦ୍ର ବୋଇଲେ ମୋହର ନେବ ଇନ୍ଦ୍ରପଦ ।
କୁବେର ବୋଇଲେ ମୋର ଘେନିବ ସମ୍ପଦ ॥
ନିଶାକର ବୋଇଲେ ମୋ ନେବ ଚନ୍ଦ୍ରପଦ ।
ଗୁରୁ ବୋଇଲେ କରିବ ମୋ ସଙ୍ଗରେ ଦ୍ୱନ୍ଦ ॥
ଦେବତାମାନଙ୍କ ମୁଖୁଁ ଏରୂପରେ ଶୁଣି ।
ବିଧାତା ବୋଇଲେ ଅମ୍ଭେ ଯିବୁ ଏହିକ୍ଷଣି ॥
ବହୁ କଠୋର କରି ସେ କରୁଅଛି ତପ ।
ସାଗର ସହିତେ କମ୍ପି ଉଠେ ନବଦ୍ୱୀପ ॥
ତପଅନୁରୂପେ ଅମ୍ଭେ ତାକୁ ଦେବୁ ବର ।
ଏ କଥାକୁ ଦେବେ ମନେ ଭାବନା ନ କର ॥
ଏମନ୍ତେ ବଚନ ତାଙ୍କୁ କହିଲେ ବିରଞ୍ଚି ।
ବୁଝିବା ଦଇତ କେତେ ତପ କରୁଅଛି ॥
ଦେଖାହେଲେ ବୁଝିବାନା କିସ ସେ ବୋଲଇ ।
ଦେବତାଙ୍କ ଆଗେ ବ୍ରହ୍ମା ଏସନେକ କହି ॥
ଯାଅ ଏବେ ବୃନ୍ଦାରକେ ନ କରଣ ଚିନ୍ତା ।
ମୁହିଁ ସେ ବିହନ୍ତା ଅଟେ ମୁଁ ନାଶକରତା ॥
ଏରୂପେ କହି ଦେବଙ୍କୁ ଦେଲେ ପଠିଅଇ ।
ଯେ ଯାହାର ପୁରେ ଦେବେ ବିଜେକଲେ ଯାଇଁ ॥

କହନ୍ତି ଯେ ଶୁକମୁନି ଶୁଣ ହେ ସଜନ ।
ପଦ୍ମଯୋନିଙ୍କ ଆସନ କମ୍ପେ ଘନ ଘନ ॥
ବିଜୟେ ଶ୍ରୀ ବେଦବର ମରାଳ ବାହନେ ।
ସଙ୍ଗରେ ଅଛନ୍ତି ବ୍ରହ୍ମଋଷିଗଣମାନେ ॥
ବଶିଷ୍ଠ ଶ୍ରୀବାମଦେବ ବାଲ୍ମୀକି ଅଗସ୍ତି ।
ବିଶ୍ୱାମିତ୍ର ଶତମନ୍ୟୁ ଋଷି ପଉଲସ୍ତି ॥
ନାରଦ ଯେ ବିଭାଣ୍ଡକ ମାର୍କଣ୍ଡେୟ ଯେନି ।
ଭରଦ୍ୱାଜ ସୁମନ୍ତକ ଋଷ୍ୟଶୃଙ୍ଗ ମୁନି ॥
କଉଶିକ ଭୃଗୁ ଅଷ୍ଟାବକ୍ରଙ୍କର ମୂଳେ ।
ହାହା ହୁହୁ ତିନି କୋଟି ଗନ୍ଧର୍ବଙ୍କ କୁଳେ ॥
ଏହାଙ୍କର ସହିତରେ ବାଳଖିଲ୍ୟା କେତେ ।
ଚଳନ୍ତି ଯେ ବେଦବର ଭକତ ନିମନ୍ତେ ॥
ସପତ ବ୍ରହ୍ମାଣ୍ଡ ମଧ୍ୟେ ଯେତେ ବେଦବର ।
ଆସି ପ୍ରବେଶ ହୋଇଲେ ସିଂହଳଦ୍ୱୀପର ॥
କାମାକ୍ଷୀଗିରେ ଅଛଇ ସୁବର୍ଣ୍ଣ ପର୍ବତ ।
ତାହାର ଅଗ୍ରେ ଶିଂଶପା ନାମେ ବୃକ୍ଷ ସ୍ଥିତ ॥
ସେ ସ୍ଥାନରେ ମହିଷାର ତପସ୍ୟା ଆଶ୍ରମ ।
ଜଳଇ ଯେ ହୁତାଶନ ଆକାଶର ସମ ॥
ଦେଖିଣ ଆଶ୍ଚର୍ଯ୍ୟ ମନେ ହୋଇଲେ ବିଧାତା ।
ସାଧୁରେ ଦାନବ ତୋର ସାଧୁ ପିତା ମାତା ॥
ଅନେକ ପ୍ରଶଂସା ତାକୁ କଲେ ଦେବଦେବ ।
ଏପରି ତପ ପୂର୍ବରୁ ନୋହିଛି ନୋହିବ ॥
ପର୍ବତର ଉପରେ ଉଠି ମୁଖଶୂର ।
ମରାଳ ବାହାନୁ ଦେବ ସେଠାରେ ଉତୁରି ॥
କମଣ୍ଡଳ ଜଳେ ଶାନ୍ତି କଲେ ହୁତାଶନ ।
ଦେଖିଲେ ଶରୀର ତାର ଲୋହିତବରନ ॥
ନଖ ମୁଖ ନାସା କର୍ଣ୍ଣ ଚରଣ ତା ନାହିଁ ।
ମୁଣ୍ଡା ବୃକ୍ଷ ପ୍ରାୟେ ତାର ଶରୀର ଦିଶଇ ॥
ଚାହିଁଲେକ ପିତାମହ କରୁଣା ନେହରେ ।
ଅମୃତକୁ ସିଞ୍ଚିଦେଲେ ନେଇ ତା ଉପରେ ॥
ଅମୃତ ପଡ଼ନ୍ତେ ହେଲା ତାର ପାଦ ଭୁଜ ।
ବିଶ୍ୱରୂପ ପ୍ରକାଶିଲା ଦୁର୍ବାର ଦନୁଜ ॥
ଲୋହିତବର୍ଣ୍ଣ ମହିଷାକାର ମୁଣ୍ଡ ଗୋଟି ।
ବିଧାତା ଦେଖନ୍ତେ ଶିର ଗଗନକୁ ଘୋଟି ॥
ଧାତାଏ ବୋଇଲେ ବର ମାଗ କଉଣପ ।
ପ୍ରଦାନ କରିବା ଆମ୍ଭେ ତପ ଅନୁରୂପ ॥

ଦାନବ ବୋଇଲା ମୁହିଁ ନ ଜାଣଇ ତୋତେ ।
ଏତେ ବଡ଼ ତପ ମୋର ଭାଙ୍ଗିଲୁ କିମର୍ଥେ ॥
କେବଣ ମହାତମା ତୁ କାହିଁ ତୋର ବାସ ।
ଏତେ ତପ କାହିଁପାଇଁ କଲୁ ମୋର ନାଶ ॥
ସତ କହ ନୋହିଲେ ତୋ ନେବଇଁ ପ୍ରାଣ ।
ଏତେବଡ଼ ତପ ମୋର କଲୁ ଅକାରଣ ॥
ବିଧାତା ବୋଇଲେ ତୋର ଯାହାଠାରେ ଲକ୍ଷ୍ୟ ।
ଫଳରୂପେ ଚିହ୍ନ ମୁହିଁ ସେହି ପିତାମହ ॥
ମହିଷା ବୋଇଲା ଅଟୁ ତୁହି ଯେବେ ଧାତା ।
ନିଜ ସ୍ୱରୂପ ତୋହର ଦେଖାଅ ବିଧାତା ॥
ବ୍ରାହ୍ମଣ ରୂପରେ କପା ଦେଖାଦେଉ ମୋତେ ।
ଚିହ୍ନି ବର୍ଣ୍ଣି ଦେଖିଲେ ମୁଁ ଯିବଇଁ ପରତେ ॥
ମହିଷା ବଚନ ଶୁଣି ବିଧାତା ଯେ ହସି ।
ବର ମାଗ ବୋଲୁ ଅରେ ଦୈତ୍ୟକୁଳବଂଶୀ ॥
ଦଇତ୍ୟ ବୋଲେ ତୋହର ସ୍ୱରୂପ ଦେଖାଅ ।
ନିଜରୂପ ଦେଖିଲେ ମୁଁ ମାଗିବି ନିଶ୍ଚୟ ॥
କଠୋର ବଚନ ଯହୁଁ ଶୁଣିଲେ ବିଧାତା ।
ନିଜରୂପ ଦେଖାଇଲେ ଜଗତକରତା ॥
ବାମେ ରୁଦ୍ରମୁଖ ଦକ୍ଷେ ବିଧାତା ଆନନ ।
ଅଗ୍ରେ ବ୍ରହ୍ମାମୁଖ ପଛେ ବିରଞ୍ଚି ବଦନ ॥
ନିଜ ସ୍ୱରୂପକୁ ତହୁଁ ଧଇଲେ ବିରଞ୍ଚି ।
ଜଗତ ଯାକରେ ତାଙ୍କ ତେଜ ବ୍ୟାପିଅଛି ॥
ଚାରିଗୋଟି ମୁଖ ତାଙ୍କ ଅଠଗୋଟି ଭୁଜେ ।
ଦଣ୍ଡକମଣ୍ଡଳୁ କୁଶବଟୁ ଯେ ବିରାଜେ ॥
ବ୍ରହ୍ମଶକ୍ତି ଅଗ୍ନି ସ୍ୱାହା ପ୍ରୋକ୍ଷଣୀ ଅବର ।
ଅଭୟ କବଚ ପୁଣି ବ୍ରହ୍ମ ମୁଦ୍ଗର ॥
ଓକାର କରରେ ଜପାମାଳ ଅଉ ବ୍ରହ୍ମବେଣୀ ।
ଐଶ୍ୱର୍ଯ୍ୟ ସାମରଥା ଯେ ପ୍ରଭୁ ବେଦପାଣି ॥
କେବଣ ଭୁଜରେ ଶୋଭାପାଏ ବେଦପୋଥି ।
ଲୋହିତବର୍ଣ୍ଣ ଶରୀର ବିଦ୍ୟୁତର ଜ୍ୟୋତି ॥
ଅଙ୍ଗେ ଦ୍ୱାଦଶ ତିଳକ କଛ ବସନ ।
ଲମ୍ବିତ କବରୀ ଶିରେ ଖା ଗୋପିଚନ୍ଦନ ॥
ମରାଳ ବାହନେ ବିଜେ ବସନ କଷାୟ ।
ଦେଖିଣ ଆନନ୍ଦ ହେଲା ସେ ଦାନବରାୟ ॥
ଚାରି ମୁଖେ ଚାରି ବେଦ କରନ୍ତି ପଠନ ।
ବଦନ୍ତି ଶୁକମୁନି ଶୁଣ ହେ ସଜନ ॥

ଅସୁର ଦେଖିଲା ନିଜରୂପ ବିଧାତାର ।
ଏକ ଶରୀର ପୂରିଛି ଜଗତ ଭିତରେ ॥
ଦେଖି ପ୍ରଣିପାତ କଲା ମହିଷା ବଳବନ୍ତା ।
କଲ୍ୟାଣ ବାଞ୍ଛା ତାହାଙ୍କୁ କରନ୍ତି ବିଧାତା ॥
କର ପ୍ରସାରି କଲ୍ୟାଣ କହିଲେ ବିରଞ୍ଚି ।
ବର ମାଗ ବାରୁ ଯାହା ମନେ ଅଛି ବାଞ୍ଛା ॥
ମହିଷା ବୋଇଲା ଦେବ ଦେବୁ ଯେବେ ବର ।
ଦଶଦିଗପାଳେ ସାକ୍ଷୀ ରହିଲେ ମୋହର ॥
ଯମ ପବନ ଅନଳ ଜଳ ସ୍ଥଳ ଶୂନ୍ୟ ।
ଏମାନେ ସାକ୍ଷୀ ହୋଇଲେ କହିବ ବଚନ ॥
ବର ମାଗ ବର ମାଗ ପିତାମହ ଭଣି ।
କେତେ ବାରମ୍ବାର ସାକ୍ଷୀ ରଖୁଅଛୁ ପ୍ରାଣି ॥
ମହିଷା ବୋଇଲେ ସ୍ୱାମି ଦେବୁ ଯେବେ ବର ।
ହେବ କଳ ସତ୍ୟ ତ୍ରେତା ଦ୍ୱାପରେ ଅମର ॥
ସ୍ୱାମି କେତେକଷ୍ଟେ ତୋର ପାଦେ ଅଛି ସେବି ।
ପ୍ରଳୟ କାଳ ପର୍ଯ୍ୟନ୍ତେ ଜିଆଁ ହୋଇବି ॥
ଯମର କାଳଦଣ୍ଡେ ମୁଁ ନୋହିବଇଁ କ୍ଷୟ ।
ନାନା ରୋଗମାନେ ପୀଡ଼ା ନ ଦେବେ ମୋ କାୟ ॥
ଶରୀର ବଜ୍ର ସମାନ ହୋଇବ ମୋହର ।
ଅଙ୍ଗରେ ନ ଭେଦିବ ଯେ କେଉଁଣସି ଶର ॥
ଦେବଶର ବ୍ରହ୍ମଶର ନ ଭେଦିବ ଅଙ୍ଗ ।
ଶରୀରେ ମୋ ଶସ୍ତ୍ରରେ ପଡ଼ି ହେବ ଭଙ୍ଗ ॥
ଅଗ୍ନିରେ ନ ପୋଡ଼ିବି ମୁଁ ଖଡ୍ଗେ ନ ଛିଡ଼ିବି ।
ଅଗାଧ ଜଳରେ ମୁହିଁ କେବେ ନ ବୁଡ଼ିବି ॥
ତପିଙ୍କର ଅଭିଶାପେ ନୋହିବଇଁ ବଧ ।
ତୋହର ସମାନେ ମୁହିଁ ହେବି ମହାସିଦ୍ଧ ॥
ଦେବଲୋକ ନରଲୋକ ନାଗଲୋକ ଯେତେ ।
ଯକ୍ଷ କିନ୍ନର ଏ ଆଦି ନ ଜିଣିବେ ମୋତେ ॥
ସର୍ବ ଦେବ ଚନ୍ଦ୍ର ଦିବାକର ଆଦିକରି ।
କଷ୍ଟତ ସମରେ ମୁହିଁ ଜିଣିବଇଁ ଧରି ॥
କର୍ଣ୍ଣେ ଶୁଣିଲି ଦୈତ୍ୟଙ୍କୁ ବିଷ୍ଣୁ ଭୟ ବୋଲି ।
ତାହାର ଭୟରେ ମୁହିଁ ତପ ଆଚରିଲି ॥
ଯେବେ କି ନାଥ ପ୍ରସନ୍ନ ହୋଇଲୁ ତୁ ମୋତେ ।
ମୁହିଁ ବଧ ନୋହିବଇଁ ନାରାୟଣ ହସ୍ତେ ॥
ବିଷ୍ଣୁ ସୁଦର୍ଶନ ଚକ୍ରେ ନୋହିବି ମୁଁ କ୍ଷୟ ।
ହର ଜିଣିଲେ ସିଦ୍ଧ ହେବ ମୋର କାର୍ଯ୍ୟ ॥
ଆବର କଥାଏ ଶୁଣ ହେ ଚତୁରାନନ ।
ପୁରୁଷ ହସ୍ତରେ ମୁହିଁ ନୋହିବି ନିଧନ ॥
ପିତାଏ ବୋଇଲେ ଯାହା ମାଗିଲୁ ତୁ ବର ।
ସମସ୍ତ କଥାହିଁ ସିଦ୍ଧ ହେଉ ରେ ତୋହର ॥
କଲ୍ପ ମର୍ତ୍ତ୍ୟରେ ଜନ୍ମିଣ ଅମର କେ ନାହିଁ ।
ଦେବତା ହୋଇଲେ ମଧ୍ୟ ଅବଶ୍ୟ ମରଇ ॥
ଏହିକଥା ଗୋଟି ତୁହି ରଖିଥାଅ ମନେ ।
ରମଣୀ ହସ୍ତରେ ବଧ ହୋଇବୁ ତୁ ଦିନେ ॥
ମୈଷା ବୋଲେ ଯେବେ ସ୍ତ୍ରୀର ହାତରେ ନିଧନ ।
ହୋଇବି ମୁଁ ଗୃହିଁଥିବି ତା ସ୍ତନ ଯୌବନ ॥
ତଥାସ୍ତୁ ତଥାସ୍ତୁ ବୋଲି ବୋଲନ୍ତି ଗୌମାଥ ।
ଯାହା ବାଞ୍ଛା କଲୁ ବତ୍ସ ହେଉ ତୋତେ ପ୍ରାପ୍ତ ॥
ବ୍ରହ୍ମାଣ୍ଡରେ ଯେତେକାଳ ଥିବୁ ତୁହି ଭଲେ ।
କେହି ସମାନ ନୋହିବେ ରଣେ ତୋର ତୁଲେ ॥
ବର ମାଗୁଁ ମାଗୁଁ ସୂର୍ଯ୍ୟ ଅସ୍ତାଚଳେ ଗଲେ ।
ଯଶୋବନ୍ତୀ ଭୁବନକୁ ପିତାଏ ଚଳିଲେ ॥
ବର ପାଇ ମହିଷା ଯେ ହୋଇଲା ନିର୍ଭୟେ ।
ମହା ସମ୍ଭ୍ରମ କରଣ କଣ୍ଟକ ଭିଆଏ ॥
କେନାବଲୀ ବୋଲିକରି ରଚିଲା ଭୁବନ ।
ବାରସ୍ୱତୀ ପୁର ତାକୁ ନୋହିବ ସମାନ ॥
ଅଲୋକିତ ବର ପାଏ ମୈଷାସୁର ରାଜା ।
ଅନେକ ଦଇତ୍ୟ ଆସି କଲେ ତାକୁ ପୂଜା ॥
ଜୟ ଜୟ ଦୁର୍ଗା ମାଗୋ ଦୁର୍ଗତିହାରିଣି ।
ଜୟ ଜୟ ଦୁର୍ଗା ମାଗୋ ଦନୁଜଦଳନି ॥
ଜୟ ଜୟ ଦୁର୍ଗା ମାଗୋ ଗିରିରାଜ ସୁତା ।
ଜୟ ଜୟ ଦୁର୍ଗା ମାଗୋ ଶଙ୍କର ବନିତା ॥
ଝଙ୍କଡ଼ ପୁରରେ ମାତ କରିଅଛୁ ବାସ ।
ଜନ୍ମେ ଜନ୍ମେ ଶାରଳା ତୋ ପାଦତଳ ଦାସ ॥



## ମହିଷାସୁରର ଦିଗ୍ବିଜୟ ।

ଏଥିଅନ୍ତେ ପରୀକ୍ଷିତ ନାମେ ମହାରାଜା ।
ଶୁକମୁନି ଚରଣରେ କରି ଦିବ୍ୟପୂଜା ॥
ବୋଇଲା ହେ ମୁନି କୁହ ମୈଷାସୁର କଥା ।
ବିଧାତାଙ୍କଠାରୁ ବର ପାଇ ବଳବନ୍ତା ॥
କପରେ ସୁକୃତ କଲା କୁହ ବ୍ରହ୍ମମୁନି ।
ତବ ମୁଖୁଁ ଶୁଣି ମୁକ୍ତି ଲଭିବଇଁ ପୁଣି ॥

କହନ୍ତି ଯେ ଶୁକମୁନି ଶୁଣ ମହାରାଜେ ।
ଶ୍ରୀଚଣ୍ଡୀ ପୁରାଣ ଶୁଣି ପାପ କର କ୍ଷୟେ ॥
ମଧୁଦାନବର ପୁତ୍ର ଅଟଇ କାନ୍ତମାଳା ।
ମହିଷାସୁରକୁ ଆସି ଦରଶନ କଲା ॥
ବଜ୍ର, ଲଙ୍ଗଳର ପୁତ୍ର ସୃମର ବେମାଳ ।
ସେ ଆସି ଦର୍ଶନ କଲେ ଘେନି ସୈନ୍ୟବଳ ॥
କାନ୍ତମାଳା ସୃମର ଯେ ବେମାଳ ଏ ତିନି ।
ଏହାଙ୍କ ସଇନ ନବସହସ୍ର କ୍ଷଉଣୀ ॥
ବଲଙ୍କ ଦେଶର ସେହ୍ନ ଠାକୁର ଅଟନ୍ତି ।
ମହିଷାସୁରର ପାଦେ ଶରଣ ପଶନ୍ତି ॥
ମାଧୁର୍ଯ୍ୟ ଦେଶର ରାଜା ଦୈତ୍ୟ ବିଡ଼ାଳାକ୍ଷ ।
ଶରଣ ପଶେ ସେ ଘେନି ସେନା ନବଲକ୍ଷ ॥
ଦ୍ୱୈପାୟନ ଦେଶ ରାଜା ଯେ ଧୂମ୍ରଦର୍ଶନ ।
ସେ ଭେଟିଲା ଘେନି ସାତ ଅର୍ବୁଦ ସଇନ ॥
ଭ୍ରନ୍ଦେଶ ନରପତି ନାମ କାଳନେମି ।
ଭେଟେ ସେ ବେନି ସାଗର ଯୋଦ୍ଧାସଙ୍ଗେ ଘେନି
ଏହିରୂପେ କେତେ କେତେ ନରପତିଗଣ ।
ଭୟରେ ମହିଷା ପାଦେ ପଶିଲେ ଶରଣ ॥
ଏକୁଁ ଏକ ବଳୀ ଗିରି ପାରନ୍ତି ସେ ତୋଳି ।
ଯମ କାଳପାଶ ପାଦେ ପାରନ୍ତି ସେ ଦଳି ॥
ଏରୂପେ ସପ୍ତ ଅର୍ବୁଦ ନବଲକ୍ଷ ବୀର ।
ସଙ୍ଗତରେ ଘେନିକରି ମହିଷା ଅସୁର ॥
ବୀରତୂର ବଜାଇଣ ଢଗ ବଜେ କଟର ।
ବଡ଼ ପ୍ରତାପୀ ହୋଇଲା ସିଂହଳଦ୍ୱୀପରେ ॥
ସିଂହଳଦ୍ୱୀପ ମଧ୍ୟରେ ଯେତେ ରାଜାମାନ ।
ସମସ୍ତଙ୍କୁ ଜିଣିଲା ସେ ଅସୁର ରାଜନ ॥
ଅନେକ ସମ୍ପାରେ ପୂର୍ଣ୍ଣ ଜେନାବଳୀ ପୁରୀ ।
ଅତି ସମ୍ଭ୍ରମରେ ମୈଷାସୁର ରାଜ୍ୟ କରି ॥
ଶତଲକ୍ଷ ଯୋଜନ ତା ପୁର ଆୟତନ ।
ସୁବର୍ଣ୍ଣରେ ବିଶ୍ୱକର୍ମା କରିଛି ଗଠନ ॥
ତାକୁ ଉପମା ଦେବାକୁ ନାହିଁ ତିନିପୁରେ ।
ବାରସ୍ୱତୀ ପୁର ତୁଚ୍ଛ ହେବ ତା ଶୋଭାରେ ॥
କୁରଞ୍ଜନ ନାମେ ତହିଁ ଏକ ନଗ୍ର ଥିଲା ।
ତାକୁ ବଳେ କେହି ଧର୍ଷି ପାରୁ ଯେ ନ ଥିଲା ॥
ତହିଁର ନୃପତି ନାମ ତାରାକ୍ଷୀ ଅଟଇ ।
ଅଟନ୍ତରେ ନିଷ୍କଣ୍ଟକେ ରାଜୁତି କରଇ ॥
ବତିଶ ସହସ୍ର ତାର ଅଟଇ ସଇନ ।
ବଳସ୍ୱପଣେ ତା ସମ ନାହିଁ କେ ମେଦିନୀ ॥
ଚକ୍ରବର୍ତ୍ତୀ ପଣରେ ସେ ଜିଣିଲା ଧରଣୀ ।
ତାହାକୁ ମହିଷାସୁର ସଂଗ୍ରାମରେ ଜିଣି ॥
ଏକଦିନେ ସୈନ୍ୟ ସାଜି ମହିଷା ଅସୁର ।
ସଙ୍ଗତରେ ହାତୀ ରଥୀ ଘେନିଣ ଅପାର ॥
ତାରକ୍ଷୀର କଟକକୁ କଲା କଟକାଇ ।
ବାରତା ପାଇଲା ଚର ମୁଖୁଁ ନରସାଇଁ ॥
ମନ୍ତ୍ରୀ କହିଲା ନୃପକୁ ଶୁଣ ଦଣ୍ଡଧାରି ।
ତୋହର ରାଜ୍ୟକୁ ମୈଷାଦୈତ୍ୟ ବେଢ଼ିଲେ କରି ॥
ସିଂହଳଦ୍ୱୀପରେ ଥିଲେ ଯେତେ ନରପତି ।
ସମସ୍ତେ ଖଟିଲେ ତାର ହୋଇ ବଶବର୍ତ୍ତୀ ॥
ମନ୍ତ୍ରୀର ମୁଖରୁ ରାଜା ଏହିରୂପେ ଶୁଣି ।
କ୍ରୋଧରେ ଜଳି ଉଠଇ ଦାବାନଳ ଜାଣି ॥
କେଉଁଣ ଦର୍ପରେ ମୈଷାସୁର ଆସୁଅଛି ।
ମୋହର ମହିମା ଯେ କି ନ ଜାଣଇ କିଛି ॥
କହୁଁ କହୁଁ ନରପତି କୋପେ ପରଚଣ୍ଡ ।
ଆଜ୍ଞା ଦେଲା ସାଜ ସାଜ ମୋର ସମଦଣ୍ଡ ॥
ରାଜାର ଆଜ୍ଞାରେ ମନ୍ତ୍ରୀ ସମଦଣ୍ଡ ସାଜି ।
ଅମାପ ସଇନ ତାର ସିନ୍ଧୁପ୍ରାୟେ ଗର୍ଜି ॥
ବଳସ୍ତେ ଦାନବ ବୀର ଶାର୍ଦ୍ଦୂଳର ପିଠି ।
ତୁଲେ ତାହାର ଅଛନ୍ତି ସେନା ପାଞ୍ଚକୋଟି ॥
ପାଞ୍ଚକୋଟି ସେନାଙ୍କର ଶାର୍ଦ୍ଦୂଳ ବାହନ ।
ସମସ୍ତେ ଦେଖାଯାଆନ୍ତି କୁବେର ସମାନ ॥
ତର୍ଜନ୍ତି ଗର୍ଜନ୍ତି କୋପେ ଚଳାବନ୍ତି ଆଟି ।
କିଛି ଦୂରେ ଯାଇଁ ଦୁଇବଳ ହେଲେ ଭେଟି ॥
ଦେଖେ ମହିଷାସୁରକୁ ତାରାକ୍ଷୀ ନୃପତି ।
ସମୁଦ୍ର ଲହରୀ ପ୍ରାୟେ ସୈନ୍ୟ ତା ଅସନ୍ତି ॥
ପାଞ୍ଚଅର୍ବୁଦ ଯୋଦ୍ଧାଙ୍କୁ ସଙ୍ଗତରେ ଘେନି ।
ସମର କରିଲା ବୀର ହୋଇ ଅନ୍ୟେ ଅନ୍ୟ ॥
ମହାମତ୍ତ ବଳ ତାର ଉଠିଲେ ଗର୍ଜ୍ଜି ।
ମହିଷା ଦଇତ ବଳ ଗଲେ ସବୁ ଭାଜି ॥
ସମଦଣ୍ଡ ଭଜନ୍ତେଣ ମୈଷାସୁର ଉଠି ।
ବେନି କରରେ ତାହାର ଘେନେ ବଜ୍ରମୁଷ୍ଟି ॥
କାନ୍ତମାଳା ବିଡ଼ାଳାକ୍ଷ ସୃମର ବେମାଳ ।
ଉଠିଲେକ ଶସ୍ତ୍ରଧରି ହୋଇ କୋପାନଳ ॥

ଅଚିବର ଭୁଲାଇଣ ସୈନ୍ୟ ତାର ପିଟି ।
ତାମ୍ରକ୍ଷୀ ଦେଖନ୍ତେ ସର୍ବେ ମହୀପରେ ଲୋଟି ॥
କାନ୍ତମାଳା ରାକ୍ଷସ ଯେ ଖଡ୍ଗ ଧରି ହାଣି ।
ରମ୍ଭାବନେ ମତ୍ତଗଜ ଯେସନେ ପଶିଣି ॥
ସେହିମତ ହୋଇଣ ଯେ ପଡ଼ିଲେ ସଇନ ।
ରୁଧିରରେ ବିଲେପନ ହୋଇଲା ମେଦିନୀ ॥
ସମରରେ ପଡ଼ି ମଲେ ବହୁ ରଥୀ ଯୋଧୀ ।
ପଳାନ୍ତି ଲୋକ ମାରନ୍ତି ପଥକୁ ନିରୋଧି ॥
ତାମ୍ରକ୍ଷୀ ଯେ ଦେଖୁ ଦେଖୁ ମଲେ ବହୁଥାଟ ।
ଲକ୍ଷେ ରାଜା ସେନକର ଥିଲା ସେ ମୁରାଟ ॥
ପାଞ୍ଚସାଗର ସଇନ୍ୟ ତାମ୍ରକ୍ଷୀର ମଲେ ।
ଅସୁରଙ୍କ ମାରଣେ ସେ ସବୁ ଶେଷ ହେଲେ ॥
ଶାର୍ଦ୍ଦୂଳମାନ ତାଙ୍କର ସେନାଲେ ଛଡ଼ାଇ ।
ମହିଷାସୁର ଛାମୁରେ ସମର୍ପିଲେ ନେଇ ॥
ସଇନ ପଡ଼ିବା ଦେଖି ତାମ୍ରକ୍ଷୀ ନିରାଶି ।
ପ୍ରାଣଆଶା ଛାଡ଼ିକରି ମହାରଣେ ଝାସି ॥
ଲକ୍ଷେକ ଯୋଦ୍ଧାଙ୍କୁ ଘେନି ଏକମୁଖ ହୋଇ ।
ମହିଷାସୁର ଆଟରେ ପଶିଲା ଝସାଇ ॥
ଅରେ ୨ ରହ ବୋଲି ଧାମେ କାନ୍ତମାଳା ।
ବଜ୍ରମୁଦଗର ଅଗ୍ରେ ଘେନିଣ ପିଟିଲା ॥
ତାମ୍ରକ୍ଷୀ ଯୋଦ୍ଧାଙ୍କ ପରେ ଯହିଁ ରାଗେ ପିଟି ।
ଏକା ପ୍ରହାରକେ ପଡ଼ୁଛନ୍ତି ମହୀଲୋଟି ॥
ଲକ୍ଷେକ ଯୋଦ୍ଧାଙ୍କୁ ତହିଁ ଚୂରକଣ ଯୋଟି ।
ରମ୍ଭାବନ ପ୍ରାୟେ ଯୋଦ୍ଧା ଭୂମିପରେ ଲୋଟି ॥
ନିଦ୍ରାକାଳେ ଯେସନ୍ତେ ନରେ ଶୁଅନ୍ତି ଧରଣୀ ।
ତେସନ୍ତେ ବଳ ଗଲେ ତାର ପୁର ସଂଯମନୀ ॥
ରଣେ ନିମିଷ୍ଠି ପଡ଼ିଲେ ତାମ୍ରକ୍ଷୀର ବଳ ।
କ୍ରୁନ୍ତି କରେ ଘେନି ତହିଁ ଧାଏଁ ମହୀପାଳ ॥
ରଜାକୁ ଦେଖିଣ ତହିଁ ଧାମେ କାନ୍ତମାଳା ।
ବଜ୍ର ଏକ ପିଟେ ନେଇ ଦୈତ୍ୟ ଅନର୍ଗଳା ॥
ମୁଣ୍ଡ ପାଡ଼ି ସହିଲା ତା ନୃପତି ତାମ୍ରକ୍ଷୀ ।
ଛଉରେ ଭସ୍ମ କରିଲେ ସର୍ବେ ତାହା ଦେଖି ॥
ତାମ୍ରକ୍ଷୀ ଧାଇଁଣ ମୁଦଗର ଘେନି ପିଟି ।
ପ୍ରହାରନ୍ତେ କାନ୍ତମାଳା ଭୂମିପରେ ଲୋଟି ॥
ରଣ ଗୋଳରେ ତାମ୍ରକ୍ଷୀ ମାରେ ବହୁବଳ ।
ଧାତକାରେ ଓଗାଳିଲେ ଗୃମର ଦେମାଳ ॥

ବଜ୍ରେ କର୍ଣ୍ଣ କୁଠାରକୁ ଘେନି ରଣେ ପଶି ।
ତାମ୍ରକ୍ଷୀର ଉପରେ ତା ମାରନ୍ତି ଆକର୍ଷି ॥
ସେ ବଜ୍ରକର୍ଣ୍ଣକୁଠାର ଧାତା ସର୍ଜିଥିଲା ।
ମହିଷାସୁର ହସ୍ତୁ ତା ଗୃମରି ଅଣିଲା ॥
ତାମ୍ରକ୍ଷୀ ସମାନେ ପୃଥ୍ୱୀ ମଧ୍ୟେ ନାହିଁ ଯୋଧୀ ।
ସେ ବ୍ରହ୍ମଶସ୍ତ୍ର ମେଣ୍ଟନେ ନ ଜାଣଇ ବୁଦ୍ଧି ॥
ତାମ୍ରକ୍ଷୀଙ୍କ ସେ ଶସ୍ତ୍ରରେ କାନ୍ତମାଳା ହାଣି ।
ଏକା ପ୍ରହାରକେ ଛେଦେ ତାର ବେନିପାଣି ॥
ମୁଣ୍ଡା ବୃକ୍ଷ ପ୍ରାୟେକ ସେ ପଡ଼ିଲାକ ଢଳି ।
ପୁଣି ଅରବେଳେ ତାକୁ ପ୍ରହାର ତା ତୋଳି ॥
ବଜ୍ରକର୍ଣ୍ଣ କୁଠାରେ ସେ ହେଲା ବେନିଖଣ୍ଡ ।
ସମୁଦ୍ର ଭିତରେ ଯାଇ ପଡ଼େ ତାର ମୁଣ୍ଡ ॥
ଅନେକ ଧନ ଥିଲା ଯେ କୁରାଞ୍ଜନ ପୁରୀ ।
ମହିଷାସୁର ସୈନ୍ୟ ତା ସବୁ କଲେ ଜୁରି ॥
ଅପର ଦେଶର ରାଜାମାନେ ଯେତେଥିଲେ ।
ତାମ୍ରକ୍ଷୀର ବଧ ଶୁଣି ସର୍ବେ ଭୟ କଲେ ॥
ବହୁତ ଧନ ରତନ ବସନ ସଇନ ।
ଘେନି ରାଜାଏ ଭେଟିରେ କରନ୍ତି ଦଇନ ॥
କେତେହିଁ ବେଳ ବଳ ବଢ଼ି କଳନା ନ ଯାଇ ।
ସମଦଣ୍ଡ ଘେନି ତହିଁ ମୈଷାସୁର ବାହି ॥
ସିଂହଳ ଦ୍ୱୀପରେ ଥିଲେ ଯେତେ ନୃପରାୟେ ।
ସମସ୍ତେ ଖଟିଲେ ଆସି ମୈଷାସୁର ପାୟେ ॥
ଶୁଣନ୍ତେ ଆଶ୍ଚର୍ଯ୍ୟ ଲାଗେ ମହିଷା ମହିମା ।
ଯାହା ସର୍ଜ୍ଜନା କରଣ ଅଛି ବେଦବ୍ରହ୍ମା ॥
ଚୂରିଲକ୍ଷ ଯୋଜନ ଯେ ଅଟେ ତାହି ପୁର ।
ବାସ୍ତବ ସେ ପୁରେ ମିଳେ ମହିଷା ଅସୁର ॥
ପାଞ୍ଚସାଗର ସୈନ୍ୟ ତା ଏକୁଁ ଏକ ବଳୀ ।
ମନ କଲେ ମେରୁ ଗିରି ପାରନ୍ତି ସେ ତୋଳି ॥
ବଜ୍ରସମାନ ଅଟଇ ତାହାଙ୍କର କାୟା ।
ବ୍ରହ୍ମାଦି ବରରେ ସେହୁ ରଣରେ ନିର୍ଭୟା ॥
ଭୟେ ନ ପଶଇ ଯମଦଣ୍ଡ କାଳଦଣ୍ଡ ।
ମହା ମହା ଯୋଦ୍ଧା ତାର ବଡ଼ ପରଚଣ୍ଡ ॥
ଆଦିତ୍ୟର ରଶ୍ମି ତହିଁ ନ ପଶଇ ଡରେ ।
ପବନ ଖରେ ନ ବହେ ଜେନାବଳୀ ପୁରେ ॥
ଶ୍ରୀ ଶାରଳା ପାଦପଦ୍ମେ ରଖି ହୃଦମତ ।
ଶାରଳାଦାସ ଲେଖିଲା ଅମୃତ ଭାରତ ॥

### ମେରୁଶୂଳ ସଙ୍ଗେ ମହିଷାସୁରର ଯୁଦ୍ଧ ଓ ପରାଜୟ ।

ପରୀକ୍ଷିତେ ଚାହିଁ ଭଣି ଶୁକ ତପୋଧନ ।
ଏକ ଦିନକର କଥା ମନ ଦେଇ ଶୁଣ ॥
ରବିବାର ମୂଳାନକ୍ଷତ୍ର ଯେ ବିଦ୍ୟମାନ ।
ସକଳ କାର୍ଯ୍ୟକୁ ସିଦ୍ଧ ଅଟଇ ସେ ଦିନ ॥
ତୈତିଳ ନାମେ କରଣ ପରିଘ ଯେ ଯୋଗ ।
ସେ ଦିନ ମହିଷାସୁର ବିଜେ ମେରୁ ସ୍ୱର୍ଗ ॥
ମେରୁତଳେ ଅଛି ବଜ୍ର ନାମେ ଏକ ରାଜ୍ୟ ।
ତହିଁରେ ନୃପତି ମେରୁଶୂଳ ମହାରାଜ ॥
ସେ ରାଜାର କୁଳରେ ସେ କଲା ବନ୍ଧୁ ଦ୍ୱନ୍ଦ ।
ଶତଦିନ ପର୍ଯ୍ୟନ୍ତେ ଲାଗିଲା ବିବାଦ ॥
ଅନେକ ସୈନ୍ୟ ପଡ଼ିଲେ ଲାଗନ୍ତେ କନ୍ଦଳ ।
ରୁଧିର ନଦୀ ବହିଲା ହୋଇଣ ଉଚ୍ଛୋଳ ॥
ପୃଥ୍ୱୀ ଉତପାତ ହେଲା ଦୁହିଙ୍କ ବିବାଦେ ।
ଗିରିବର ଶୃଙ୍ଗମାନେ ଝଡ଼ିଲେକ ହ୍ରାଦେ ॥
କାନ୍ତମାଳା ବିଡ଼ାଳାକ୍ଷ ବେମାଳ ଚାମର ।
ଦେବଙ୍କୁ ଦୁର୍ଲଭ ଅଟେ ଏହାଙ୍କ ସମର ॥
ମେରୁଶୂଳ ସେନା ମନ୍ତ୍ରୀ ଲୋଚନ ଯେ ବୀର ।
ମହାବୀର ଅଟନ୍ତି ସେ ଅବନୀ ମଧ୍ୟର ॥
ଏକକୋଟି ସଂଖ୍ୟା ସୈନ୍ୟ ଘେନି ସଙ୍ଗତରେ ।
ମେରୁଶୂଳ ଧାଏଁ ଗଦା ଘେନି କୋପଭରେ ॥
ବିଶ୍ୱରୂପ ବିକାଶିଣ ଧାଏଁ ମହାବୀର ।
ଉଚ୍ଚସ୍ୱରେ ଡାକେ ଅରେ ଅରେରେ ପାମର ॥
ଯମପୁରେ ଯିବାପାଇଁ ବଳାଇଲୁ ମତି ।
ଏତେ କହି ଗଦା ପିଟି ସଇନ ନିପାତି ॥
କଦଳୀ ବନ ପରାୟେ ପଡ଼ିଗଲେ ସେନା ।
ମହାକୋପେ ଗର୍ଜ୍ଜଇ ସେ ବୀରବର ଯେନା ॥
ବଳ ଭଞ୍ଜନ୍ତେଣ କାନ୍ତମାଳା ଯେ ଦେଖାଇ ।
କାହିଁକି ପଳାଅ ବୋଲି ତାଙ୍କୁ ଆଶ୍ୱାସଇ ॥
ରୁହ ରୁହ ରୁହ ଯୁଦ୍ଧ ଦେଖ ରେ ମୋହର ।
ସଇନଙ୍କି ସମ୍ଭାଳିଣ ଚଳେ ମହାବୀର ॥
ତା ରୂପେ ଚଳନ୍ତି ଦଶପତ୍ର ଖର ବଳ ।
ନିଃଶଙ୍କରେ ଯୁଦ୍ଧ କରେ ଦୈତ୍ୟ ମେରୁଶୂଳ ॥
ସେ ଯେ ହିମବନ୍ତ ଯେବେ ପାଇଅଛି ବର ।
ନାନା ଶସ୍ତ୍ର ନ ଭେଦଇ ଅଙ୍ଗରେ ତାହାର ॥
ଲୋଚନ ଧ୍ୱଂସନ ନାମେ ଦେବ ସେନାପତି ।
ମହିଷାସୁରର ସେହୁ ମହାବଳୀ ଯତୀ ॥
ଧାଇଁ ମେରୁଶୂଳ ଆଟେ ପିଟିଲେ ସେ ଗଦା ।
ଚାହିଁ ଚାହିଁ ସୈନ୍ୟ ଚାରି କରିଦେଲେ ପଦା ॥
ମେରୁଶୂଳ ଦେଖି ତାହା ସୈନ୍ୟ ଘେନି ଉଠି ।
ଲୋଚନାସୁର ଉପରେ ବଜ୍ରଶୂଳ ପିଟି ॥
ଘାଏଣ ଲୋଚନାସୁର ପଡ଼ିଲାକ ଟଳି ।
ପୁଣି ସେ ପ୍ରହାର କଲା ମୂର୍ଚ୍ଛିଲେକ ତୋଳି ॥
ମେରୁଶୂଳ ପ୍ରହାରରେ ଲୋଚନା ଯେ ଗୁଣ୍ଡା ।
ରଣେ ବିହରଇ ଯେହ୍ନେ ଯତୀ ବୀରଖଣ୍ଡା ॥
ପୁଣି ଅସ୍ତ୍ର ଧରି କୋପେ ଉଠେ ମେରୁଶୂଳ ।
ନିର୍ଦ୍ଦୟ ରାକ୍ଷସ ସେହି ପିଟିଲା କୋଦାଳ ॥
କୋଦାଳ ପିଟନ୍ତି ନେଇ ଧ୍ୱଂସନ ମରିଲା ।
ସମୁଦ୍ର ପରାୟେ ରକ୍ତନଦୀ ବହିଗଲା ॥
ଭୟେ ଚାମର ବେମାଳ ପଛଦ୍ୱା ଦେଲେ ।
ମେରୁଶୂଳ ଅଗ୍ରତରେ କେହି ନ ରହିଲେ ॥
ସୈନ୍ୟଭଗ୍ନ ଦେଖିକରି ଧାମଇଁ ମହିଷା ।
କିଂଭୁତ କାରଣ କାର ଏତେକ ଭରସା ॥
ମହିଷାସୁର ଉଠନ୍ତେ ସୈନ୍ୟ ହେଲେ ଆଗ ।
ଚାମର ବେମାଳ ଆସି ମିଳିଲେକ ବେଗ ॥
ଲାଗିଲା ଦୁଇ ଦଳରେ ବିଷମ କନ୍ଦଳ ।
ସମସ୍ତେ ଅସୁର ପୁଣି ଏକେ ମହାବଳ ॥
ମହିଷାସୁର କ୍ରୋଧରେ ମାରେ ବଜ୍ରଶର ।
ପ୍ରତିଶରେ କାଟିଲା ତା ମେରୁଶୂଳ ବୀର ॥
ପୁଣି ମହିଷା ପେଷଇ ମନ୍ତ୍ରି ନାଗ ବାଣ ।
ମେରୁଶୂଳ ଗରୁଡ଼ାସ୍ତ୍ରେ କରେ ତା ବାରଣ ॥
ପୁଣି ଅଗ୍ନି ଶର ଧରି ମହିଷା ପେଷଇ ।
ଜଳଶରେ ମେରୁଶୂଳ ତାହା ନିବାରଇ ॥
କୁହୁଡ଼ି ଶର ପେଷିଲା ପୁଣି ତଦପରେ ।
ସୂର୍ଯ୍ୟଅସ୍ତ୍ରେ ଛେଦେ ମେରୁଶୂଳ ଇଷିତରେ ॥
ଏରୂପେ ଯୁଦ୍ଧ କରନ୍ତେ ରବି ଅସ୍ତ ଗଲେ ।
ତହିଁ ଦୁଇଦଳ ଯାକ ନିବର୍ତ୍ତି ରହିଲେ ॥
ମେରୁଶୂଳ ରହିଲା ଯେ ବଜ୍ରଗିରି ଦେଶେ ।
ରାଜ୍ୟେ ଚଳିଲା ମହିଷା ମନର ହରଷେ ॥
ଆର ଦିବସରେ ମନେ ଭାଳେ ରକ୍ଷଗଣ ।
ମେରୁଶୂଳ ସଂଗ୍ରାମରେ ଅଟଇ ନିପୁଣ ॥

ପିତାର ବଚନ ଏବେ ହେଲା ମୋର ବୃଥା ।
କା ଆଗେ କହିବି ଏହା ଅତି ଲଜ୍ଜାକଥା ॥
ଏତେଚିନ୍ତି ମନରେ ରହିଲା ନୃପତି ।
ଶ୍ରୀଚଣ୍ଡୀ ପୁରାଣେ ଏହା ଅପୂର୍ବ ଭାରତୀ ॥



## ମହିଷାସୁର ଧୂମ୍ରଲୋଚନଙ୍କୁ ପାରଥିପଣେ ଶାଢୀ ଦେବାର ।

ଶୁଣ ହୋ ପରୀକ୍ଷ ନୃପ ଏଥିଅନନ୍ତରେ ।
ଯେ ମହିଷାସୁର କଥା ଯେସନ ପ୍ରକାରେ ॥
ଆଶ୍ୱିନ କୃଷ୍ଣଚତୁର୍ଥୀ ଗୁରୁବାର ଦିନ ।
ସେ ଦିନ ରାଶି ଅଟଇ କୃଷ୍ଣ ନାମେ ଜାଣ ॥
ବାଳବ ନାମେ କରଣ ଆୟୁଷ୍ମାନ ଯୋଗ ।
ଦିଗ୍‌ବିଜୟ କରିବା ପାଇଁ ପୁଣି ତା ଉଦ୍ଯୋଗ ॥
ସଙ୍ଗତରେ ବହୁ ରଥ ରଥୀଙ୍କୁ ଚଳାଇ ।
ଗଦାପାଣି ହୋଇ ବୀର ପୁଣି ବାହାରଇ ॥
ଯାହିଁ ଯାହିଁ ଭେଟିଲେକ ସେ କରଞ୍ଜଦେଶ ।
ବଡ଼ ସମ୍ଭ୍ରମରେ ସେ ରାଜ୍ୟ ହୋଇଲା ପ୍ରବେଶ ॥
ଅମର ଭୁବନ ପ୍ରାୟେ ସେହୁ ଦେଖାଯାଇ ।
ଯମଦଣ୍ଡ ଘେନି ମୈଷା ବଳେ କଲା ତହିଁ ॥
ମେଢ଼ ମଣ୍ଡପ ଜଗତୀ ଭାଙ୍ଗିଲେ ସକଳ ।
ହାଟ ବାଟ ଚୂର ସବୁ କଲେ ମୈଷା ବଳ ॥
ମନ୍ତ୍ରୀ ବାରତା କହଇ ଶୁଣ ନୃପନାଥ ।
ତୋ ଦେଶରେ ପଶିଲା ଯେ ମହିଷା ଦଇତ ॥
ଧୂମ୍ରକେତୁ ପଚାରଇ କିମର୍ଥେ ଆସଇ ।
ପୀରତି କରିବ କିବା ଯୁଦ୍ଧକୁ ଇଚ୍ଛଇ ॥
ରାଜାର ଆଗେ କହଇ ମନ୍ତ୍ରୀ ଯେ ଏସନ ।
ସୋଦର ଅଟଇ ତୋର ଶ୍ରେଷ୍ଠ ନୃପରାଣ ॥
କନ୍ୟାସ ନରପତି ଯେ ବଶିଷ୍ଠଙ୍କ ଶାପେ ।
ଦନୁଜରୂପ ବହିଲା ଅତ୍ୟନ୍ତ ପ୍ରତାପେ ॥
କନ୍ୟାସ ନୃପତିବର ହୋଇଲେକ ରକ୍ଷ ।
ତାହାର ନନ୍ଦନ ହେଲା ଜାଣ ମନ୍ଦାକ୍ଷ ॥
ମନ୍ଦାକ୍ଷର କୁମର ହେଲେ ରକ୍ଷ ଭକ୍ଷ ।
ହେତି ପ୍ରହେତି ବୋଲିଣ ତାଙ୍କ ହେନ ବହି ॥
ଏହାଙ୍କର ପୁତ୍ର ବଜ୍ରଅଙ୍ଗ କାଳାନଳ ।
ମାଳି ସୁମାଳି ମାଲ୍ୟ ଯେ ଏହାଙ୍କର ବାଳ ॥

ମାଳିର ସନ୍ତତି ନାମ ଦମନ ଯେ ନଦବ ।
ତାହାର ନନ୍ଦନ ନାମ ମାତଙ୍ଗ ଜାଣିବ ॥
ମାଲ୍ୟବନ୍ତ ରହିଥିଲା ଲଙ୍କା ନାମ ପୁରେ ।
କରଞ୍ଜ ଦ୍ୱୀପେ ରହିଲା ମାଧବର ଡରେ ॥
ମାତଙ୍ଗର ପୁତ୍ର ଅଟେ ବିଶାଳଲୋଚନ ।
ବିଶାଳଲୋଚନ ପୁତ୍ର ହୋଇଲା ହିରଣ୍ୟ ॥
ହିରଣ୍ୟତନୟ ନାମ ଗୋଟି ବୈଲୋଚନ ।
ବଇଲୋଚନର ପୁତ୍ର ବଳୀ ଉତପନ୍ନ ॥
ବଳୀର ତନୟ ଯେ ମଦନ ବିମୋଚନ ।
ତାହାର ତନୟ ଅଟେ କାଳବିମୋଚନ ॥
ବାଳବିମୋଚନରତ ତୁମ୍ଭେ ଅଟ ସୁତ ।
ତୁମ୍ଭର ତହୁଁ ଯେ ଧୂମ୍ରଲୋଚନ ସଞ୍ଜାତ ॥
ମନ୍ତ୍ରୀ ତାକୁ କହିଲେକ ବାରତା ଏମନ୍ତ ।
ତାହାର ତୋହର ଏକବଂଶରେ ସମ୍ଭୂତ ॥
ମନ୍ତ୍ରି ବଚନେ ଆନନ୍ଦ ଧୂମ୍ରକେତୁ ହୋଇ ।
ଧୂମ୍ରଲୋଚନ ନାମରେ ସୁତ ଡକରାଇ ॥
ପାରିଦଣ୍ଡ ମାନ ଘେନି ବାରୁ ଏବେ ଯାଅ ।
ମହିଷାସୁର ସଙ୍ଗରେ ପ୍ରୀତି ଉପୁଜାଅ ॥
ପିତାର ବଚନ ବେଗେ ଯେ ଧୂମ୍ରଲୋଚନ ।
ଘେନିଲେକ ନାନାବିଧ ରତନ ବସନ ॥
ବିଜେ ମହିଷା ଅସୁର କରଞ୍ଜଦ୍ୱୀପରେ ।
ଧୂମ୍ରଲୋଚନ ପ୍ରବେଶ ହେଲା ତା ପାଶରେ ॥
ଅନେକ ଯୋଗାଡ଼ମାନ ମୈଷାସୁର ଦେଖି ।
କରଞ୍ଜଦ୍ୱୀପ ନୃପତି କୋପ ଯେ ଉପେକ୍ଷି ॥
ନରପତିଙ୍କୁ କହଇ ମନ୍ତ୍ରୀ କାନ୍ତମାଳା ।
ଏ ଧୂମ୍ରଲୋଚନ ଧୂମ୍ରକେତୁ ନୃପବଳା ॥
ତୋହର ତାହାର ପ୍ରୀତି ଉପୁଜିବା ଅର୍ଥେ ।
ଦେଖାଦରଶନୀ ଧନ ଆଣିଅଛି କେତେ ॥
ସାମାଧାନ ଦେଇ ତୋତେ ହେଉଛି ବିନୟେ ।
କରଞ୍ଜଦ୍ୱୀପତି ସାଧ୍ୟ ଏବେ ତୋର ହୋଏ ॥
ଶୁଣି ଦୟା କଲା ମୈଷାସୁର କଉଣପ ।
ଦେଖି ଦ୍ରବ୍ୟମାନ ତୋଷ ହୋଇଲା ଅମାପ ॥
ମହିଷାସୁରଙ୍କୁ ଧୂମ୍ରଲୋଚନ ପ୍ରଣମି ।
ଦର୍ଶନେ ପ୍ରସନ୍ନେ ସ୍ୱାମି ରଖ ବୀରମଣି ॥
ବିନୟ ଶୁଣି ସାନନ୍ଦ ହେଲା ମହାରାଜ ।
ଆସ ଆସ ତୁ ମୋ ପ୍ରାଣସଖା ରେ ତନୁଜ ॥

ଅନେକ ବନ୍ଦ୍ୟେ ଧୂମ୍ରନେତ୍ର କରେ ସେବା ।
ଅସୁର ଅସ୍ଥାନେ ଦେବ ବିଜୟ କରିବା ॥
ସମଦଣ୍ଡ ଘେନିଣ ସେ ମୈଷାସୁର ବୀର ।
ତା ଅସ୍ଥାନେ ବିଜେ କଲା ପ୍ରତାପୀ ଅସୁର ॥
ଧୂମ୍ରନେତ୍ର ପିତା ଧୂମ୍ରକେତୁ ଯେ ରାଜନ ।
ମହିଷାସୁରଙ୍କୁ କଲା ପୂଜା ବିଧିମାନ ॥
ପୂଜାରେ ବହୁ ଉତ୍ସବ କରାଇଲା ରାଜ୍ୟେ ।
ବହୁ ସମ୍ଭ୍ରମରେ ପୂଜା କରିଲା ତା ପାଦ୍ୟେ ॥
କରଞ୍ଜ ଦ୍ୱୀପେ ମହିଷା ପାଞ୍ଚଦିନ ରହି ।
ବଡ଼ାଇ ସମ୍ଭ୍ରମେ ରାଜା କରଇ ମଣୋହି ॥
ବେନି ପଦ ସୈନ୍ୟଙ୍କୁ ସେ ଦେଲାକ ଭୋଜନ ।
ମହିଷାସୁର ରାଇଲା ସେ ଧୂମ୍ରଲୋଚନ ॥
ଶୀଘ୍ରକେ ମହିଷା ତାକୁ ଶାଢ଼ୀଦେଲା ଯାଚି ।
ବୋଇଲା ତୁହି ମୋ ରଥେ ହୋଇବୁ ସାରଥି ॥
ଏତେ କହିଣ ତାହାକୁ ସଙ୍ଗତରେ ଘେନି ।
ବାହୁଡ଼ି ସିଂହଳ ଦ୍ୱୀପେ ବିଜେ କଲା ପୁଣି ॥

## ଚଣ୍ଡମୁଣ୍ଡ ସଙ୍ଗେ ମହିଷାସୁରର ଯୁଦ୍ଧ ଓ ପରାଜୟ ।

ଶୁଣ ପରୀକ୍ଷିତ ମୈଷାସୁର ନୃପମଣି ।
ଢଗବଜେ କରେ ସମଦଣ୍ଡ ପୁଣି ଘେନି ॥
ତୁଳ କାର୍ତ୍ତିକ ପୌର୍ଣ୍ଣମୀ ଅଟେ ଚନ୍ଦ୍ରବାର ।
ରୋହିଣୀ ନକ୍ଷତ୍ର ଭୋଗ ଅଟେ ସେ ଦିନର ॥
ବାଣିଜ୍ୟ ନାମେ କରଣ ଧ୍ରୁବନାମ ଯୋଗେ ।
ଦଣ୍ଡପାଞ୍ଚେକେ ମୈଷାସୁର ନନ ଉଦବେଗେ ॥
ବାରଘଣ୍ଟ ବାଦ୍ୟତୂର ଢମକ ନିଶାଣି ।
ବଜାଇ ବାହାର ହେଲେ ମୈଷାସୁର ସୈନ୍ୟ ॥
ଅଶୀଖର୍ବ ଯୋଦ୍ଧା ସଙ୍ଗେ ସାତବୃନ୍ଦବଳ ।
ସେ ଯୋଦ୍ଧାମାନଙ୍କର ଯେ ବାହନ ଶାର୍ଦ୍ଦୂଳ ॥
କୁନ୍ତ ଖଡ୍ଗ ଶାବେଳ ଛେଲ ଚକ୍ରମାନ ।
ଧରିଅଛନ୍ତି ଯେ ନାନାବିଧ ଶସ୍ତ୍ରଗଣ ॥
ଢାଲ ଶକ୍ତି ଶର ଗଦା ଶୂଳ ତୀକ୍ଷ୍ଣମୁନା ।
ଏକଲୁ ଅନେକ ତହିଁ ନ ଯାନ୍ତି ଗଣନା ॥
ବହୁତ ବଳ ଚାପଲେ ଚଲାନ୍ତେ ସେ ଥାଟ ।
ଅକାଶ କମ୍ପି ଉଠଇ କମ୍ପେ ବସୁସ୍ଥ ॥

ଅନେକ ସମ୍ଭ୍ରମରେ ସଇନ ପଲାଣି ।
କମ୍ପନ୍ତି ମହିଷା ବିଜେ ଶୁଣି ନୃପଶ୍ରେଣୀ ॥
ଦେବଙ୍କୁ ଦୁର୍ଲଭ ଅଟେ ମହିଷା ମହିମା ।
ଯାହା ସେ ସର୍କ୍କନା କହିଛନ୍ତି ବେଦବ୍ରହ୍ମା ॥
ଦୁଷ୍ପ୍ରାପ୍ୟ ବର ତାହାକୁ ଦେଲେ ଯେଣୁ ଧାତା ।
ମହିଷା ହୋଇଲା ତେଣୁ ଜଗତରେ ଜିତା ॥
କୁଶ ଦ୍ୱୀପକୁ ସେ ଧନ କରିଲା ପ୍ରୟାଣ ।
ପାଦଭରେ ବସୁନ୍ଧରା ହୁଏ କମ୍ପମାନ ।
ପ୍ରଚଣ୍ଡାସୁର ବୋଲିଣ କୁଶଦ୍ୱୀପ ରାଜ୍ୟେ ।
ମହାବଳବନ୍ତ ସେହୁ ଶିବ ବର ପାଏ ॥
ବଡ଼ାଇ ସମ୍ପଦେ ପୂର୍ଣ୍ଣ ତାହାର ଭୁବନ ।
ଦ୍ୱିତୀ କପିଳାସ ଜାଣି ଅଟେ ସେହିସ୍ଥାନ ॥
ତା ମହିମା ଯେତେ କହିଲେତ ନ ସରଇ ।
ଦ୍ୱିତୀ ସ୍ୱର୍ଗପରି ତାର ଭୁବନ ଦିଶଇ ॥
ବଡ଼ାଇ ଧାର୍ମ୍ମିକ ସେହି ପ୍ରଚଣ୍ଡା ଅସୁର ।
ଭସ୍ମ ଭୂଷଣ ଶରୀର ଶିରେ ଜଟାଭାର ॥
କଷା ବାସ ଆଭରଣ କଣ୍ଠରେ ପଇତା ।
ତ୍ରିଶୂଳ ଡମରୁ ପର୍ଶୁ ଖଟ୍ୱାଙ୍ଗ ଧରନ୍ତା ॥
ଚଉଦ କୋଟି ତାହାର ବଳ ଯାତୁଧାନ ।
ମୃତ୍ୟୁଜିତା ନ ଜାଣନ୍ତି ସେ ଯମ ଭୁବନ ॥
ଗୃଳଣି ସପ୍ତ ଯୋଜନ ଦ୍ୱୀପ ଅଧୂଚନ ।
ଗ୍ରହ ସହସ୍ର ତହିଁରେ ବସନ୍ତି ରାଜନ ॥
ସମଦଣ୍ଡ ଘେନିଣ ଯେ ଖଟନ୍ତି ରାଜାଙ୍କୁ ।
ସବୁଜନେ ସେବନ୍ତି ଯେ ପ୍ରଚଣ୍ଡାସୁରଙ୍କୁ ॥
ଶିବଙ୍କ ପ୍ରସାଦେ ସେହୁ ହେଲା ମହାରାଜା ।
ଈଶ୍ୱର ଦେବଙ୍କୁ ନିତ୍ୟ କରଇ ସେ ପୂଜା ॥
ଅନେକ ଦନୁଜବଳ ଘେନି ସଙ୍ଗତରେ ।
ବିଜେ ମହିଷା ଅସୁର ତାହାର ରାଜ୍ୟରେ ॥
ରାଜାର ଅଗେ ଯାଇଣ କହେ ମନ୍ତ୍ରିବର ।
ଭୋ ଦେବ ତୋ ରାଜ୍ୟେ ପଶେ ମହିଷାଅସୁର ॥
ବଡ଼ାଇ ପ୍ରତାପୀ ମୈଷାସୁର ନୃପନାହା ।
ଅମର ବର ଦେଇଛି ତାକୁ ଅଷ୍ଟବାହା ॥
ଦୁର୍ଦ୍ଦାନ୍ତ ଅସୁର ସେହି କଷା ଜଗକ୍ଷେତେ ।
କାଳାନ୍ତକ ପ୍ରାୟେ ତୋର ନଗରକୁ ଘୋଟି ॥
ସତ୍ୟଯୁଗ ଅନ୍ତକଲ୍ପ ତୋର ପୁଣ୍ୟବଳେ ।
ଅପାର ଥାଟ ଅପିଣ ପଶେ ଏତେକାଳେ ॥

ସଂଗ୍ରାମ କରିବା କିବା କରିବାଟି ସନ୍ଧି ।
ତୁ ସର୍ବଜ୍ଞ ନାଥ ଦେବ ଜାଣୁ ସର୍ବବିଧି ॥
ଏମନ୍ତେ ସେ ଶିବପାଦ ମନ୍ତ୍ରୀ ତା ବୁଝାଇ ।
ମତ୍ୟ ପୁରରୁ ପ୍ରଚଣ୍ଡାସୁରକୁ ଖଟଇ ॥
ଅନେକ ପ୍ରକାରେ ତାଙ୍କୁ କହେ ମନ୍ତ୍ରିବର ।
ପ୍ରୀତି ଅପ୍ରୀତି କି ଦେବ ବୁଝିବା ତାହାର ॥
ମହିଷାସୁର ଯେ ଅଛି ମହାନଦୀ କୂଳେ ।
କରୁଣାକର ନାମରେ ଏକ ବଟମୂଳେ ॥
ରାଜାକୁ ବୁଝାଇ କହେ ଶିବପାଦ ମନ୍ତ୍ରୀ ।
ମୁହିଁ ଯିବ କହୋ ଦେବ ମୈଷାସୁର କତି ॥
ପ୍ରସ୍ଥାନକଲା କାହିଁକି ଅସୁର ପୁରକୁ ।
ସନ୍ଦେଶ ବୁଝିବା ଦେବ ପଣ୍ଡର ତାହାକୁ ॥
ପୀରତି ହେଲେ ସମ୍ବନ୍ଧ ତା ସଙ୍ଗେ କରିବା ।
ଦୁଷ୍ଟଚରିତ ଦେଖିଲେ ତା ସଙ୍ଗରେ ଯୁଝିବା ॥
ମନ୍ତ୍ରିମୁଖୁ ଶୁଣି ବୋଲେ ସେ ପ୍ରଚଣ୍ଡ ରାଜେ ।
ବୁଝ ତୁମ୍ଭ ମନକୁ ହୋ ଯେମନ୍ତ ଯୋଗାଏ ॥
ନୃପ ଆଜ୍ଞା ପାଇ ଶିବପାଦ ମନ୍ତ୍ରିବର ।
ମୈଷାସୁର ପାଶେ ଗଲା ଘେନି ଉପହାର ॥
ଅଗ ଦଣ୍ଡେ ରହିଥିଲେ ଚୃମର ବେମାଳ ।
ବତିଶ ଅର୍ବୁଦ ସଙ୍ଗେ ଅଛନ୍ତି ତା ବଳ ॥
ଅନେକ କନକ ରତ୍ନ ଆଭରଣ କାୟେ ।
ସବୁ ଅସୁର ଦଶନ୍ତି ବୃନ୍ଦାରକ ପ୍ରାୟେ ॥
ଉପହାର ଦେଖି ତାର ଚୃମର ବେମାଳ ।
ଜଣାଇଲେ ଯାଇ ବେଗେ ମୈଷାମହାମଲ୍ଲ ॥
ଚୃମର ବେମାଳ ଯାଇଁ ସନ୍ନିଧିରେ ମେଳ ।
କହିଲେ ଶ୍ରୀମୁଖରେ ପ୍ରୀତି ଯୋଗାଡ଼ ଏ ବୋଲି ॥
ପ୍ରଚଣ୍ଡାସୁରର ଏହୁ ଅଟଇ ଯେ ମନ୍ତ୍ରୀ ।
ତୁମ୍ଭ ତହିଁକି ଅଇଲା ସମାଧାନ ଘେନି ॥
ଶୁଣି ଚୃମର ବେମାଳେ ରାଜା ପ୍ରଶଂସଇ ।
ବେମାଳିକ ଶରୀରରେ ନରେଶ ହାତ ଦେଇ ॥
ଚୃମର ବେମାଳେ ପୁଣି କହିଲେ ରାଜାକୁ ।
ଶିବପାଦ ଦରଶନ କରିବ ତୁମ୍ଭକୁ ॥
ଅଜନ୍ମ ପରଂ ବୈଷ୍ଣବ ଅଟଇଟି ସେହି ।
ସତ୍ୟଯୁଗ ରାଜା ତାର ସମ ନାହିଁ କେହି ॥
ଆସନ୍ତୁ ସେ ବୋଲି ଆଜ୍ଞା ଦେଲା ମୈଷାସୁର ।
ତାହାର ମୋହର ଯେବେ ପୀରତି ହେବର ॥

ଶୁଣି ଅତି ଆନନ୍ଦିତ ହୋଇଲାକ ମନ୍ତ୍ରୀ ।
ଉପହାର ଥୋଇ କହେ ବିନୟ ଭାରତୀ ॥
ମନ୍ତ୍ରୀ ବୋଇଲା ହେ ଦେବ ଶୁଣ ମୈଷାସୁର ।
ପ୍ରଚଣ୍ଡାସୁର ନୃପତି ଆଙ୍କୁ ହେଲା ତୋର ॥
ସେ ଶିବଙ୍କ ଶିଷ୍ୟ ତୁହି ବ୍ରହ୍ମାଙ୍କର ଶିଷ୍ୟ ।
ତାହାର ତୋହର ହେବ ପୀରତି ଅଶେଷ ॥
ମହିଷାସୁର ବୋଇଲା ଶୁଣ ମନ୍ତ୍ରିବର ।
ରାଜାର ଅଗଛେ ଯାଇଁ ଜଣାଅ ତୋହର ॥
ମୋହର ସେନାପତି ସେ ବୀର କାନ୍ତିମାଳା ।
ସିଂହଳ ଦ୍ୱୀପ ନୃପ ଏ ଅଟେ ଅନର୍ଗଳା ॥
ମୋତେ ଖଟଇକ ସେହୁ ସର୍ବ ସୈନ୍ୟ ଘେନି ।
ସିଂହଳ ଦ୍ୱୀପ ନୃପତି ହେଲା ମୋତେ ମାନି ॥
ଏ କୁଶଦ୍ୱୀପରେ ପୁଣି ପ୍ରଚଣ୍ଡ ଯେ ରାଜା ।
ଚଣ୍ଡ ମୁଣ୍ଡ ନାମେ ବେନି ତାହାର ଅସ୍ୱଜା ॥
ତାହାର ମୋହର ଯେବେ ହୋଇଲା ପୀରତି ।
ମୋତେ ସେହୁ ଦେବ ଚଣ୍ଡ ମୁଣ୍ଡ ଯେ ଦୁହନ୍ତି ॥
ତାର ମୋର ପୀରତି ଯେ ଥିବାକ ସର୍ବଦା ।
ଚଣ୍ଡ ମୁଣ୍ଡ ବେନି ଦୁଇ ରଖି ମୋର ଛାଡ଼ା ॥
ପ୍ରଚଣ୍ଡାସୁର ନୃପତି ନ ଦେଲେ ତାହାନ୍ତି ।
ସଂଗ୍ରାମ ତାହାର କୁଳେ କରିବ ବହୁତ ॥
ମାରିବ ସକଳ ସୈନ୍ୟ ଉଜାଡ଼ିବ ଦେଶ ।
ଯୋଦ୍ଧାମାନଙ୍କର ସବୁ କାଟିବ ମାଂସ ॥
ପ୍ରତିଜ୍ଞା କରେ ଅପାର ଓଠେ ଦନ୍ତ ଚାପି ।
ଆକାଶ ମାର୍ଗକୁ ମୈଷାସୁର ଶିର ବ୍ୟାପି ॥
ବେନିଲୋଚନ ତାହାର ପ୍ରତ୍ୟକ୍ଷେ ବହ୍ନି ।
ଆକାଶ କମ୍ପିଲା ମୈଷାସୁର ତେଜ ଘେନି ॥
ବାହୁଡ଼ିଲ ମନ୍ତ୍ରୀ ମନେ ତାପ ବହୁ ପାଇ ।
ରାଜାକୁ କହିଲା ସମ ତାକୁ କେହି ନାହିଁ ॥
ନିମିଷକରେ ଘୋଟି ସେ ପାରଇ ଜଗତ ।
ମହାଦୁର୍ଦ୍ଦାନ୍ତ ଅଟଇ ସେ କପିଳ ସୁତ ॥
ମନ୍ତ୍ରୀବୋଲେ ବ୍ରହ୍ମା ସହି ନ ପାରେ ତା କୋପ ।
ମଇଁଷିର ମୁଣ୍ଡଗୋଟା ମନୁଷ୍ୟ ସ୍ୱରୂପ ॥
ବୋଇଲା ତାହାର ମୋର ହେବ ଯେବେ ପ୍ରୀତି ।
ମୋତେ ଦେଇଯିବ ଚଣ୍ଡ ମୁଣ୍ଡ ଯେ ଦୁହନ୍ତି ॥
ମୋର ଥାଟେ ସେନାପତି ହୋଇବେ ସେ ବେନି ।
ତାହାଙ୍କୁ ଘେନିଣ ମୁଁ ଯେ ସାଧିବ ମେଦିନୀ ॥

ପ୍ରଚଣ୍ଡାସୁର ତହିଁରେ କଲା ଅଯତ୍ନ ।
ପୁଅଙ୍କୁ ଦେଇ ନ ପାରେ କଦାପି ହୋ ମନ୍ତ୍ରି ॥
କ୍ଷଣତ ହୋଇ କାହିଁକି ଦେବଇଁ ଅସ୍ୱଜା ।
ମନ୍ତ୍ରୀକି ବୋଇଲା ମୋର ଦଣ୍ଡକୁ ସାଜ ଯା ॥
ରାଜା ଆଜ୍ଞାରେ ଶୁଭିଲା ସାଜ ସାଜ ଧ୍ୱନି ।
ସାଜିଲେ ସମର ବୃନ୍ଦ ପ୍ରତାପ ସଇନ ॥
କରେ ସବୁ ଯୋଦ୍ଧାଙ୍କର ତ୍ରିଶୂଳ ଶକତ ।
ବାଦ୍ୟ ଡମରୁ ବଜାନ୍ତି ହୋଇ ରୁଦ୍ରମୂର୍ତ୍ତି ॥
ଧବଳ ଶରୀରବେନି ପାଦ ଚତୁର୍ଭୁଜ ।
ପୃଥିବୀ ଯାକ ପୂରିଲା ଯୋଦ୍ଧାଙ୍କର ତେଜ ॥
ନବକୋଟି ଡମରୁ ଯେ ବଜାନ୍ତି ସେ ବଳୀ ।
ସ୍ୱରଗ ମର୍ତ୍ତ୍ୟ ପାତାଳ ତ୍ରିପୁର ଉଚ୍ଛୁଳ ॥
ବୃଷଭମାନ ଯେ ଚଢ଼ିଛନ୍ତି ସର୍ବସାର ।
ବିଭୂତି ଲେପନ ହୋଇ ଅଛନ୍ତି ଶରୀର ॥
ପ୍ରଚଣ୍ଡ ବଳ ତାହାର ମହା ମହା ସେନା ।
ସମର ସମ୍ମୁଖେ ସେହି ନ ଯାନ୍ତି ଗଣନା ॥
ମହିଷା ସଇନ ଦୁଇ ସାଗରତ ଜାଣି ।
ଗଗନ ଉଚ୍ଛୁଳ କରି ମୁଖରବ ଧ୍ୱନି ॥
ଏ ରୀତିରେ ବେନିବଳ ହେଲେ ଭେଟାଭେଟ ।
ଲାଗିଲାକ ରଣ ଘୋର ସେ ନଦୀର ତଟ ॥
ହେ ପକ୍ଷୀଶ ବ୍ୟାଘ୍ରେ ବ୍ୟାଘ୍ରେ ଚଢ଼ି ଚଣ୍ଡ ମୁଣ୍ଡ ।
କରେ ଗଦା ଘେନିଣ ସେ କୋପରେ ପ୍ରଚଣ୍ଡ ॥
ପ୍ରତିଜ୍ଞା କରିଲେ ଦୁହେଁ ପିତାର ଅଗ୍ରତେ ।
ତୁମ୍ଭର ଜୟ ସମର ଆମ୍ଭର ଥାଅନ୍ତେ ॥
ପ୍ରଚଣ୍ଡାସୁର ପୁତ୍ରଙ୍କୁ ପାଶରେ ବସାଇ ।
କହଇ ମହିଷାସୁର ତୁମ୍ଭଙ୍କୁ ମାଗଇ ॥
ତୁମ୍ଭେ ଘରେ ରହିଥାଅ ଆରେ ବେନିବଳା ।
ପୁଅଙ୍କୁ ରଖାଇ ତହୁଁ ନୃପତି ଚଳିଲା ॥
ବାଜିଲାକ ରଣଘୋଷ ଦୁନ୍ଦୁଭି ଯେ ଢୋଲ ।
ରେରେକାରେ ଧାଉଁଛନ୍ତି ସେନା ଦଳ ଦଳ ॥
ବେନି ସଇନ ସମରେ ହେଲେ ଏକମୁଖ ।
ବହରନ୍ତି ଦାନବେ ଯେ ପାଇ ଅତି ସୁଖ ॥
କାନ୍ତମାଳା ଜଣାଏ ଯେ ଭେ କେଶରଙ୍କଣି ।
ପୁତ୍ରଙ୍କୁ ମାଗନ୍ତେ ରାଜା ସମରକୁ ଅସି ॥
ମୈଷାସୁର ରାଇ ବୋଲେ ଶୁମର ବେମାନେ ।
ପ୍ରଚଣ୍ଡାସୁରକୁ ତୁମ୍ଭେ ଓଗାଳ ଏକାଳେ ॥

ଚଣ୍ଡମୁଣ୍ଡ ନ ଦେଖଲେତ ମୋର ଜୟ ଯିବ ।
ବ୍ରହ୍ମାର ବର କି ମୋର ବିଫଳ ହୋଇବ ॥
ପଚଶ ମେବଛ ମୋର ତ୍ରିକୂଳେ ସେନା ଅଛ ।
ଏତେ ବୋଲି ମୈଷାସୁର ଧାଏଁ ଅନ୍ତରୀକ୍ଷ ॥
କଟକ ପଶ୍ଚିମେ ଥିଲେ ଚଣ୍ଡମୁଣ୍ଡ ବେନି ।
ପକ୍ଷୀପର ମୈଷାସୁର ଉଡ଼େ ସୈନ୍ୟ ଘେନି ॥
ଚଣ୍ଡମୁଣ୍ଡଙ୍କୁ ଦେଖିଣ ଧାଇଁ ସେ ପଡ଼ିଲା ।
ଧରିବାକୁ ଲକ୍ଷେ ସୁର କରିଣ ବେଢ଼ିଲା ॥
ଯୁବଶି ସମୁଦ୍ର ଘେନି ଚଣ୍ଡ ମୁଣ୍ଡ ବୀରେ ।
ଜଳକ୍ରୀଡ଼ା କରୁଥିଲେ ଅତି ମୋଦଭରେ ॥
ଅପୂର୍ବ ବଳ ଦେଖିଣ କୋପେ ପରଚଣ୍ଡ ।
ବେନି କରେ ଧରି ବେନି ଲୌହସାର ଦଣ୍ଡ ॥
ଗଦାକୁ ବୁଲାଇ ନଦୀ ମଧ୍ୟୁ ବୀରେ ଉଠି ।
କେଶ ଚାପ ଅସମ୍ଭାଳେ ଦୃଢ଼କରି ମୁଷ୍ଟି ॥
ଅଙ୍ଗ ଦେ ଯୋଦ୍ଧା ସଙ୍ଗତେ ଘେନି ବୀରବେନି ।
ସମର କରନ୍ତି ହସ୍ତେ ଗଦାବର ଘେନି ॥
ଦେଖି ରହ ରହ ବୋଲି ବୋଇଲା ମହିଷା ।
ବାଳ ବୟସରେ ଏଡ଼େ ତୁମ୍ଭର ଭରସା ॥
ସେନାଗଣ ରାଇ ମୈଷା ଅସୁର ବୋଲଇ ।
ଏହାଙ୍କୁ ଦେଖି ମୋ ଦେହ ଉତ୍ଫୁଲ୍ଲ ହୁଅଇ ॥
ପ୍ରାଣେ ନ ମାରି ଏହାଙ୍କୁ ବେଗେ ଧରି ବେଢ଼ି ।
ରାଜ୍ୟକୁ ନେବା ଆମ୍ଭର ନ ଯିବାଟି ଛାଡ ॥
ରାଜା ବଚନେ ବେଢ଼ିଲେ ଯାଇଁ ସର୍ବସେନା ।
ମହା ପ୍ରତାପୀ ସେମାନେ ଏକୁଁ ଏକ ଜଣା ॥
ବଜ୍ରଘାତ ପ୍ରାୟେ ଚଣ୍ଡମୁଣ୍ଡଙ୍କର ମୁଷ୍ଟି ।
ପ୍ରହାର କରନ୍ତେ ସୈନ୍ୟ ପଡ଼ କୋଟି ୨ ॥
ଗଦାବର ଘାତେ ସେନା ହୋନ୍ତି ମସିଗୁଣ୍ଡା ।
ରଣେ ବହରନ୍ତି ବେନି କୁଶଦ୍ୱୀପ ଖଣ୍ଡା ॥
ଅଧର ପୃଷ୍ଠ କରନ୍ତେ ପୃଥିବୀ ଥରଇ ।
ତାଙ୍କ ଆଗେ ଦୈତ୍ୟବଳ ନ ରହନ୍ତି କେହି ॥
ବୁଲାଇଣ ଗଦାବର ପ୍ରହାର କରନ୍ତି ।
ଏକ ପ୍ରହାରକେ ଦଶ ପଚଶ ପଡ଼ନ୍ତି ॥
କରନ୍ତି ସମର ଦୁହେଁ ଅତିହିଁ ନିପ୍ରୋଧି ।
ଘଡ଼କେ ପଡ଼ିଲେ ବେନି ସତ୍ର ମହାଯୋଧୀ ॥
ମୈଷାସୁରସୈନ୍ୟ ହେଲେ ଛେଳପଲ ପ୍ରାୟେ ।
ମହାମତ୍ତ ବ୍ୟାଘ୍ର ଜାଣି ପଚଣ୍ଡା ଚଳନ୍ତେ ॥

ବେଢ଼ିଁ ବେଳ ତାହାଙ୍କର ତେଜ ପ୍ରକାଶଇ ।
ସଇନ ମାରନ୍ତି ଚଣ୍ଡମୁଣ୍ଡ ବେନି ଭାଇ ॥
କଠୋର ଦେଖି ମହିଷାସୁର ଯେ ଉଠଇ ।
ଶର ବୃଷ୍ଟିକର ସୃଷ୍ଟି ଯାଙ୍କ ନିରୋଧଇ ॥
ଶର ପଡ଼ନ୍ତେଣ ସେହି କରନ୍ତି ଭସ୍ମ ।
ଈଶ୍ୱର ବରେ ଅମର ଅଟେ ତାଙ୍କ କାୟେ ॥
ବଜ୍ରରେ ନିର୍ମାଣ ଅଟେ ଚଣ୍ଡମୁଣ୍ଡ ଅଙ୍ଗ ।
ସମସ୍ତ ଶସ୍ତ୍ର ପଡ଼ଣ ଅଙ୍ଗେ ହୋନ୍ତି ଭଙ୍ଗ ॥
ଶସ୍ତ୍ର ବାଜିବାର ଦେଖି ଉଠି ମହାବଳୀ ।
ମୈଷାସୁର ସୈନ୍ୟ ସବୁ ପିଷ୍ଟି କଲେ ଧୂଳି ॥
ଅପାନ୍ତ ସମର ସେ ଯେ କରନ୍ତି ନିପ୍ରୋଧି ।
ପ୍ରହରକ ଭିତରେ ଯେ ପଡ଼ି ସର୍ବ ଯୋଧୀ ॥
ନାସ୍ୱଚେ ପୁଣି ମହିଷା ସର୍ବ ଦଳ ରୁନ୍ଧ ।
ମହା ବଳଷ୍ଠ ଦାନବ ଅଟେ ଅସୁରାଧି ॥
ଆକାଶ ଅନ୍ଧାର କଲା ଶର କରି ବୃଷ୍ଟି ।
ପ୍ରାଣେ ମାରିବ ବୋଲି ସେ ମୈଷାସୁର ଉଠି ॥
ସମରେ ଅନିବାର ଯେ ଚଣ୍ଡ ମୁଣ୍ଡ ବେନି ।
ପୁଣି ସମରେ ମାଇଲେ ଅନେକ ସଇନ ॥
ଅର୍ବୁଦେକ ଯୋଦ୍ଧା ମୈଷାସୁର ସଙ୍ଗେ ଥିଲେ ।
ଚଣ୍ଡମୁଣ୍ଡ ମାରନ୍ତେ ସେ ସର୍ବ କ୍ଷୟ ଗଲେ ॥
ପବନକୁ ବ୍ୟଗ୍ରକରି ପକ୍ଷୁଡ଼ନ୍ତି ଗଦା ।
ମହିଷାସୁର ସଇନ ମାରି କଲେ ସଦା ॥
ରକତରେ କର୍ଦ୍ଦମ ଯେ ମେଦନୀ ହୋଇଲା ।
ମୈଷାସୁର ସଇନରୁ କେହି ନ ରହିଲା ॥
ଦେଖି ମହିଷାସୁରର ନ ସ୍ଫୁରଇ କଛ ।
ଭଗ୍ନବଳ ଯେନ ମୈଷାସୁର ପଳାଉଛି ॥
କାନ୍ତିମାଳାକୁ ଡକାଇ ମହିଷା ଅସୁର ।
କହିଲାକ ଯେତେକ ଚଣ୍ଡମୁଣ୍ଡଙ୍କ ସମର ॥
ଯୁଝିଲେ ନ ଜିଣିବାତ ଏହାଙ୍କୁ ସର୍ବଥା ।
ଶୁଣି କାନ୍ତିମାଳା ମନେ ପାଇ ବଡ଼ ବ୍ୟଥା ॥
ମହିଷା ବୋଇଲା ଏବେ କର ଆନ ବୁଦ୍ଧି ।
ଏହାଙ୍କ ସଙ୍ଗରେ ଅମ୍ଭେ କରିବା ଯେ ସନ୍ଧି ॥
ଗୁମର ବେମାନେ ଭଣି ପୀରତି କରିବା ।
ନିଃଶସ୍ତ୍ର ହୋଇ ସମ୍ମୁଖେ ତାହାଙ୍କର ଯିବା ।
ବନ୍ଧୁପଣ ଲଗାଇଣ ସମାଧା କରିବା ।
ସନ୍ଧି ନୋହିଲେ ସମର ପଛେ ଆଚରିବା ॥

ଏମନ୍ତ ବିଚାର ସେହି ତେଜି ଶସ୍ତ୍ରମାନ ।
ପାଦଗତ ହୋଇ କରି କରିଲେ ଗମନ ॥
ରାଜା ଆଗରେ କହିଲା ମନ୍ତ୍ରୀ ଶିବପାଦ ।
ପାଦତଳେ ମିଳିଲା ଯେ ସକଳ ସମ୍ପଦ ।
ସମର ଛାଡ଼ ମହିଷାସୁର ଭୟ ଆସଇ ।
ସନ୍ଧି ହୋଇଲା ଏଠାରେ କୋପ ନ ଯୋଗାଇ
ଏହା ଛାଡ଼ ତୁମ୍ଭେ କ୍ରୋଧ କରିବଟି ଯଦି ।
ପ୍ରୀତିଭଗ୍ନ ଦୋଷେ କାର୍ଯ୍ୟ ନୋହିବ ଯେ ସିଦ୍ଧି
ମନ୍ତ୍ରୀ ବଚନେ ପ୍ରଚଣ୍ଡାସୁର ଯେ ଚଳଇ ।
ମହିଷାସୁରକୁ କୋଳ କରିଣ ବସାଇ ॥
ଶିବପାଦ କହେ ବସି ରାଜାଙ୍କଣ କଥା ।
ତୋର ତା'ର ସବୁଦିନେ ପୀରତି ବ୍ୟବସ୍ଥା ॥
ଶୁଣି ଆନନ୍ଦ ହୋଇଲା ମହିଷା ନୃପତି ।
କରାଇଲେ ବେନିଜନଙ୍କର ଅତିପ୍ରୀତି ॥
ମହିଷାସୁରକୁ ଘେନି ସେ ପ୍ରଚଣ୍ଡାସୁର ।
ବଜାୟେ କଲା ଯାଇଁ ଆପଣାର ପୁର ॥
ମାଲ୍ୟବନ୍ତ ଲେଖାରେ ତ ମୈଷାସୁର ନାତି ।
ପିତାମହ ହେଲା ତାର ପ୍ରଚଣ୍ଡା ନୃପତି ॥
ମହିଷାକୁ ଦେଲା ପୁଣି ଅନେକ ସମ୍ଭାର ।
ପ୍ରାଣୁ ଅଧିକ କରିଲା ସେ ପ୍ରଚଣ୍ଡାସୁର ॥
ପାଞ୍ଚଦିବସ ସେଠାରେ ରହିଲା ମହିଷା ।
ସିଂହଳ ଦ୍ୱୀପକୁ ପୁଣି ବଳାଏ ମନାଷା ॥
ପ୍ରଚଣ୍ଡାଠାରେ କରଇ ବହୁତ ଭକତି ।
ସଙ୍ଗ ନ ଛାଡ଼ଇ ତାର ସଦା ଦିବାରାତି ॥
ଚଣ୍ଡମୁଣ୍ଡର ପୀରତି ମୈଷାସୁର ତୁଲେ ।
ହସିବା ବସିବା ଆଉ ଶଯ୍ୟା ଏକାବେଳେ ॥
ଘେନେ ମହିଷା ବୋଇଲା ପ୍ରଚଣ୍ଡାସୁରକୁ ।
ମୋ ସଙ୍ଗତେ ଦିଅ ପିତା ଏ ଚଣ୍ଡ ମୁଣ୍ଡଙ୍କୁ ॥
ମୋହଠାରେ ଦୟା ଯେବେ ଥାଏ ପିତାମହ ।
ତୋର ବେନି ପୁତ୍ରଙ୍କୁ ମୋ ସଙ୍ଗତରେ ଦିଅ ॥
ପ୍ରାଣୁ ଅଧିକ କରି ମୁଁ କରୁଥିବି ପୂଜା ।
ଏହାଙ୍କ ସାହାଯ୍ୟେ ଜିଣିବଇଁ ମୁଁ ଦେବରାଜା ॥
ଶୁଣି ସାନନ୍ଦ ହୋଇଲା ସେ ପ୍ରଚଣ୍ଡାସୁର ।
ଚଣ୍ଡମୁଣ୍ଡେ ସମର୍ପିଲା ମହିଷା ସଙ୍ଗର ॥
ପାଞ୍ଚଶତ ଅର୍ବୁଦ ଦେଲା ସେନାପତି ।
ଚଣ୍ଡମୁଣ୍ଡ ହମାନରେ ଦେଲା କୋଟି ହାତୀ ॥

ଏତେ ସୈନ୍ୟ ଘେନି ତହୁଁ ମହିଷା ଚଳଇ ।
ବହୁ ସମ୍ଭ୍ରମେ ସିଂହଳ ଦ୍ୱୀପରେ ମିଳଇ ॥
ରାଜ୍ୟେ ଅନେକ ଉତ୍ସବ କରାଇଣ ରାଜା ।
ଚଣ୍ଡମୁଣ୍ଡଙ୍କୁ ସାଦରେ କଲା ବହୁ ପୂଜା ॥
ଅହୋ ପରୀକ୍ଷିତ ଶୁଣ ଏକମନ କରି ।
ସିଂହଳଦ୍ୱୀପରେ ସେହୁ କରି ଏକପୁରୀ ॥
ଶହେଲକ୍ଷ ଯୋଜନ-ତା ପୁର ଅଯୁତନ ।
ସେ କଟକେ ଚଣ୍ଡ ମୁଣ୍ଡ ହୋଇଲେ ରାଜନ ॥
ନଗରେ ଥାଇ ମହିଷାସୁର ମହାରାଜେ ।
ଚଣ୍ଡମୁଣ୍ଡ ଦୁହେଁ ତାର କରନ୍ତି ଦଣ୍ଡ୍‌ବଜେ ॥
ଜୟ ଜୟ ଭଗବାନ ଭକତବତ୍ସଳ ।
ରାଜୀବଲୋଚନ ଜୟ ଜୟ ଆଦିମୂଳ ॥
ମନ ବଚନ କର୍ତ୍ତବ୍ୟେ ପରମ ସାନନ୍ଦେ ।
ଶ୍ରୀ ଜଗନ୍ନାଥଙ୍କ ନାମ ସ୍ମରୁଥାଇ ହୃଦେ ॥
ପରମ ବ୍ରହ୍ମ ସ୍ୱରୂପ ମନେ ମୋର ଭାବେ ।
ଲୟ ରହିଥାଉ ମୋର ପ୍ରଭୁ ବାସୁଦେବେ ॥
ହେ ମହୋଦଧି ନିକଟ ନୀଳାଚଳବାସୀ ।
ଦେବକଳ୍ପ ବଟତଳେ ମୋତେ ଠାବ ଦେସି ॥
ନମାମି ନମାମି ନାରାୟଣ ଯାର ନାମ ।
ନରେ ନରକତାରଣ ଶ୍ରୀପୁରୁଷୋତ୍ତମ ॥
ବଳେ ବଳରାମ ବଜ୍ର ଲଙ୍ଗଳକୁ ଧରି ।
ଚାଣୁର ମୁଷ୍ଟିକ ଆଦି ପ୍ରଲମ୍ବା ଯେ ମାରି ॥
ନିର୍ମଳ ନିର୍ମାୟ ନିରାକାର ରୂପ ଗୋଟି ।
ଜନ୍ମେ ଜନ୍ମେ ମୁଁ ତୁମ୍ଭର ପାଦେ ଥିବ ଖଟି ॥
ସରସ୍ୱତୀ ବାମକଳା ସର୍ବଦା ମଙ୍ଗଳା ।
ମୋତେ ଦୟା କରିବେ ସେ ଭକତବତ୍ସଳା ॥
ହେ ବୁଧଜନେ ସର୍ବଦା ଜଗନ୍ନାଥ ପାଶେ ।
ମୋର ଚିତ୍ତ ରହିଥାଉ ରଜନୀ ଦିବସେ ॥
ତୁଳସୀବୃକ୍ଷରେ ଯେହୁ କଷା ଜଗନ୍ନେଠି ।
ଶୂଦ୍ରମୁନି ଶାରଳା ଯେ ତାଙ୍କ ପାଦେ ଲୋଟି ॥
ଆହେ ବୁଧଜନମାନେ ନ ଧର ମୋ ଦୋଷ ।
ମୂର୍ଖ ଅପଣ୍ଡିତ ମୁହିଁ ମୋର ବୁଦ୍ଧି କସ ॥
ନର୍ମଦା ସରସ୍ୱତୀ ଯେ ଝଙ୍କଡ଼ନିବାସୀ ।
କଳିକାଳ କଲ୍ମଷ ଯା ଚରଣରେ ଧ୍ୱଂସି ॥
ଅକାରଣ ଜନଙ୍କୁ ସେ କାରଣ କରନ୍ତି ।
ପରଲୋକେ ମୁକ୍ତିଦେଇ ମର୍ତ୍ତ୍ୟେ ବର ଦ୍ୟନ୍ତି ॥
କୃପାଜଳନନ୍ଦିନୀ ସେ ଶାରଳା ଦେବୀ ।
ମୁହିଁ ତାହାର ନନ୍ଦନ ଶ୍ରୀ ଶାରଳା କବି ॥
ଏ ମହାଶାସ୍ତ୍ରକୁ ମୁଁ କି ହୋଇବି ବକତା ।
ସେ ଦେବୀ କହଇ ଯାହା ମୁଁ ତାହା ଲେଖନ୍ତା ॥
ପଦ୍ମଦଳଲୋଚନେ ଗୋ ଚନ୍ଦ୍ରିକାବଦନ ।
ଦୃଷ୍ଟି ଦେଇଥିବୁ ସଦା ଏ ମୋର ଲେଖନୀ ॥
ଶ୍ରୀ ଚଣ୍ଡୀ ଶାରଳା ପାଦେ କରଇ ବନ୍ଦନ ।
ମହାମାୟା ପ୍ରସନ୍ନେ ମୁଁ ହେଲି ଶୂଦ୍ରମୁନି ॥
ଅହେ ବୁଦ୍ଧ ଜନେ ମୋର ନ ଧରିବ ଦୋଷ ।
ଶ୍ରୀ ଚଣ୍ଡିକା ଶାସ୍ତ୍ରକୁ ମୁଁ କରୁଛି ପ୍ରକାଶ ॥



### ମହିଷାସୁରର ଦକ୍ଷିଣଦିଗେ ଯାତ୍ରା ଓ ଚନ୍ଦ୍ରାବତୀ ସଙ୍ଗେ ବିବାହ ।

ଏଥୁ ଅନ୍ତରେ ପରୀକ୍ଷ ନାମେ ମହାରାଜା ।
ଶୁକମୁନି ଚରଣରେ କରି ଦିବ୍ୟ ପୂଜା ॥
ବୋଲଇ ହେ ମହାମୁନି ଶୁଣ କୃପାକର ।
ଶ୍ରୀଚଣ୍ଡିକା ପୁରାଣକୁ ମୋ ଆଗେ ବିସ୍ତାର ॥
ସିଂହଳ କୁଶ ଏ ବେନି ଦ୍ୱୀପରାଜା ସାଧି ।
ପୁଣିହିଁ ମହିଷାସୁର କଲା କେଉଁ ବୁଦ୍ଧି ॥
ଏହା ସଙ୍କ୍ଷେପିଣ ମୋତେ କୁହ ତପୋନିଷ୍ଠ ।
ଅନେକ ଜନ୍ମ ଦୁଷ୍କୃତ ଯାଉ ମୋର ତୁଟ ॥
ବଦ୍ୟନ୍ତି ପୁଣ୍ୟବାଣୀ ଶୁକ ଆଦିବ୍ରହ୍ମା ।
ଶୁଣ ସାବଧାନେ କୁରୁକୁଳ ମହାତମା ॥
ମକରମାସ ଶୁକଳ ତ୍ରୟୋଦଶୀ ଦିନ ।
ବୃହସ୍ପତି ବାର ପୁଷ୍ୟା ନକ୍ଷତ୍ରବିଦ୍ୟମାନ ॥
ବିଷ୍ଟି ନାମରେ କରଣ ଶୁକନାମେ ଯୋଗ ।
ସେ ଦିନ ମହିଷା ଚଳେ ଦକ୍ଷିଣ ଯେ ଦିଗ ॥
ବୀର ତୂରି ବଜଘୋଷ ନିଶାଣାଦି ବାଜେ ।
ଦିବ୍ୟ ଅନୁକୂଳେ ସୈନ୍ୟ ଚନ୍ଦ୍ରଦ୍ୱୀପେ ବଳେ ॥
ବହୁ ଆରମ୍ଭ କରି ସେ ଚଳାଇଛି ବଳ ।
ଅଗୁଆଣି ଥାଟେ ଯାନ୍ତି ଚାମର ବେମାଳ ॥
ଡାହାଣ ପାଖ ଥାଟରେ ଚଳେ କାଳମାଳା ।
ବାମପାଶେ ଚଳେ ବଇଦୁର୍ଯ୍ୟ ମହାବଳା ॥
ରଜାର ବେନି ପାରୁଶେ ଯାନ୍ତି ଚଣ୍ଡ ମୁଣ୍ଡ ।
ଚଳନ୍ତେ ଅସୁରେ ଧ୍ୱନି ପୂରଇ ବ୍ରହ୍ମାଣ୍ଡ ॥

ଆକାଶେ ଥାଇ ଦେଖନ୍ତି ତାହା ଦେବଲୋକେ ।
ଜପ ଯାଗ ସ୍ୱର୍ଗପୁର ଶୁଦ୍ଧ ଛନ୍ତି ଥୋକେ ।
ଫିଙ୍ଗିଲ ଟପି ଲବଣ ସମୁଦ୍ର ପଶିଲେ ।
ଲଙ୍ଘିଣ ଡେଇଁଣ କ୍ରୌଞ୍ଚଦ୍ୱୀପେ ଭ୍ରମିଗଲେ ॥
କ୍ରୌଞ୍ଚଦ୍ୱୀପେ ଗୁରୁଲକ୍ଷ ଯୋଜନକୁ ଜାଣି ।
ତ୍ରିଂଶଲକ୍ଷ ଯୋଜନ ଯେ ସୁରସିନ୍ଧୁ ପାଣି ॥
ସୁରସିନ୍ଧୁ ଜିଣି କୁଶଦ୍ୱୀପରେ ପଶନ୍ତି ।
ପ୍ରଚଣ୍ଡାସୁର ତାହାଙ୍କୁ ଦେଖି ତୋଷ ଚଢ଼େ ।
ଚଣ୍ଡମୁଣ୍ଡଙ୍କ ସମ୍ପତ୍ତି ଦେଖି ସେ ନୃପତି ।
ଶିବପାଦ ନମି ଅନ୍ଧ ହୋଇଲେ ଭୂପତି ॥
ସେଠାରୁ ମହିଷାସୁର କରଇ ପ୍ରୟାଣ ।
ପ୍ରବେଶ ହୋଇଲା ଯାଇଁ ସେ ଚନ୍ଦ୍ରଦ୍ୱୀପେଣ ॥
ଅତି ବଳିଷ୍ଠ ଅଟନ୍ତି ସେ ମହାରାକ୍ଷସ ।
ଅଖାଦ୍ୟ ଦ୍ରବ୍ୟମାନ ସେ କରୁଛନ୍ତି ଗ୍ରାସ ॥
ଉଜାଡ଼ନ୍ତି ଦେଶ ଜୁର କରନ୍ତି ସମ୍ପଦ ।
ଚନ୍ଦ୍ରଦ୍ୱୀପ ମଧ୍ୟେ ପଶି କଲେ ପରମାଦ ॥
ଚନ୍ଦ୍ରଦ୍ୱୀପର ନୃପତି ଅଟେ ଚନ୍ଦ୍ରନେମି ।
ଭୁଷଣ୍ଡ କାକବଂଶୀ ସେ ଅଟେ ମହାବ୍ରହ୍ମୀ ॥
ମୈଷାସୁର ଦେଖି ଚଣ୍ଡ ମୁଣ୍ଡ ଯେ ବୋଲନ୍ତି ।
ଚନ୍ଦ୍ରନେମି ରାଜା ରାଜ୍ୟ ନ କର ଅନୀତି ॥
ପରିତ କରିବା ଅମ୍ଭେ ଏ ରାଜାର କୁଳେ ।
ତେବେ ଜିଣିବାଟି ଚନ୍ଦ୍ରଦ୍ୱୀପ ଅମ୍ଭେ ଭଲେ ॥
ଏ ବଚନ ଶୁଣି କରି ମୈଷାସୁର ରହେ ।
ସବୁ ସୈନ୍ୟ ଉଲୁକ ମନ୍ତ୍ରେ ସେ ଲୁଚୁଏ ॥
ନଗର ଉଜାଡ଼ିବାର ନ ଜାଣେ ସେ ରାଜା ।
ଶୁଚିତ ହେଲା କପିଳ ଫିହର ଅସୁଜା ॥
ଚନ୍ଦ୍ରନେମିର ଭାରିଯା ଚନ୍ଦ୍ରରେଖା ସତୀ ।
ତାହାର ଦୁହିତା ନାମ ଅଟେ ଚନ୍ଦ୍ରାବତୀ ॥
ଚନ୍ଦ୍ରାବତୀ ସମ ରାଜା ନ ପାଇଲା ବର ।
ମର୍ତ୍ତ୍ୟଭୁବନରେ ତାକୁ ନାହିଁ ପଟାନ୍ତର ॥
ଚନ୍ଦ୍ରଦ୍ୱୀପ ଅଟେ ତ୍ରିଂଶ ଯୋଜନ ଯେ ସ୍ଥଳୀ ।
ପଞ୍ଚଦଶ ଲକ୍ଷ ରାଜା ବସନ୍ତି ଉଗ୍ରଳ ॥
ଅନେକ ରାଜା ନମନ୍ତି ଅଣି ନୃପବର ।
ଦୁହିତାର ନିମନ୍ତେ ଯେ କରେ ସ୍ୱୟମ୍ବର ॥
ଚନ୍ଦ୍ରଗିରି ନାମରେ ଯେ ଏକଇ ପର୍ବତ ।
ତହିଁ ଗର୍ଭେ ଅଛି ସପ୍ତକୁଣ୍ଡ ଯେ ଅମୃତ ॥

ଯେ ଗିରି ରଖନ୍ତି ପାଞ୍ଚକୋଟିଏ ଗନ୍ଧର୍ବ ।
ତହିଁରେ ଉଦୟ ହୁଅନ୍ତି ନିତ୍ୟ ଚନ୍ଦ୍ରଦେବ ॥
ସେ ଚନ୍ଦ୍ରଦ୍ୱୀପର ପ୍ରଭୁ ଚନ୍ଦ୍ର ଯେ ଅଟନ୍ତି ।
ରାଜାମାନେ ଭକତିରେ ଚନ୍ଦ୍ରଙ୍କୁ ଖଟନ୍ତି ॥
ଏଣେ ଚନ୍ଦ୍ରନେମି ରାଜା ଦୂତଙ୍କୁ ବରଗି ।
ସ୍ୱୟମ୍ବରେ ରାଜାମାନ ବରଥଣ ବେଗି ॥
ରାଜାର ଆଜ୍ଞାରେ ତହୁଁ ଗଲେ ଦୂତପନ୍ତି ।
ଚନ୍ଦ୍ରାବତୀ ସ୍ୱୟମ୍ବର ରାଜାଙ୍କୁ ଜଣାନ୍ତି ॥
ଶୁଣି ରାଜାମାନେ ତହୁଁ ହୋଇଣ ଉଦ୍ୟତ ।
ଏକେ ଏକେ ଗମନ୍ତି ସେ ଘେନି ଦଣ୍ଡଛତ୍ର ॥
ପଦ୍ମଦ୍ୱୀପ ବୋଲି ଦ୍ୱୀପମାନଙ୍କ ଉତ୍ତମା ।
ସେ ଦେଶର ନରପତି ଅଟେ ବେଦବ୍ରହ୍ମା ॥
ଅନନ୍ତକ ବୋଲି କରି ତା ଈଶାନ କୋଣ ।
ତହିଁର ନୃପତି ନାମ ଅଟେ ବୀରସେନ ॥
ସାତକୋଟି ସୈନ୍ୟ ସେ ଘେନି ବେନରାଜା ।
ଚନ୍ଦ୍ରନେମି ପୁରେ ଚଳେ ବାଇ ଦ୍ରବ୍ୟ ବାଜା ॥
ପର୍ବ୍ବଦେଶେ ନୃପତି ଲବଙ୍ଗ ଯେ ରହେ ।
ଆଠଲକ୍ଷ ଯୋଦ୍ଧା ଘେନି ଚନ୍ଦ୍ରଦ୍ୱୀପେ ଯାଏ ॥
ଅନଙ୍ଗଦେଶ ନୃପତି ଯେ ଅନଙ୍ଗ ସେନ ।
ପ୍ରବେଶ ହୋଏ ସେ ଚନ୍ଦ୍ରଦ୍ୱୀପେ ଘେନି ସୈନ୍ୟ ॥
ମଳୟଦେଶ ନୃପତି ଯେ ମଳୟସେନ ।
ସ୍ୱୟମ୍ବରେ ଯାଏ ଘେନି ସାତକୋଟି ସୈନ୍ୟ ॥
କପାଳଦେଶର ରାଜା ତ୍ରିଶ୍ରମଛସେନ ।
ସମଦଣ୍ଡ ଘେନି ପରବେଶ ସେ ରାଜନ ॥
ଯକ୍ଷବନ୍ତ ଦେଶ ରାଜା ଲକ୍ଷ୍ମୀପାଦ ବୀର ।
ସେ ଅସି ପ୍ରବେଶ ହେଲା ଚନ୍ଦ୍ରନେମିପୁର ॥
ଅବନ୍ତୀ ନଗର ଜନ୍ତୁପାକ୍ଷ ଯେ ନୃପତି ।
ବଢ଼ାଇ ସମ୍ଭବେ ସେହୁ ଗମଇ ତଡ଼ିତ ॥
ନୀଳମାଧବ ବୋଲିଣ ଚଣ୍ଡଦ୍ୱୀପ ରାଜା ।
ସାତସସ୍ର ବଳ ଘେନି ଆସେ ମହାରାଜା ॥
ବଜ୍ରପାଳ ଦେଶ ରାଜା ଅଟେ ସଉଦାସ ।
ତିନିଲକ୍ଷ ଯୋଦ୍ଧାରେ ସେ ହୋଇଲା ପ୍ରବେଶ ॥
ଚନ୍ଦ୍ରରେଖା ବୋଲି ଚନ୍ଦ୍ରନେମିର ଭାରିଯା ।
ବିଶାଳାକ୍ଷ ଭକ୍ତିବୀର୍ଯ୍ୟ ତାହାର ତନୁଜା ॥
ପୁଣି ଯାଇ ଆଜ୍ଞାଦେଲା ସେହୁ ଚନ୍ଦ୍ରନେମି ।
ଅନେକ ନୃପତି ଆସୁଛନ୍ତି ସୈନ୍ୟ ଘେନି ॥

ସମ୍ମାନ ଗୌରବ କରି କରୁଥିବ ପୂଜା ।
ଯେ ଯେମନ୍ତକୁ ଭଜନ୍ତି ଅଟନ୍ତି ସେ ରାଜା ॥
ମୃଦଙ୍ଗ ଦେଶର ରାଜା ଅଟନ୍ତି କର୍ଣ୍ଣମାଳ ।
ପାଞ୍ଚସହସ୍ର ଯୋଦ୍ଧା ସେନ ବଳେ ମହାବଳୀ ॥
ଶମନ ଦେଶର ରାଜା ବିରାୟୁଧ ବୀର ।
କୋଟିଯୋଦ୍ଧା ସେନ ଅସେ ବ୍ୟାଘ୍ର ବାହାନର ॥
ଶୂରସେନ ଦେଶର ଯେ ଇନ୍ଦ୍ର ନରପତି ।
ସେ ଅଇଲ ତୁରଲ୍ଲ ସେନ ପାଞ୍ଚଲକ୍ଷ ରଥୀ ॥
ଜଳଧର ଦେଶ ରାଜା ଯେ ଜଳତରଙ୍ଗ ।
ବନ୍ଧୁବଳେ ଚଳଇ ସେ ରୂପରେ ଅନଙ୍ଗ ॥
ଅନେକ ବଳ ମିଳନ୍ତେ ମୁଖରବ ଧ୍ୱନି ।
ଶୁଭବାରେ ଉଚ୍ଛୁଳଇ ଏହି ପୁର ତିନି ॥
ନରାୟୁଧ ଦେଶ ରାଜା ପ୍ରଳମ୍ବା ଯେ ରାଜ୍ୟେ ।
ସମଦଣ୍ଡ ସେନ ସେହି ସମ୍ମୁଖରେ ଯାଏ ॥
ସନ୍ଧାନ ଦେଶର ରାଜା ନୃପତି କିରାତ ।
ତାହାର କୁଳରେ ଯୋଦ୍ଧା ତିନି ଅଯୁବ୍ରତ ॥
ମାତଙ୍ଗ ଦେଶର ରାଜା ଅଟେ ନିଧିପତି ।
ବେନି କୋଟି ଯୋଦ୍ଧା ସେନ ବଳେ ମହାରଥୀ ॥
ଦୁଃସହ ଗଡ଼ ନାମରେ ଅଟେ ଏକଦେଶ ।
କାମକ୍ରୋଧ ନାମେ ସେହି ନୃପତି କୁଳେଶ ॥
କୋଟିଏ ସଇନ୍ୟ ସେନ ଚଳଇ ଅରମ୍ଭେ ।
ବୀରତୂରି ବଜାଇଣ ଯାଏ ମହାଦମ୍ଭେ ॥
ପରଶର ଦେଶର ଯେ ଶତଶିର ରାଜ୍ୟେ ।
ସମଦଣ୍ଡ ସେନ ସେହି ସ୍ୱୟମ୍ବରେ ଯାଏ ॥
ଅଳାୟୁଧ ଦେଶ ରାଜା ନାମ ବଜ୍ରମାଳ ।
ସାଙ୍ଗରେ ସଇନ୍ୟ ସେନ ସ୍ୱୟମ୍ବରେ ଚଳ ॥
ଅରୁଷ୍ଟ ଦେଶର ରାଜା ଅଟେ ଭୈରବୀର ।
ସମଦଣ୍ଡ ସେନଣ ସେ ଚଳେ ମହାବୀର ॥
ଶଙ୍ଖମଣ୍ଡଳ ନୃପତି ନାମ ଶତସିଂହ ।
ପନ୍ଦର ସହସ୍ର ଯୋଦ୍ଧା ସେନ ଅସେ ବେଗ ॥
ମତଙ୍ଗଦେଶର ରାଜା ଅଟେ ବୀରକେଶୀ ।
ସମଦଣ୍ଡ ସେନଣ ସେ ସ୍ୱୟମ୍ବରେ ଅସି ॥
କାମ୍ୟକ ଦେଶର ରାଜା କାମ୍ୟକ ଯେ ଦେବ ।
ପାଞ୍ଚଲକ୍ଷ ସୈନ୍ୟ ତାର ସଙ୍ଗେ ଚଳେ ସବ ॥
ଆଦିତ୍ୟ ଦେଶର ରାଜା ପଦ୍ମସେନରାଜ୍ୟେ ।
ସମଦଣ୍ଡ ସେନ ସେହି ବୀରଭାବେ ଯାଏ ॥
କୁମୁଦଦେଶର ରାଜା ନାମ ସମୁଦ୍ରରାଜ୍ୟେ ।
ସ୍ୱୟମ୍ବର ସ୍ଥାନେ ଯାଇ ପ୍ରବେଶ ସେ ହୁଏ ॥
କୋମଳାଙ୍ଗ ଦେଶ ରାଜା ସେ ବସନ୍ତସେନ ।
ଶିଖରେଶ୍ୱର ବୋଲିଣ ଏକ ନୃପରାଣ ॥
ଶ୍ୱେତବର୍ଣ୍ଣ ତାଙ୍କର ଯେ ସମସ୍ତ ସଇନ ।
ସମ୍ମୁଖେ ଅଇଲେ ନିଜବଳ ସଙ୍ଗେ ସେନ ॥
ଦୁର୍ଜ୍ଜନ ଦେଶର ଅଟେ ନୃପତି ସଞ୍ଜାତି ।
ସମଦଣ୍ଡ ସେନଣ ସେ ବଜସ୍ତୁ ତତ୍ପତି ॥
ବରବର୍ଣ୍ଣ ଦେଶର ଯେ ନୃପତି ବରିଷ୍ଠ ।
ବଳଦ ବାହନେ ସେହି ଯାଏ ମନେ ପାଇ ॥
ସୁରତ ଦେଶର ଅଟେ ନୃପ କର୍ଣ୍ଣମାଳ ।
ପାଞ୍ଚସହସ୍ର ଯୋଦ୍ଧା ସେନ ସ୍ୱୟମ୍ବରେ ମିଳ ॥
ଗମନକ ଦେଶ ରାଜା ମୁକୁନ୍ଦ ବୋଲିଣ ।
ବେନିକୋଟି ଯୋଦ୍ଧାସେନ ପ୍ରବେଶ ସେ ପୁଣ ॥
କଳକଳାଦେଶ ରାଜା କାକୋଳା ଯେ ବଳୀ ।
ପନ୍ଦର ସହସ୍ର ସୈନ୍ୟ ସେନ ସେହି ମିଳ ॥
ପୁରୁରବ ଦେଶ ରାଜା ଯେ କୁମୁଦସେନ ।
ଦଶସହସ୍ର ଯୋଦ୍ଧା ସେନ ଅସେ ସେ ବହନ ॥
ଚଣ୍ଡାନ୍ତକ ଦେଶ ଚଣ୍ଡବର୍ତ୍ତୀ ମହାରାଜେ ।
ନବସହସ୍ର ଯୋଦ୍ଧା କୁଳେ ପ୍ରବେଶ ସେ ହୋଏ ॥
କଶଳକ ଦେଶ ରାଜା ହିରଣ୍ୟକପତି ।
ସେ ଅସଇ ତୁରଙ୍ଗ ସେନ ସୈନ୍ୟ ପାଞ୍ଚଲକ୍ଷ ॥
ଗୃଚର ଦେଶର ନୃପ ନାମ କଳାରଣ ।
ସମଦଣ୍ଡ ସେନ ସ୍ୱୟମ୍ବରେ ସେ ପ୍ରବେଶ ॥
ଫେହଲ ଦେଶର ରାଜା କୃତାନ୍ତନହମି ।
ପାଞ୍ଚସହସ୍ର ଯୋଦ୍ଧା ସେନ ଅଇଲା ସେ ଭୂମି ॥
ନୀଳାମ୍ବର ଦେଶ ରାଜା ନୀଳାମ୍ବର କହି ।
ସତୁରି ସହସ୍ର ଯୋଦ୍ଧା ସେନ ସେ ଅସଇ ॥
ନଗ୍ର ଦେଶ ପାଟଣାର ସମସ୍ତ ଭୂପତି ।
ଚନ୍ଦ୍ରଦ୍ୱୀପରର ସେ ଅସି ପ୍ରବେଶ ହୁଅନ୍ତି ॥
ଜୟ ଜୟ ମାତଗୋ କାତ୍ୟାୟନୀ ଶଶିମୁଖି ।
ଅନର୍ଘ୍ୟାପ ଲେଖନକୁ ତୁହି ମୋତେ ସାକ୍ଷୀ ॥
ଯେବଣ ଚରିତ ବର୍ଣ୍ଣ ପୁରାଣେ ଉକତି ।
ଚତୁର୍ବେଦ ବ୍ରହ୍ମା ଯାହା କରନ୍ତି ଉତ୍ପତ୍ତି ॥
ଚତୁର୍ଦ୍ଦଶ ପୁରାଣରୁ ଯାହା ଅଛି ବାଛି ।
ମୁଁ ତାହା ମାନଙ୍କ ମାନ ହୋଇଣ କହୁଛି

ମୂର୍ଖଲୋକେ ବୋଲିବେ ଯେ ଗୋଳିଆ ବହୁତ ।
ଏଥିକୁ କହିଲି ହରି ନୃପତି ମାନନ୍ତ ॥
ଥୋକାଏ କହିଲି ନଈ [illegible]ଲି ଗଣି ଯଥା ।
ଜମ୍ବୁଦ୍ୱୀପେ ଜାତ ହୋଇ ଚନ୍ଦ୍ରନେମି କଥା ॥
ବ୍ୟାସର ପ୍ରସଙ୍ଗେ ମୁହିଁ ଶୁଣାଇଲି ବକତା ।
କହିବ ଶ୍ରୀ ଭାଗବତ ପୁରାଣ ସଂହିତା ।
ଅକଳିତ ବାରିଧି ଏ ଜାଣିବାକୁ ନୋହି ।
ଲେଖି ଶେଷ କେ କରିବ ଅସୀମିତ ଏହି ॥
ପାରିଦଣ୍ଡ ସେନ ସଙ୍ଗେ କୋଟି ପାଞ୍ଚଲକ୍ଷ ।
ଏବେ ନୃପତି ମିଳିଲେ ସେ ସ୍ଥାନେ ପ୍ରତ୍ୟକ୍ଷ ॥
ରକ୍ତବୀର୍ଯ୍ୟ ବହ୍ନିଲାକ୍ଷ ଏହି ବେନି ବାଳ ।
ଅନୁରୂପେ ପୂଜା କଲେ ସର୍ବ ମହୀପାଳ ॥
ହେ ପଞ୍ଚକ୍ଷ ଚନ୍ଦ୍ରଭାଗା ବୋଲି ନଦୀଟିଏ ।
ଅନନ୍ତଶାୟୀ ବିଷ୍ଣୁର ପାଦରୁ ସେ ବହେ ॥
ଚନ୍ଦ୍ରକ୍ଷୟ ହେଲା ପ୍ରଜାପତିଙ୍କର ଶାପେ ।
ଦିନ ଦିନ କ୍ଷୟ ହେଲା ଶ୍ୱଶୁରଙ୍କ କୋପେ ॥
ତୁଳ ଶୁକ୍ଳପୌର୍ଣ୍ଣମୀରେ ଚନ୍ଦ୍ରେ ଶାପ ହେଲା ।
କୃଷ୍ଣ ଚତୁର୍ଦ୍ଦଶୀଙ୍କ ସେ ସୂତାଏ ରହିଲା ॥
ସେହି ଚନ୍ଦ୍ରଦ୍ୱୀପ ଚନ୍ଦ୍ରଭାଗା ନଦୀ ଗର୍ଭେ ।
ତହିଁ ଯାଇଁ ବୁଡ଼ିଣ ସେ ରହିଲାକ ଜବେ ॥
ସେ ନଦୀ ଭିତରେ ଶଶଧର ହେଲା ବାସ ।
ସେହି କ୍ଷୟକାଯ୍ୟ ଗୋଟି ନ ଗଲା ବିନାଶ ॥
ଅମାବାସ୍ୟା ଅନ୍ତରେ ଯେ ପ୍ରତିପଦା ଦିନ ।
ଦ୍ୱିତୀୟା ତିଥିରେ ଶୂନ୍ୟେ ଉଦେ ହୋଏ ଜହ୍ନ ॥
ସ୍ୱଳ୍ପ ବେନି ପଡ଼ଯାଏ ଦିଶଇ ତା ଜ୍ୟୋତି ।
ଦିନୁ ଦିନ ଶରୀର ତା ବଢ଼ଇ ଯେ ପୂର୍ତ୍ତି ॥
ପୌର୍ଣ୍ଣମୀରେ ଚନ୍ଦ୍ର ଷୋଳ କଳାରେ ଉଦିତ ।
ଏହି ଯେଣୁ ଚନ୍ଦ୍ରଭାଗା ନଦୀ ନାମ ଖ୍ୟାତ ॥
ସେହି ନଦୀତଟରେ ଚନ୍ଦ୍ରନେମି ରାଜଧାନୀ ।
ତହିଁ ବୃନ୍ଦ ହୋଇଛନ୍ତି ସର୍ବ ରାଜଶ୍ରେଣୀ ॥
ରାଜାମାନେ ଅସ୍ଥାନର ପରେ ଛନ୍ତି ରହି ।
ପାଦ୍ୟ ଅର୍ଘ୍ୟ ଯେଣୁ ଚନ୍ଦ୍ରନେମି ଯେ ଅସଇ ॥
ଉଭା ହୋଇ ବୋଲଇ ସେ ବିନୟ ଭାବରେ ।
କଥାଏକ ମୋର ଅଛି କହିବ ଏଠାରେ ॥
ଜମ୍ବୁଦ୍ୱୀପକୁ ମୁଁ ଦିଗବିଜେ କରି ଗଲି ।
ନଳବ୍ରତ ନୃପତିର ସ୍ୱୟମ୍ବରେ ହେଲି ॥

ତାହାର ଗୃହରେ ଜାତ ଏକଇ ଅବଳା ।
ସେ କନ୍ୟାର ନାମ ଦେଇଥିଲା ଶକୁନ୍ତଳା ॥
ତାହାର ନିମନ୍ତେ ସ୍ୱୟମ୍ବର କଲା ରାଜେ ।
ସମସ୍ତ ଦେଶ ନୃପତି ସମ୍ଭବରେ ଅଛେ ॥
ମକର ମାସ ଶୁକ୍ଳ ପକ୍ଷ ତ୍ରୟୋଦଶୀ ।
ସୋମବାରେ ପୁଷ୍ୟା ନାମେ ବୃଷ ଭୋଗ ଆସି ॥
ବାଣିଜ୍ୟ ନାମେ କରଣ ପ୍ରୀତି ନାମେ ଯୋଗ ।
ଯେ ଦିନ ମିଳିଲି ଯାଇଁ ତାର ପୁର ଭାଗ ॥
ଗହଳ ଦେଖି ମୁଁ ତହିଁ ରୁହାଇଲି ରଥ ।
ସବୁ ରାଜାମାନେ ଦେଖି ହେଲେ ସ୍ତମ୍ଭୀଭୂତ ॥
ମୋତେ ଦେଖିଣ ସନ୍ତୋଷ ହେଲା ଶକୁନ୍ତଳା ।
ମୋର କଣ୍ଠେ ଲମ୍ବାଇଲା ଆଣି ରତ୍ନମାଳା ॥
ହରଣ କରି ବାଳାକୁ ଆଣିଲି ଯେ ମୁହିଁ ।
ଇଚ୍ଛାଏ ବର ବରିଲା ଯେଣୁ ଚନ୍ଦ୍ରମୁହୀଁ ॥
ତାକୁ ଆଣି ଏଠାରେ ମୁହିଁ କରଇ ଗୃହବାସ ।
ତୁମ୍ଭର ଆଗରେ ତାହା କଲଇଁ ପ୍ରକାଶ ॥
ଅତିସ୍ନେହେ ଚନ୍ଦ୍ରରେଖା ନାମ ତାର ଦେଲି ।
ତାକୁ ଯେଣୁ ସମସ୍ତେ ମୁଁ ଭୋଗ ବିଳସିଲି ॥
ତାହା ଠାରୁ ଜନମିଲା ଏକଇ ଦୁହିତା ।
ତୁମ୍ଭ ଆଗେ ସ୍ୱରୂପତ କହିଲି ଏ କଥା ॥
ତେଣୁ କରି ରାଜାମାନ ବରୁ ଆଣି ବେଗେ ।
ସ୍ୱୟମ୍ବର କରାଇଲି ଅତ୍ୟନ୍ତ ସରାଗେ ॥
ମୋହର ଦୁହିତା ନାମ ଅଟେ ଚନ୍ଦ୍ରାବତୀ ।
ତ୍ରୈଲୋକ୍ୟମୋହିନୀ ସେହି ନବୀନା ଯୁବତୀ ॥
କାହାକୁ କହିବ ଅବା ଏଥେଁ ଅସ୍ତି ନାସ୍ତି ।
ଏଯନକ ବେଭରତ ନୁହଇ ଯୁକତି ॥
ଏକା ବ୍ରତ ମୋହର ଯେ ଗୋଟିଏ ଅଛଇ ।
ରାଜାଏ ବୋଇଲେ ତାହା ନ କହୁ କିପାଇଁ ॥
ଚନ୍ଦ୍ରଦ୍ୱୀପର ଈଶାନ୍ୟେ ଛନ୍ତି ଚନ୍ଦ୍ରଦେବ ।
ତହିଁର ପାଶେ ପାତିଛି ନେଇ ମଣିସ୍ତମ୍ଭ ॥
ତହିଁ ନବଦ୍ୱୀପ ସପ୍ତସାଗର ରହିଛି ।
ଅଷ୍ଟକଳା ମଧ୍ୟେ ମଣିସ୍ତମ୍ଭକୁ ସର୍ଜିଛି ॥
ସେ ସ୍ତମ୍ଭେ ଜଡ଼ିତ ହୋଇ ଅଛି ନାନାରତ୍ନ ।
ବିସ୍ତାର ଅଟଇ ତାର ପଞ୍ଚାଶ ଯୋଜନ ॥
ଉତ୍ସର୍ଗ ଅଟଇ ଲକ୍ଷେ ଯୋଜନ ପ୍ରମାଣ ।
ସେ ମଣି ସ୍ତମ୍ଭ ଉପରେ ବସଇ ବରୁଣ ॥

ତେଜ ପ୍ରକାଶଇ ତାର ସହସ୍ରେ କିରଣ ।
ଜଗତ ଯାକେ ସେ ତେଜ ଅଛି ପରିପୂର୍ଣ୍ଣ ॥
ଏ ମଣି ସ୍ତମ୍ଭକୁ ଯେହ୍ନେ ବିନ୍ଧିବଟି ଶର ।
ପଶ୍ଚିମରେ ପଡ ପୂର୍ବେ ହୋଇବ ବାହାର ॥
ଏରୂପରେ ଯେ ଫୁଟାଇ ପାରିବ ସ୍ତମ୍ଭକୁ ।
ମୋର ଦୁହିତାକୁ ଦେବି ନିଶ୍ଚୟ ତାହାକୁ ॥
ଏସନ ପ୍ରକାରେ ଅଟେ ମୋର ସତ୍ୟବ୍ରତ ।
ସ୍ୱୟମ୍ବର କରିବି ମୁଁ ଦିବସ ସପତ ॥
ସାତଦିନ ପରିଯନ୍ତେ ସହିବ ଅଡ଼ୋଳ ।
ଯାହା ହେଉ ପଛକେ ମୁଁ ଥିବଇଁ ସମ୍ଭାଳ ॥
କୋଟିଏ ପାଞ୍ଚଲକ୍ଷ ଯେ ନୃପତିମାନଙ୍କୁ ।
ନିତି ମନ୍ତ୍ରଣାହ୍ନ ଦିଅଇ ଯେତେକ ସୈନ୍ୟଙ୍କୁ ॥
ଗଜ ଅଶ୍ୱ ବାହନ ଯେ ନାହିଁ ସେହି ଦ୍ୱୀପେ ।
ବଳଦ ବାହନେ ଚଳେ ଯାନ୍ତି ସର୍ବ ନୃପେ ॥
କାହାର କୋଟିଏ ପଦ୍ମ ବଳଦ ଅଟଇ ।
ପବନୁଁ ବେଗେ ଚଳନ୍ତି ଦେହ ନ ହଲଇ ॥
ବଳଦ ବାହନରେ ଯେ ସର୍ବ ମହୀପତି ।
ମଣିସ୍ତମ୍ଭ ସନ୍ନିଧିରେ ବିଜୟେ କରନ୍ତି ॥
ସହସ୍ରେ ଯୋଜନ ମାତ୍ର ଚଳନ୍ତି ସଇନ୍ୟ ।
ଚହଲେ ସିନ୍ଧୁ ଗର୍ଜନ ପ୍ରାୟେ ଶୁଭେ ଧ୍ୱନି ॥
ସବୁରି ହୃଦେ ବିରାଜେ ଚନ୍ଦ୍ରକାନ୍ତ ମଣି ।
ନଶାକାଳେ ବିରାଜେ କି ଶତ ଦିନମଣି ॥
ରାଜାଗଣ ବେଢ଼ିଲେକ ଯାଇଁ ମଣିସ୍ତମ୍ଭ ।
ଦୂରୁ ଦେଖି ଭାଜିଗଲା ସବୁଙ୍କର ଦମ୍ଭ ।
ଦିଲୀପ ରାଜା ବୋଇଲା ଶୁଣ ଚନ୍ଦ୍ରନେମି ।
ବଢ଼ାଇ ଦୁର୍ଲଭ ଅମ୍ଭେ ଦେଖିଲୁ ଏ ଭୂମି ॥
ଇହ ଲୋକେ ବିନ୍ଧିବାକୁ ଏହା ନାହିଁ କ୍ଷମ ।
ବିନ୍ଧିବ ବା ଯମଦଗ୍ନି ପୁତ୍ର ପର୍ଶୁରାମ ॥
ସବୁ ରାଜା ଆଶ୍ଚର୍ଯ୍ୟ ଯେ ହେଲୁ ଏହା ଚାହିଁ ।
ଏହା ବିନ୍ଧିବାକୁ ଶକ୍ତି କାହାରତ ନାହିଁ ॥
ପଞ୍ଚାଶ ଯୋଜନ ଅଟେ ଏ ସ୍ତମ୍ଭର ସ୍ଥଳୀ ।
ନାରାଚର ଘାତେ କାହୁଁ ଯିବ ଏହ୍ନେ ଗଳି ॥
ଆନ ପଣ କିଛି ଥିଲେ କହ ତା ବିଚାର ।
ଏଡ଼େ ଏଡ଼େ ରାଜା ହୋଇ ଲାଜେ ଗଲୁ ସର ॥
ଚନ୍ଦ୍ରନେମି ବୋଇଲା ଯେ ନାହିଁ ମୋର ଆନ ।
ଯେ ଏହା ବିନ୍ଧିବ କନ୍ୟା କରିବି ପ୍ରଦାନ

ଦିଲୀପ ରାଜା ବୋଇଲା ଶୁଣ ମହାମତେ ।
ଦୁହିତାକୁ ଆଣ ତୋର ସଭାର ଅଗ୍ରତେ ॥
କେମନ୍ତ ରୂପ ତାହାର ଦେଖିବା କୁମାରୀ ।
କନ୍ୟାକୁ ଦେଖିଲେ ସିନା ଲକ୍ଷ ବିନ୍ଧିପାରି ।
ଶୁଣିଣ ସାନନ୍ଦ ହେଲା ସେ ଚନ୍ଦ୍ରନେମି ॥
ବିକ୍ରମାର୍ଯ୍ୟ ବିଡ଼ାଳାକ୍ଷେ ଡାକି ଏହା ଭଣି ॥
ବାବୁରେ ଚନ୍ଦ୍ରାବତୀକୁ ଆଣ ଏ ସ୍ଥାନକୁ ।
ନବେଶିପି ଦେଖାଅ ଏହି ନୃପତିମାନଙ୍କୁ ॥
ପିତାର ଅଜ୍ଞା ପାଇଣ ଗଲା ବିକ୍ରମାର୍ଯ୍ୟ ।
ସୁକେଶୀକି ବୋଇଲକ କନ୍ୟା କର ସଜ ॥
ଆଜ୍ଞା ପାଇ ଧାତ୍ରୀକାରେ ଗଲା ମୁଧୁସ୍ମଳା ।
କନ୍ୟାକୁ ବେଶ ଭୂଷଣ କରିଲେ ସୋଇଲା ॥
ଅନେକ ଆଭରଣ ତା ଶରୀରେ ମଣ୍ଡନ୍ତି ।
ସହସ୍ରେକ ଯୁବତୀ ଯେ ଚାମର ଢାଳନ୍ତି ॥
ଉଦଣ୍ଡ ଯେ ପାଟଛତ୍ର ପାଶେ ଉଡ଼ାବନ୍ତି ।
କାହାଳ ଦୁନ୍ଦୁଭି ତାଳ ଘୁମୁରେ ବଜାନ୍ତି ॥
ଗଣିକାଗଣ ମିଳିଣ ଆଳାପ କରନ୍ତି ।
ଅଲଟ ଚାମର ଯେନ ତରୁଣୀ ଅଛନ୍ତି ॥
ହାନ୍ଦୋଳାରେ କନ୍ୟାକୁ ସେ ଧୀରେ ଧୀରେ ଆଣି ।
ସଭାତଳେ ପରିବେଶ କଲେ ତତକ୍ଷଣି ॥
ହାନ୍ଦୋଳାରୁ ବେଗେ ଓହ୍ଲାଇଲେ ସୁକୁମାରୀ ।
ନୃପତିମାନଙ୍କ ମଧ୍ୟେ ନେଇ ଉଭା କରି ॥
ରାଜାମାନେ ସେ କନ୍ୟାର ରୂପକୁ ଚାହିଁଲେ ।
ଚାହିଁଲକ୍ଷଣି ଚକ୍ଷୁରୁ ପଲକ ତେଜିଲେ ॥
ବିଚାରନ୍ତି ଏ କନ୍ୟାତ ରମା ଉମା ଜାଣି ।
କିପାଇଁ ଆଇଲୁ ଅମ୍ଭେ ସଭାକୁ ନ ଜାଣି ॥
ଦିନ ନ ଅଣ୍ଟିବ ଏହା ରୂପ ଭାବିବାକୁ ।
ଧନ୍ୟ ବୋଲିବା ବିବାହ ହେବ ଯେ ଏହାକୁ ॥
ଏହା ମୁଖ ଚନ୍ଦ୍ରକୁ କି ଦେବା ଘଟାନ୍ତର ।
ଦକ୍ଷଶାପରୁ ମଳିନ ଅଟେ ଶଶଧର ॥
ରତନାର ପଟାନ୍ତର ସ୍ୱ ଦେହକୁ ନୋହେ ।
ଏହାର ତେଜେ ମଳିନ ଦିଶିବ ନିଶ୍ଚୟେ ॥
କେଉଁ ଗୁଣେ ଅମ୍ଭେମାନେ ହେବା ଯୋଗ୍ୟ ସର ।
ଆଜଯାଏ ଦେଖିନାହୁଁ ଏମନ୍ତ ସୁନ୍ଦରୀ ॥
ଆମ୍ଭେ ସକଳେ ହୋଇଲୁଁ ନିଷ୍ଟେ ଚାରଗଣ ।
ଏ କନ୍ୟା ଅମ୍ଭଙ୍କୁ ଅଟେ ଚନ୍ଦ୍ରର ସମାନ ॥

ନିଷଧ ଦେଶ ରାଜା ନରେନ୍ଦ୍ର ନାମେ ।
ସେ ବୋଇଲା ଶୁଣ ସର୍ବେ କହୁଛି କଥାଏ ॥
ଏ କନ୍ୟା ରୂପ ପ୍ରଶଂସୁ ଅଛ ତୁମ୍ଭେମାନେ ।
ସୁନ୍ଦରୀ ବୋଲିଣ ବୋଲୁଅଛ ସର୍ବଜନେ ॥
ତାର ବର ହେବ ଯେହ୍ନେ ଏ ଲକ୍ଷ ବିନ୍ଧିବ ।
ସେ ନରେ ଏ କନ୍ୟା ନେବ ଅନ୍ୟଥା ନ ହେବ ॥
କନ୍ୟାର ରୂପ କିପାଇଁ ନିରେପିଣ ଦେଖ ।
ଯେଅଛ ବଳବନ୍ତ ଏଥେଁ ବିନ୍ଧ କନା ଲକ୍ଷ ॥
ଏମନ୍ତ ଶୁଣିଣ ବଳବନ୍ତ ରାଜାମାନେ ।
ଧଇଲେ ସେ ଧନୁଶର ଉତ୍ସାହିତ ମନେ ॥
ଚନ୍ଦ୍ରପୁରର ଯେ ନୀଳମାଧବ ରାଜନ ।
ଧନୁ ଧରି ଲକ୍ଷ ପାଶେ କରିଲା ଗମନ ॥
ଆକର୍ଷିଣ ଧାଇଁ ସେହୁ ବିନ୍ଧିଲାକ ଶର ।
ଗଲାଗଲା ବେନିତାଳ ଯାଏ ବାଣ ତାର ॥
କପାଳ ଦେଶର ରାଜା ହେମନ୍ତ ନୃପତି ।
କୋଦଣ୍ଡେ ଶର ପୂରଇ ବିନ୍ଧିଲା ସେ ଯାତି ॥
ତାଳେକ ଗଲାରେ ତାର ପଶିଗଲା ଶର ।
ଅଦୃଶ୍ୟ ହୋଇଲା ଶର ନୋହିଲା ତାହାର ॥
ପ୍ରତିଜ୍ଞା ସାମର୍ଥ ଯେତେ ଯେତେ ରାଜାମାନେ ।
ବିନ୍ଧନ୍ତି ନାରାଚ ସେସେ ମିଳିଣ ବହନେ ॥
ଜଇନ୍ତୀ ନଗର ରାଜା ଉଗ୍ରପାଦ ବୋଲି ।
କମାଣ ଧରିଣ ଶର ବିନ୍ଧେ ମହାବଳୀ ॥
ତିନିତାଳ ପର୍ଯ୍ୟନ୍ତେ ସେ ଭିତରେ ପଶିଲା ।
ଚନ୍ଦ୍ରବର୍ଣ୍ଣ ନାରାଚର କିଛି ନ ଦିଶିଲା ॥
ବରପାଟ୍ଟନ ଦେଶର ନୃପ ସତ୍ୟଦାସେ ।
ଅଜଗବ ଧନୁ ଧରି ଶରି ସେହୁ ପେଷେ ॥
ସାତତାଳ ପର୍ଯ୍ୟନ୍ତେ ଶର ଗଲା ଗଳି ।
ଏରୂପେ ବିନ୍ଧନ୍ତି ନୃପମାନେ ଭଲି ଭଲି ॥
କାମ୍ୟକ ନଗର ରାଜା ଯେ କାମ୍ୟକ ଦେବ ।
ନାରାଚ ପୂରଇ ତ୍ରମ୍ଭେ ବିନ୍ଧିଲା ସେ ଜବ ॥
ତାଳେକ ମାତ୍ର ଶର ତା ପଶିଲା ଭିତରେ ।
ହସିଲେ ରାଜାଏ କର ଦେଇଣ ନାସରେ ॥
କୋଳଙ୍ଗ ଦେଶର ରାଜା ସରସ ବସନ୍ତ ।
ମାନଚକ୍ରବର୍ତ୍ତୀ ସେହୁ ମହାବଳବନ୍ତ ॥
ଅଜଗବ ନାମେ ଧନୁ ଧରେ ତାର କରେ ।
ପୃଥ୍ୱୀ ଦେଖା କର୍ମି ହଠେ ଯାଇ ପାଦହରେ ॥

ନେତରେକାର କରଣ ସେ ନାରାଚ ବିନ୍ଧିଲା ।
ଷୋଡ଼ଶ ଯୋଜନ ଯାଏ ଭୂମିରେ ପଶିଲା ॥
ଧନ୍ୟ ଧନ୍ୟ କଲେ ତାକୁ ସମସ୍ତ ରାଜାଏ ।
ମଣିସ୍ତମ୍ଭ ନ ଫୁଟେ ଯେ କାର ଶରଘାଏ ॥
ଏହି କାଳରେ ମହିଷା ଅସୁର ଆସଇ ।
ଧାତାର ମନେ ଗୋପ୍ୟାନ କରିଅଛି ଦେଖି ॥
କନ୍ୟାରୂପ ଦେଖିଲା ସେ ହୋଇ ଶୂନ୍ୟଚାରୀ ।
ଧାତକାରେ ସ୍ୱୟମ୍ବର ସ୍ଥାନେ ମିଳେ ଆସି ॥
ଯହୁଁ ଶୁଭିଲା ଅସୁରମାନଙ୍କ ଶବଦ ।
ରାଜାଗଣମାନେ ଶୁଣି ହୋଇଲେ ସ୍ତବଧ ॥
କେଶ ପିଙ୍ଗଳ କାହାର ଅଟେ ଊର୍ଦ୍ଧ୍ୱ ବାହୁ ।
ନିଶାକରକୁ ଦେଖିଣ ଘୋଟେ ଯେହ୍ନେ ରାହୁ ॥
ଅଦଭୁତେ ଆଶ୍ଚର୍ଯ୍ୟ ଯେ ଦୈତ୍ୟବଳ ଦେଖି ।
ଭୟେ ରାଜା ପଳାଇଲେ ସଭାକୁ ଉପେକ୍ଷି ॥
ସଭାର ମଧ୍ୟେ ବିଜୟେ କରିଲା ମହିଷା ।
ପଳାଇଲେ ରାଜାମାନେ ନ ପାଇ ଭରସା ॥
ମୈଷାକୁ ଦେଖି ଭୂଜନ୍ତେ ଚନ୍ଦ୍ରନେମି ଥାଟ ।
ବହ ବୋଲି ବକ୍ରଚାର୍ଯ୍ୟ କରଇ ମୁରାଟ ॥
ମହିଷାସୁର ବୋଇଲା ଶୁଣ ଚନ୍ଦ୍ରନେମି ।
ଦେଖୁଥିଲି ସ୍ୱୟମ୍ବର ହୋଇ ଶୂନ୍ୟଗାମୀ ॥
ମୁହିଁ ତୋର ଏ ବ୍ରତକୁ ପୂରାଇବ ଯତ୍ନେ ।
ଲକ୍ଷ ବିନ୍ଧିଲେ ଦେବୁ ତୋର ଦୁହିତାଏ ॥
ଚନ୍ଦ୍ରନେମି ବୋଇଲା ଯେ ଶୁ ମହାରାଜନ ।
ହରେ ତୋତେ ବର ଦେଲା ଚତୁର ଆନନ ॥
ଏ ମହୀ ମଣ୍ଡଳେ ଏକା ବୀର ଅଟୁ ତୁହି ।
ଲକ୍ଷ ବିନ୍ଧିଲେ ତୋତେ କି କରିବି ମୁଁ ନାହିଁ ॥
ରାଜାର ବଚନ ଶୁଣି ମହିଷା ଅସୁର ।
ଲୌହସାର ଧନୁ ଏକ ଧଇଲା ସେ କର ॥
ଆକର୍ଣ୍ଣ ଯାଏ ଟଙ୍କାରି ବିନ୍ଧିଲାକ ଶର ।
ବ୍ରହ୍ମ ରୁଦ୍ର କଉଶିକ ବଜ୍ର ଯେ ଅବର ॥
ଏକାସାନ୍ତକେ ସେ ଶୂର ନାରାଚ ପୂରାଇ ।
ଚଣ୍ଡ ମୁଣ୍ଡ ବେନି ସଙ୍ଗେ ସାହା ଛନ୍ତି ହୋଇ ॥
ବିକ୍ରମ ଚିତ କରିଣ ବିନ୍ଧେ ଶର କୋଟି ।
ନିର୍ଘାତ ଶବଦ କରି ସ୍ତମ୍ଭ ଗଲା ଫୁଟି ॥
ଏହା ଦେଖି ସର୍ବଲୋକେ ହେଲେ ଚମତ୍କାର ।
ସାଧୁରେ ମହିଷା ବୋଲି ବୋଇଲେ ଅମର ॥

ବିଧାତାର ବରେ ଦୈତ୍ୟ ଅଟେ ମହାବଳୀ ।
ସୁନ୍ଦର ପଣରେ କାମଦେବଠାରୁ ବଳି ॥
ଚନ୍ଦ୍ରାବତୀଙ୍କୁ ଯେସନେ ସେ ଚନ୍ଦ୍ରନେମି ।
ମହିଷାସୁରେ କହଇ ସୁମଧୁର ବାଣୀ ॥
ତୋର ଯୋଗେ ମୋର ମାନ ରହିଲା ଧରାରେ ।
ଅନୁଗ୍ରହ କର ବିଜେ କରିବା ମୋ ପୁରେ ॥
ଶୁଣି ମହିଷା ଅସୁର ଆନନ୍ଦିତ ହେଲା ।
ଚନ୍ଦ୍ରନେମି ପୁରେ ଯାଇଁ ପ୍ରବେଶ ହୋଇଲା ॥
ଅନେକ ଉତ୍ସବମାନ କଲା ନୃପବର ।
ବିଭାର ଯୋଗାଡ଼ ସବୁ ଭିଆଏ ସତ୍ୱର ॥
ଅସୁରଙ୍କ ଗୁରୁ ଶୁକ୍ର ଆସିଣ ମିଳିଲେ ।
ଶୁଭବେଳେ ବିଭାକାର୍ଯ୍ୟ ସମ୍ପୂର୍ଣ୍ଣ କରିଲେ ॥
ସୈନ୍ୟ ସହିତରେ ତହିଁ ମହିଷା ଅସୁର ।
ଦିନ ଦଶ ରହିଲା ଯେ ଚନ୍ଦ୍ରନେମି ପୁର ॥
ଚନ୍ଦ୍ରନେମି ଚରଣରେ ମହିଷା ପ୍ରଣମି ।
ମୋ ରାଜ୍ୟକୁ ଯିବି ଆଜ୍ଞା ଦିଅ ଦେବ ସ୍ୱାମି ॥
ରକ୍ତବୀର୍ଯ୍ୟ ବିଡ଼ାଳାକ୍ଷେ ଦିଅ ଦୟା କରି ।
ତାଙ୍କ ଯୋଗରେ ଜିଣିବି ଚତୁର୍ଦ୍ଦଶ ପୁରୀ ॥
ଶୁଣି ତାହା ଚନ୍ଦ୍ରନେମି ସନମତ କଲା ।
ଝିଅ ଜୋଇଁଙ୍କ କୌତୁକ ସହ ବିଦାଦେଲା ॥
ମହା ପ୍ରତାପୀ ଅଟଇ ସେ ମହିଷା ନୃପ ।
ପରବେଶ ହେଲା ଆସି ସିଂହଳ ଯେ ଦ୍ୱୀପ ॥
ରକ୍ତବୀର୍ଯ୍ୟ ବିଡ଼ାଳାକ୍ଷେ ଏ ଦୁହିଙ୍କୁ ରଜା ।
ଆପଣା ସମାନେ ରାଜ୍ୟେ କରାଇଲା ପୂଜା ॥
ରତିଙ୍କ ଯେସନ ମଦନ ଯେସନ୍ତେ କରେ ବିଜେ ।
ତେସନ ମହିଷାସୁର ବିଜେ ନିଜ ରାଜ୍ୟେ ॥
ଜୟ ଜୟ ମା ଶାରଳା ଦନୁଜ ଦଳନି ।
ଭକ୍ତର ଗୁହାରି ମାଗୋ ଶୁଣୁ କର୍ଣ୍ଣ ଦେନି ॥
ଝଙ୍କଡ଼ପୁରରେ ତୋର ଅଟେ ନିଜ ବାସ ।
ସଦା ଶାରଳା ଦାସ ଯେ ତୋ ପାଦର ଦାସ ॥

## ମହିଷାର ଜମ୍ବୁଦ୍ୱୀପେ ଯାତ୍ରା ।

କହନ୍ତି ଯେ ଶୁକ ମୁନି ଶୁଣ ପରୀକ୍ଷିତ ।
ଶ୍ରୀ ଚଣ୍ଡୀ ପୁରାଣ ଶୁଣି ହୁଅ ତୁ ମୁକତ ॥
ମହିଷା ଅସୁର କଥା ବଡ଼ ଚମତ୍କାର ।
ଏକଦିନେ ମନରେ ସେ କରଇ ବିଚାର ॥
ଅଛି କେତେ ବାକି ରାଜ୍ୟ ରହିଗଲା ପୁଣି ।
ଆସିବଇଁ ଏବେ ଯାଇଁ ସେ ସମସ୍ତ ଜିଣି ॥
ଏମନ୍ତ ବିଚାର କରି ଅସ୍ତ୍ର ସଜାଇଲା ।
ନିଜେ ଲୁହା ଧନୁ ଏକ ହସ୍ତରେ ଧରିଲା ॥
ବାର ଅର୍ବୁଦ ସଇନ ଯୋଇଲେ ବାହାର ।
କେ ସଂଖ୍ୟା କରିପାରିବ ଯେତେ ବାଦ୍ୟକାର ॥
ଚାମର ବେମାଳ ରକ୍ତବୀର୍ଯ୍ୟ ବିଡ଼ାଳାକ୍ଷ ।
ଏହାଙ୍କର ସୈନ୍ୟ ସାତ ପଦ୍ମ ଶତେଲକ୍ଷ ॥
ଏସନେକ ସୈନ୍ୟ ଯେନ ମୈଷାସୁର ସଙ୍ଗେ ।
ଜମ୍ବୁଦ୍ୱୀପ ମଧ୍ୟରେ ସେ କରିଲା ବିଜୟେ ॥
ଗୁରୁମୁଖରୁ ରାଜାଏ ଦୈତ୍ୟଭୟ ଶୁଣି ।
ନଗର ଛାଡ଼ି ପଳାନ୍ତି ଭୟେ କେତେ ପୁଣି ॥
ଲଙ୍ଘନ୍ତି ଅସୁରେ ଦେଶ ଉଜାଡ଼ନ୍ତି ନଗ୍ର ।
ଗୋ ବ୍ରାହ୍ମଣ ସ୍ତ୍ରୀଙ୍କି ସେ କରନ୍ତି ଉଦ୍ବେଗ ॥
ମନ୍ଦର ଗିରି ସମାନେ ଅସୁରଙ୍କ କାୟା ।
ମାର୍ଜାରି ବାହନ ବ୍ୟାଘ୍ର କାହାର ବଳଅ ॥
ରକ୍ତବୀର୍ଯ୍ୟ ଚାମର ବେମାଳ କାନ୍ତିମାଳା ।
ବିଡ଼ାଳାକ୍ଷ ବିହରନ୍ତି ହୋଇ ମତ୍ତଭୋଳା ॥
ବାଜଇ ଯେ ବଜ୍ରଘୋଷ ମର୍ଦ୍ଦଳ ଦାଉଣ୍ଡି ।
ନାଚଇ କେ ମହାନନ୍ଦେ ଖେମଟା ନାଟ ଖଣ୍ଡି ॥
ଆନନ୍ଦେ ଦାନବେ ବିହରନ୍ତି ଏସନେକ ।
ନ ଜାଣନ୍ତି ବିଧାତାର ବରେ ଯମଦୂତଙ୍କ ॥
ଶିରେ ବଜ୍ର ପଡ଼ିଲେ ନୁହନ୍ତି ବିନାଶ ।
ଉଚ୍ଚରେ ଅକା'ଶେ ଲଗୁଅଛି ଶିରଦେଶ ॥
ନର ବାନର ଗୋ ସ୍ତ୍ରୀ ବ୍ରାହ୍ମଣ ସହିତେ ।
ସବୁ ଭକ୍ଷଣ କରନ୍ତି ସେ ମହାଦୁରନ୍ତେ ॥
ବାରପଦ୍ମ ସଇନ ଯେ ପାଞ୍ଚପଦ୍ମ ସେନା ।
ନ କରନ୍ତି ଯମଦଣ୍ଡେ କୋର୍ଦ୍ଦେ ଗଣନା ॥
କାଶୀ କଉଶିକ କାନ୍ୟକୁବ୍ଜ କନୋଜ ।
ଅଙ୍ଗ ବଙ୍ଗ ଦେଶାଦି ଜିଣି ସର୍ବ ରାଜ୍ୟ ॥
ମହାଭୟ ପାଇ କରି କେତେ ନୃପଗଣ ।
ଶରଣ ପଶିଲେ ଦନ୍ତେ ଧରିଣ ତୃଣ ॥
ଧନ ଭଣ୍ଡାର ଯେସନ କେହି କେହି ପୁଣ ।
ମହିଷାସୁର ଚରଣେ ପଶିଲେ ଶରଣ ॥
ଯେତେକ ଦେବତା କାଷ୍ଠ ପାଷାଣରେ ଥିଲେ ।
ଅନ୍ତରେ ସମସ୍ତ ଛାଡ଼ି ନାରଖାର କଲେ ॥

ମେରୁ ମଣ୍ଡପ ଦେଉଳ ଷ୍ଟାନ ଜଗତି ।
କାହିଁ ନ ରଖିଲେ ଅଶୁଦ୍ଧ ଧର୍ମ କାଟି ॥
ଜମ୍ବୁଦ୍ୱୀପରେ ବଶେଷେ ବ୍ରାହ୍ମଣଙ୍କ ବାସ ।
ସର୍ବଦା ଗୃହବେଦ ସେ କରନ୍ତି ଅଭ୍ୟାସ ॥
ସେମାନଙ୍କୁ ମାରି ଧରି ନେଲେ ତାଙ୍କ ଜାତି ।
ଦୈତ୍ୟଙ୍କ ଭୟେ କେ ବୃଦ୍ଧ କୋଣରେ ଲୁଚନ୍ତି ॥
ଯେସନେକ ରମ୍ଭାବନ ଭାଙ୍ଗେ ବାତଘାତେ ।
ତେସନ ବନସ୍ତମାନ ଭାଙ୍ଗନ୍ତି ଦଇତେ ॥
ଭୟେ ଦେବତା ଯାହାଙ୍କୁ ଦେଖିଲେ ଡରନ୍ତି ।
ମନୁଷ୍ୟ ହୋଇ କେ ତାଙ୍କ ଆଗରେ ବରତି ॥
ସୌରାଷ୍ଟ୍ର ରାଷ୍ଟ୍ର କର୍ଣ୍ଣାଟ ନାଟ ଏହି ଦେଶ ।
ଭାଙ୍ଗିଣ ଧନ ଭଣ୍ଡାର ଜୁରନ୍ତି ସର୍ବସ୍ୱ ॥
ଶଙ୍ଖବତୀ ନଗ୍ର ରାଜା ଅଟେ ପଦ୍ମନାଭ ।
ବରଷ ବରରେ ତାର ମହିମା ଦୁର୍ଲ୍ଲଭ ॥
ପ୍ରତାପୀ ଦାନବ ତାର ଚତୁରଙ୍ଗ ବଳ ।
ଶଙ୍ଖବତୀ ନାମେ ପୁର ଅତି ପରମଳ ॥
ରାଜାର ଆଗରେ ମନ୍ତ୍ରୀ କହିଲାକ ଯାଇଁ ।
ସ୍ୱାମି ତୋହ ଦେଶକୁ ଯେ ନୈଷାସୁର ବାହି ॥
ସିଂହଳଦେଶ ଯେ କ୍ରୌଞ୍ଚ କୁଶ ଚନ୍ଦ୍ର ଦ୍ୱୀପ ।
ଏ ଆଦି ଦେଶ ଜିଣିଲା ପ୍ରତାପୀ କୌଣପ ॥
ସବୁ ଦ୍ୱୀପ ବୁଲି ଜମ୍ବୁଦ୍ୱୀପରେ ପଶିଲା ।
ଅନେକ ପୁର ପଟ୍ଟଣା ଆଦି ଉଜାଡ଼ିଲା ॥
ବନ ପରବତ ଦେଶ ପାଟଣାଦି କେହି ।
ମହିଷାସୁର ଆଗରେ ରହିଲା ଯେ ନାହିଁ ॥
ନଗ୍ର ତେଜିଣ କାନନେ ପଶିଲେକ ରାଜେ ।
କେତେ ଶରଣ ପଶିଲେ ତାର ପାଦେ ଭୟେ ॥
ନ ଜାଣି ଯୁଦ୍ଧ କରବ ତାର ରୁଲେ ଯେହି ।
ଦଣ୍ଡଭଙ୍ଗ ହେଲେ ଯାଇଁ ପଶିବ ସେ କାହିଁ ॥
ମନ୍ତ୍ରିର ବଚନ ଶୁଣି କହେ ପଦ୍ମନାଭ ।
ସମଦଣ୍ଡ ସଜକର ଦେଖିବା ଦାନବ ॥
ବାହାର ଗଡ଼ରେ ତାର ଥିଲା ଯେ ଜଗତୀ ।
ତହିଁରେ ଉଠିଲା ପଦ୍ମନାଭ ନରପତି ॥
ଦେଖିଲା ଦଇତ ବଳ ଅସଂଖ୍ୟ ବାହି ।
ଯେସନେ ସାତସମୁଦ୍ର ଏକହେ ଅସଇ ॥
ଅଗୁଆଣି ଆଟେ ଛନ୍ତି ବୀମର ବେମାଳ ।
କାନ୍ତମାଳା ସହିତରେ ଯେତେ ମହାବଳ ॥

ମନ୍ତ୍ରିକି ଗୁହିଁଣ ପଦ୍ମନାଭ ଯେ ପୁଚ୍ଛଇ ।
କେଉଁମ ହଟରୁ ସାତସମୁଦ୍ର ଅସଇ ॥
ମନ୍ତ୍ରୀ ବୋଲେ ଦନ୍ତ ନୋହେ ସେହୁ ମହାରାଜେ ।
ମହିଷାସୁର ସଇନ୍ୟ ହଟେ ସିନ୍ଧୁ ପ୍ରାୟେ ॥
ସୈନ୍ୟ ଅଛନ୍ତି ପାଞ୍ଚଯୋଜନ ଯେ ମାତ୍ର ।
ସିନ୍ଧୁଘୋଷ ପ୍ରାୟେ ଦେଖ ଶୁଭେ ମୁଖ ରଡ ॥
ପଞ୍ଚଦଶ ଯୋଜନରେ ରହିଥିଲେ ସୈନ୍ୟ ।
ଘଡ଼ିକ ମଧ୍ୟେ ଅଇଲେ ସେ ତିନ ଯୋଜନ ॥
ଜଗତୀରୁ ପଦ୍ମନାଭ ନୃପ ଓହ୍ଲାବନ୍ତେ ।
ଗଡ଼ ବେଢ଼ିଲେ ଆସିଣ ଅସୁର ଦୁରନ୍ତେ ॥
ଗଡ଼ରେ କବାଟ ଦେଇ ଲୁଚିଲା ସେ ରାଜା ।
ମନ୍ତ୍ରିକି ବୋଲେ ତାହାଙ୍କୁ ବାହୁଡ଼ ହଅ ଯା ॥
ମନ୍ତ୍ରୀ କହିଲା ଅରୁଣ କବଚର ବଂଶୀ ।
ଅଭୟ ବର ପାଇଲା ବରହ୍ମଙ୍କ ତୋଷି ॥
ତାହାର ନନ୍ଦନ ଅଟେ ଅଞ୍ଜନ ଦଇତ ।
ମାତଙ୍ଗାସୁର ବୋଲିଣ ତାହାର ଯେ ପୁତ୍ର ॥
ତାହାର ନନ୍ଦନ ନାମ ଅଟଇ ହିଶିର ।
ହିଶିର ନନ୍ଦନ ନାମ ଦୁନ୍ଦୁଭି ଯେ ବୀର ॥
ଦୁନ୍ଦୁଭିର ନନ୍ଦନ ଯେ ଅସୁର ଦୁର୍ମିଳା ।
କଙ୍କାସୁର ବୋଲି ତାର କୁମରେକ ହେଲା ॥
କଙ୍କାସୁର ନନ୍ଦନ ଯେ ଧଙ୍କାସୁର ବୋଲି ।
ଧଙ୍କାସୁରର କୁମର ବକାସୁର ବଳୀ ॥
ବକାସୁର ପୁତ୍ର କନ୍ୟାସୁର ବୋଲି ବୀର ।
ଶଙ୍ଖାସୁର ବୋଲି କର ତାହାର କୁମର ॥
ଶଙ୍ଖାସୁର ତନୟ ଯେ ଦୈତ୍ୟ ସିଂହନାଭ ।
ସିଂହନାଭର ନନ୍ଦନ ଅଟେ ସୁରନାଭ ॥
ସୁରନାଭର କୁମର ବଜ୍ରନାଭ ବୋଲି ।
ବଜ୍ରନାଭର ନନ୍ଦନ ସଇନଭ ବଳୀ ॥
ଆମ୍ଭେ ଅଛୁ ସବୁ ହନେ କଉଣପବଂଶୀ ।
ସେମାନେ ମଧ୍ୟ ନୃପନ୍ତି କେବେ ଅବିଶ୍ୱାସୀ ॥
ଯାହା ହେଉ ଯାଉଛି ମୁଁ ଦେବ ନବର୍ଗୁଇ ।
ଏତେ କହି ମନ୍ତ୍ରୀବର ସତ୍ୱର ଗମଇ ॥
ସୈନ୍ୟଙ୍କୁ ଯାଇଁ ବୋଇଲା ଅସୁର ନୃପତି ।
ତୁମ୍ଭର କଛହିଁ ଦୋଷ କର ସେ ନାହାନ୍ତି ॥
ବଡ଼ାଳାକ୍ଷ ବୋଇଲା ଯେ ଆମ୍ଭେ ତା ନ ଜାଣୁ ।
ଶରଣ ପଶିଲା ଲୋକ ରଖି ଆମ୍ଭେ ଜାଣୁ ॥

କ୍ରୋଧେ ଅଜ୍ଞା ଦେଲା କାନ୍ତମାଳା ମହାବଳୀ ।
ତାଡ଼ ରେ ତାଡ଼ ରେ ଗଡ଼ ଲଗାଇ ଶାବେଳୀ ॥
ଯନ୍ତ୍ରୁଁ ଅଜ୍ଞା ଦେଲା ସାରବର ଏକେକ ବଟି ।
ଲାଗିଲେ ସୈନ୍ୟ ଯେ ଶଙ୍ଖବତୀ ପୁର ତାଡ଼ ॥
ପଦ୍ମନାଭର ସଇନ ଜଗତୀ ଉପରେ ।
ଚଢ଼ଣ ବର୍ଷନ୍ତି ଶର ଅତି କୋପଭରେ ॥
ବଜ୍ରଶର ଅଗ୍ନିଶର ଅଉ ବ୍ରହ୍ମଶର ।
ମର୍ଦ୍ଦିଣ ପେଶନ୍ତି କ୍ରୋଧେ ଦୈତ୍ୟଙ୍କ ଉପର ॥
ବେଢ଼ିଁବେଳ ପେଷିଲେ ସେ ଅସ୍ତ୍ର ଗଳଗାଜ ।
ମହିଷାସୁର ସଇନ ପଳାଇଲେ ଭାଜ ॥
ସୈନ୍ୟଙ୍କର ଭଙ୍ଗ ଦେଖି ଉଠେ ରକ୍ତବୀର୍ଯ୍ୟ ।
ଦ୍ୱାର କବାଟ ତାଡ଼ି ଯେ ଲାଗିଲେ ଦନୁଜ ॥
ବଡ଼ାଳାକ୍ଷ ରକ୍ତବୀର୍ଯ୍ୟ ଚାମର ବେମାଳ ।
ପାଞ୍ଚ ଅର୍ବୁଦ ସଇନ ଚାଳନ୍ତି ସେ ପୁର ॥
ବଜ୍ରରୁ କଠିନ ଅଟେ ଅସୁରଙ୍କ କାୟେ ।
ନାନାଶସ୍ତ୍ରମାନଙ୍କୁ ସେ ନ ରକନ୍ତି ଭୟେ ॥
ପଦ୍ମନାଭର ସଇନ ବର୍ଷନ୍ତି ଯେ ଶର ।
ଦୈତ୍ୟଙ୍କ ଉପରେ ପଡ଼ି ହୁଅନ୍ତି ଶତେଚୂର ॥
ଗର୍ଜନ୍ତି ପ୍ରତାପୀ ଦୈତ୍ୟେ ଯେଣୁ ମହାବଳୀ ।
ତାଡ଼ିଲେ କବାଟସବୁ ଲଗାଇ ଶାବେଳୀ ॥
ଗଦା ପ୍ରହାର ଶାବଳେ ତାଡ଼ିଲେ ଦର୍ପିଷ୍ଟ ।
କ୍ଷଣକରେ ଗଡ଼ ତାର କଲେ ନଷ୍ଟ ଭ୍ରଷ୍ଟ ॥
କୋପଭରେ ପ୍ରହାରିଲେ ଅନର୍ଯ୍ୟାପ ଶର ।
ଭାଜିଲେ ସଇନସବୁ ସେ ପଦ୍ମନାଭର ॥
ଅଶୀସହସ୍ର ଯୋଦ୍ଧା ରଣେ ପଡ଼ିଲେ ଅଚେତେ ।
ସଂଖ୍ୟା କେ କରି ପାରିବ ପଦାତିକ ଯେତେ ॥
ରୁଧିରେ କର୍ଦ୍ଦମ ହେଲା ଦେଖା ବସୁନ୍ଧରା ।
ଶଙ୍ଖବତୀ ନଗ୍ର ଭାଙ୍ଗି କଲେ ସବୁ ଚୂର ॥
ପାଚେରୀ ଦେଉଳ ଅଉ ଜଗତୀ ଅଟ୍ଟାଳି ।
ମହିଷାସୁର ସଇନ ଭାଙ୍ଗି କଲେ ଧୂଳି ॥
ପୁନରପି ବେନିବଳ କରନ୍ତି ସମର ।
ବେନି ଆଡ଼ରେ ପଡ଼ିଲେ ନବଲକ୍ଷ ବୀର ॥
ସୈନ୍ୟହତ ଦେଖିକରି କାନ୍ତମାଳା ଉଠେ ।
ନାଶ ଫୁଲାଇ ଗଦାକୁ କ୍ରୋଧଭରେ ପିଟେ ॥
ରକ୍ତବୀର୍ଯ୍ୟ ବଡ଼ାଳାକ୍ଷ ଚାମର ବେମାଳ ।
ଏକମୁଖରେ ରଣରେ ପଶି କଲେ ଗୋଳ ॥
ଏ ପାଞ୍ଚ ଅସୁରେ ଜଣି ମାରନ୍ତି ଯେ ସ୍ୱର୍ଗ ।
ଗର୍ଜ୍ଜିଁ ଗର୍ଜ୍ଜିଁ ଘୋଟିଗଲେ ଯେ ଗଗନମାର୍ଗ ॥
ପଦ୍ମନାଭର ସଇନ ଦେଖି କଲେ ଭୟ ।
ମନ୍ଦର ଗିରି ପରାଏ ଦୈତ୍ୟଙ୍କର କାୟ ॥
ଅଶୀ ଅର୍ବୁଦ ଯୋଦ୍ଧାଙ୍କୁ ସଙ୍ଗତରେ ଘେନି ।
ଶୀଘ୍ର ଉଠିଲେ ଚାମର ବେମାଳ ଯେ ବେନି ॥
ଲୋହଶର ଶକତିକି ନ କରନ୍ତି ଭୟ ।
ବଜ୍ରରୁ କଠିନ ଅଟେ ଦୈତ୍ୟଙ୍କର କାୟ ॥
କାନ୍ତମାଳା ପ୍ରହାରରେ ମଲେ ବହୁଯୋଧୀ ।
ଶଙ୍ଖବତୀ ନଗରରେ ବହେ ରକ୍ତନଦୀ ॥
କାନ୍ତମାଳାର ଶରୀର ମେରୁଗିରି ପ୍ରାୟେ ।
ପଦ୍ମନାଭର ସଇନ ଦେଖି କଲେ ଭୟେ ॥
ଅପାର ଯୋଦ୍ଧା ତାହାର ପଡ଼ିଲେକ ରଣେ ।
ଦେଖି ପଦ୍ମନାଭ ମହାଭୟ କଲା ମନେ ॥
ପାଞ୍ଚକୋଟି ଯୋଦ୍ଧା ତାର ଅଛନ୍ତି ସଙ୍ଗତେ ।
ଛେଳ ପ୍ରାୟ ହେଲେ କାନ୍ତମାଳାର ଅଗ୍ରତେ ॥
ଦେଖି ପଦ୍ମନାଭ କାନ୍ତମାଳାକୁ ପୁଛଇ ।
ଅକାରଣେ ବଳ ମୋର ନାଶିଲ କପାଇଁ ॥
କାନ୍ତମାଳା ବୋଇଲା ହୋ ନ ଜାଣ ଯେ ତୁମ୍ଭେ ।
ବ୍ରହ୍ମାଣ୍ଡଜିତା ମହିଷାସୁର ବଳ ଅମ୍ଭେ ॥
ସମସ୍ତ ଦ୍ୱୀପ ଜିଣିଲୁ ଅମ୍ଭେ ବଳେ ଧରି ।
ମହିଷାସୁରକୁ କେହି ନାହାନ୍ତି ବା ତୁର ॥
ଜମ୍ବୁଦ୍ୱୀପରେ ଜିଣିଲୁ ସବୁ ରାଜାମାନ ।
ତୁ ସାମାନ୍ୟ ରାଜା ତୋର କିସ ବଡ଼ପଣ ॥
ଏବେ ଆସ କରାଇବା ରାଜାଙ୍କୁ ଦର୍ଶନ ।
ମସ୍ତୀମନ୍ଥନ ନୃପତି ହେବେ ପରସନ୍ନ ॥
ପଦ୍ମନାଭ ନୃପ ବୋଲେ ପଡ଼ିଲେ ମୋ ସଖା ।
ଅବର ସଙ୍ଗ ତୁମ୍ଭର ସଙ୍ଗେ କାହିଁ ଦେଖା ॥
ପଛରୁ ମହିଷାସୁର ବଳ ଯେ ଉଠିଲେ ।
ପଦ୍ମନାଭ ସୈନ୍ୟ ତୁଲେ ଯୁଦ୍ଧ ଆରମ୍ଭିଲେ ॥
କୋପାନ୍ଧେରେ ଜର ଜର ହେଲା ରକ୍ତବୀର୍ଯ୍ୟ ।
ଅନେକ ଯୋଦ୍ଧା ଘେନିଣ ଧାଇଁ ଦନୁଜ ॥
ଧଇଲେ ପଦ୍ମନାଭର ଯାଇଁ ବଳେ କେଶ ।
ଖଡ୍ଗ ପ୍ରହାରେ ତାର ପ୍ରାଣ କଲେ ନାଶ ॥
ପଦ୍ମନାଭ ନରପତି ଯାନ୍ତେ ଯମାଳୟ ।
ତାହାର ସଇନ୍ୟ ଯାକ ମାରି କଲେ କ୍ଷୟ ॥

ବଜ୍ରନାଭ ପୁତ୍ରାଙ୍କୁ ଧର୍ଷଣ କରନ୍ତ ।
ଯେଉଁଠାରେ ରହିଅଛି ମହିଷା ନୃପତି ॥
ସେଠାରେ ନେଇ ସମର୍ପି କହେ ରକ୍ତବୀର୍ଯ୍ୟ ।
ଅସୁର ଅନେକ ଦେବ ପୀଡ଼ିଲେ ଦନୁଜ ॥
ମୁଁ ବଧ କରିଲି ପଦ୍ମନାଭ ନୃପତିକୁ ।
ଧରି ଆଣିଲି ତାହାର ଏ ବେନି ପୁତ୍ରଙ୍କୁ ॥
ବାହୁତ ହେଲେ କି ହେବ ଅନେକ ଏ ଝିଙ୍କା ।
ତୁମ୍ଭ ମହିମା ଜାଣନ୍ତି ଏହି ଶିଶୁ ବେନି ॥
ଅସୁର ହୋଇଣ ଏଥେ ହୁଅନ୍ତୁ ଏ ରାଜା ।
ଥାଉ ସୈନ୍ୟ ସେନା କରି କରନ୍ତୁ ଯେ ପୂଜା ॥
ବହୁତ ପ୍ରବୋଧ କରି କହେ ରକ୍ତବୀର୍ଯ୍ୟ ।
ଶୁଣିଣ ସୁଦୟା କଲା ସେ ଦୁଷ୍ଟ ଦନୁଜ ॥
ଅପଣା ଶ୍ରୀକରେ ମୈଷା ବାନ୍ଧେ ନେଇ ଶାଢ଼ୀ ।
ସେ ପୁରେ ନୃପତି ତାଙ୍କୁ କଲେ ସର୍ବେ ବେଢ଼ି ॥
ପାଞ୍ଚଲକ୍ଷ ରଥୀ ପାଞ୍ଚଅଯୁତ ଯେ ହସ୍ତେ ।
ସେନାକରି ବଜ୍ରନାଭ ଖଟେ ମୈଷା ପାଶ୍ୱେ ॥
ଏରୂପେ ରାଜ୍ୟ ସାଧିଲା ମହିଷା ଦଇତ ।
ମଣିମନ୍ଥନ ନାମକୁ ବହେ ବଳ ବଳବନ୍ତ ॥
ଜୟହୁ ଜୟହୁ ଦେବ ପରଂ ଯୋଗାଭ୍ୟାସି ।
ଭଗ୍ନତାର ଉଦରରୁ ଅଦ୍ଭୁତେ ପ୍ରକାଶି ॥
ମାତାଙ୍କୁ ହରିଲୁ ଚିହ୍ନି ନ ପାରଣ ଭ୍ରମେଲେ ।
ତେଣୁ ମହାଦେବ ନାମ ତୋର ରଖିଲେ ॥
ଜୟ ତୁ ଜୟ ଧବଳମୂର୍ତ୍ତି ମହାଶୂଳୀ ।
ଅଯୋନି ସମ୍ଭୂତ ନାଥ ନାମ ତୋ ଧବଳୀ ॥
କ୍ଷଣକରେ ଦହିଦେଲୁ କାମଦେବ କାୟ ।
ଦେବଙ୍କ ଯୋଗେ ଜନ୍ମିଲେ ଦେବ କାର୍ତ୍ତିକେୟ ॥
ଜଗଜନ ହିତେ କାଳକୂଟକୁ ଭକ୍ଷିଲୁ ।
ଡମରୁ ବଜାଇ ବୃଷ ବାହନରେ ବୁଲୁ ॥
ନିଶାକର ଚନ୍ଦ୍ର ଧର୍ମ ଦହନ ତିନେତ୍ର ।
ଅନନ୍ତ ନାଗ ଭୂଷଣ ଅଙ୍ଗରେ ପବିତ୍ର ॥
ଯାବତ ବହନେ ନାଥ ତୁହି ଯେ ନାୟକ ।
ଜଗତ ଜନ ସୋଦର ଦେବ ତ୍ରିଅମ୍ବକ ॥
ଧାତୁବାଦ୍ୟ ପୁରୁଷ ତୋ ଶିରେ ପଞ୍ଚଜଟ ।
ଅରୋପଣ କରୁ ଦେବ ମଣ୍ଡବଙ୍ଗେ ନାଟ ॥
ଚରାଚର ଠାକୁର ତୋ ମହେଶ୍ୱର ନାମ ।
ଜାତ ଅନ୍ତ ନାଥ ତୁହି ଈଶାନ ଉତ୍ତମ ॥

ଶ୍ରୀ ନୀଳକଣ୍ଠ ଚରଣ କମଳେ ହୃଦଗତେ ।
ଶାରଳା ଦାସ ଯେବଣ ବିଶ୍ୱନାଥ ନିତ୍ୟେ ॥
ମୈଷାସୁର ଦଗଦକେ ଏ ପୁଣ୍ୟ ଅଖ୍ୟାନ ।
ଏକମନ କରି ଶୁଣ ଅହେ ସୁଜ୍ଞ ଜନ ॥
ଶାସ୍ତ୍ର ସଂହିତାରେ ଯାହା ହୋଇଛି ଉକତ ।
ଲେଖି ପାରିବ କେ ତାହା କରି ଅଦ୍ୟ ପ୍ରାନ୍ତ ॥
ଅଜନ୍ମରୁ ମୂର୍ଖ ମୁହିଁ ଅଟେ ଅପଣ୍ଡିତ ।
କହିବାକୁ ଶକ୍ୟ କି ମୁଁ ଏହି ମହା ଶାସ୍ତ୍ର ॥
ମୋତେ ଅଗୋଚର ଏହି ଚିତ୍ର ଭଗବତ ।
ବେଦତତ୍ତ୍ୱରୁ ଏହା ଯେ ହୋଇଛି ସମ୍ଭୂତ ॥
ଝଙ୍କଡ଼ ପୁରବାସିନୀ ପ୍ରସନ୍ନ ହିଙ୍ଗୁଳା ।
ମୋର ହୃଦୟକୁ ସେହି ସଦା ପଦ୍ମମାଳା ॥
ଶାରଳା ପାଦରେ ମୁହିଁ ରତିଧନ ଖଟେ ।
ମୋତେ ଯାହା କହଇ ତା ବଦନରେ ରଟେ ॥
ପରମ ଗତି ପାଇଁକି ଦେଲା ମୋତେ ବୁଦ୍ଧି ।
ତାହାର ଆଜ୍ଞାରେ ଏହି ଶାସ୍ତ୍ରକୁ ମୁଁ ଛନ୍ଦି ॥
ବିକଚକମଳମୁଖୀ ଉତ୍ପଳ ନୟନୀ ।
ସୁଧାଦ୍ରିମଧ୍ୟ ପ୍ରସନ୍ନ ହୁଅ କାତ୍ୟାୟିନୀ ॥
ହେ ବୁଧ ଜନେ ମୋହର କେହି ସଖା ନାହିଁ ।
ସେ ମହାମାୟା ସନିରେ ଯାହା ମୋତେ କହି ॥
ମୁହିଁ ସେ କଥା ଗୋଟିକୁ ଅଭ୍ୟାସ କରଇ ।
ତେଣୁ କରି ମୁଁ ତ ଏହି ଗ୍ରନ୍ଥ ଲେଖିଲଇଁ ॥
ପ୍ରଯନ୍ତା ସେ ମାହେଶ୍ୱରୀ ପର ଦୁଃଖେ ଦୁଃଖୀ ।
ସର୍ବଦା ଭକତ ଜନ କଷ୍ଟକୁ ନ ଦେଖି ॥
ବରଦାୟିନୀ ମାତା ଗୋ ଶ୍ରୀ ସିଦ୍ଧଶାରଳେ ।
ଶୂଦ୍ରମୁନି ଶାରଳା ତୋ ପାଦତଳେ ଲୁଲେ ॥



## ଶୁମ୍ଭ ନିଶୁମ୍ଭ ସଙ୍ଗେ ମହିଷାସୁରର ଯୁଦ୍ଧ ଓ ପରାଜୟ ।

ଏଥୁଅନନ୍ତରେ ପରୀକ୍ଷ ନାମେ ମହାରାଜା ।
ଶୁକ ମୁନି ଚରଣରେ କରି ଦିବ୍ୟପୂଜା ॥
ବୋଇଲା ହେ ବ୍ରହ୍ମବେତ୍ତା ବକତା ପ୍ରବର ।
କହ ମହିଷାର ଦଗବଜେ ସମାଗ୍ରର ॥
ଅନ୍ତର୍ଜଳରେ ରହିଣ ବ୍ୟାକୁଳ ମୋ ଚିତ୍ତ ।
ପୁରାଣ ଶୁଣାଇ ଶାନ୍ତ କରି ତପୋବନ୍ତ ॥

କୁହ ମହାମୁନି ମୋତେ ସୁଧାସମ ବାଣୀ ।
ଆତ୍ମା ବ୍ୟାକୁଳ ମୋ ସ୍ଥିର ହେବ ତାହା ଶୁଣି ॥
ଶୁଣ ପରୀକ୍ଷିତ ରାଜେ କହେ ବ୍ରହ୍ମମୁନି ।
ଏକମନେ ଶୁଣ ଏବେ ମହିଷା କାହାଣୀ ॥
କର୍ଣ୍ଣାଟ ମାଳବ ଦେଶ ଗଉଡ଼ ଦ୍ରାବିଡ ।
ଗୁରଜାର ମହାରାର ନେପାଳ ସୁରାଟ ॥
କଚ୍ଛ ମଲ୍ଲାର ନଗର ଆବର ଭୂପାଳ ।
ଭୋଟ ମରହଟ୍ଟ ବାରସ୍ତୀ ଦେଶକୁଳ ॥
ଏତେ ଏତେ ଦେଶମାନ ମୈଷାସୁର ଜିଣି ।
ବିଧ୍ୱଂସି ଧନ ଭଣ୍ଡାର ସବୁ ଲୁଟି ଆଣି ॥
ଡରେ ରାଜାମାନେ ହେଲେ କରରପରାୟେ ।
ସଇନ ସେନ ଖଟନ୍ତି ମହିଷାର ପାଶ୍ୱେ ॥
ହେ ପରୀକ୍ଷ ସମୁଦ୍ରର ପଶ୍ଚିମ କୂଳରେ ।
କୁଳାବତୀ ପାଟଣା ଯେ ବିଖ୍ୟାତ ଧରାରେ ॥
କ୍ଷତ୍ରିୟ ବର ଶୋହନ୍ତି ସାରଙ୍କର ମଣି ।
ସେ ନଗ୍ରେ ନୃପତି ଶୁମ୍ଭ ନିଶୁମ୍ଭ ଯେ ବେନି ॥
ମହାସିନ୍ଧୁ ଚନ୍ଦ୍ରଭାଗା ନଦୀର କୂଳରେ ।
ତପ କଲେ ବିଧାତାଙ୍କୁ ସେ ବାଳକାଳରେ ॥
ସହସ୍ରେ ବରଷ ଯେଙ୍କ ଲୌହଚୂର୍ଣ୍ଣ ଭକ୍ଷି ।
ତପ କରନ୍ତି ଶରୀରୁ ଉତ୍ପୋଧ ଉପେକ୍ଷି ॥
ସହସ୍ର ବରଷ ମଧ୍ୟେ ହେଲେ ଉଇଗଦା ।
ଫୁଟି ଦିଶେ ତାହାଙ୍କର କାୟା ହୋଇ ଚିଛା ॥
ପରମ ନିସକୁଳରେ ମହାତପ ରତ ।
ନବସହସ୍ର ବରଷେ ପ୍ରବେଶ ବିରଞ୍ଚି ॥
ଅସାଷ୍ଟମ ହୋଇକରି ଛନ୍ତି ବେନିବୀର ।
ଶରୀରରେ ଚେତନା ଯେ ନାହିଁ ତାହାଙ୍କର ॥
କମଣ୍ଡଳରୁ ବିଧାତା ସୁଧା କଲେ ବୃଷ୍ଟି ।
ସଚେତ ହୋଇଣ ଶୁମ୍ଭ ନିଶୁମ୍ଭ ଯେ ଉଠି ॥
ବୋଇଲେ କିମର୍ଥେ ଭଗ୍ନ କଲୁ ଏହ୍ନେ ତପ ।
ଏହିକ୍ଷଣି ମାରିବୁ ଯେ କହ ତୋ ସ୍ୱରୂପ ॥
ବିଧାତା ବୋଇଲେ ମୁହିଁ ଚତୁରବଦନ ।
ଇଚ୍ଛାବର ମାଗ ବାରୁ ଦେବଇଁ ବହନ ॥
କମଣ୍ଡଳୁରୁ ଅମୃତ ପୁଣି କଲେ ବୃଷ୍ଟି ।
ଜ୍ଞାନ ପାଇଣ ଉଠିଲେ ଦୈତ୍ୟ ବେନି ଗୋଟି ॥
ବର ମାଗ ବତ୍ସ ବୋଲି ବୋଇଲେ ବିରଞ୍ଚି ।
ମନେ ଯେଉଁ କଥା ପୂର୍ବୁଁ ଅଛି ତୁମ୍ଭେ ପାଞ୍ଚି ॥

କର ଯୋଡଣ ବୋଲନ୍ତି ସେ ଶୁମ୍ଭ ନିଶୁମ୍ଭ ।
ନିଜରୂପ ଦେଖା ପିତା ତେବେ ବର ଦେବ ॥
ଶୁଣି ଆପଣାର ରୂପ ଦେଖାଇଲେ ଧାତା ।
କରେ କମଣ୍ଡଳୁ କଣ୍ଠେ ସୁଦିବ୍ୟ ପଇତା ॥
କେଉଁ ହସ୍ତରେ ଆୟୁଧ କେଉଁ ହସ୍ତେ ମାଳା ।
ବେଦ ପଢ଼ନ୍ତି ଚତୁର ମୁଖେ ଅନର୍ଗଳା ॥
ନିଜସ୍ୱରୂପ ଦେଖିଣ ସେ ଶୁମ୍ଭ ନିଶୁମ୍ଭ ।
ବୋଇଲେ ଯଦ୍ୟପି ପିତା ବର ତୁମ୍ଭେ ଦେବ ॥
ଆଗ ସତ୍ୟକର ପଛେ ମାଗିବୁ ଯେ ବର ।
ନୋହିଲେ ବାହୁଡ଼ିଯାଅ ଆପଣାର ପୁର ॥
ପିତାମହ ବୋଇଲେକ କଲି ମୁହିଁ ସତ୍ୟ ।
ଯାହା ମାଗିବରେ ତାହା ଦେବଇଁ ନିଶ୍ଚିତ ॥
ଶୁମ୍ଭ ନିଶୁମ୍ଭ ବେନିଙ୍କୁ ବର ଦିଅ ଯାଚ ।
ବିଳମ୍ବ ନ କର ବୋଲି କହନ୍ତି ବିରଞ୍ଚି ॥
ଶୁଣି ଶୁମ୍ଭ ନିଶୁମ୍ଭ ଯେ ଦିଅନ୍ତି ଉତ୍ତର ।
ଯୁଗେ ଯୁଗେ ରହିଥିବ ଅମର ଶରୀର ॥
ପ୍ରଳୟକାଳେ ବିନାଶ ଆମ୍ଭେ ଯେ ନୋହିବୁ ।
କୋଟିକଳ୍ପ ଗଲେ ଏହିରୂପେ ରହିଥିବୁ ॥
ବିଧାତା ବୋଇଲେ ବତ୍ସ ତଥାସ୍ତୁ ଯେ ଦେଇ ।
ଅକ୍ଷୟ ହୋଇଣ ଯୁଗେ ଯୁଗେ ଦେହ ଥାଉ ॥
ଲକ୍ଷେ କୋଟି ସିଂହ ପରାକ୍ରମ ଥିବ ବହୁ ।
ଏସନକ ବର ଧାତା ଦେଲେ ତାହାଙ୍କୁହିଁ ॥
ବର ଦେଇ ଧାତା ନିଜପୁରେ ବିଜେ କଲେ ।
ଶୁମ୍ଭ ନିଶୁମ୍ଭ ଯେ ବଡ଼ ଆନନ୍ଦ ହେଲେ ॥
ଶୁଣ ଅହେ କୁରୁବଂଶୀ ପରୀକ୍ଷ ନୃପତି ।
ଶୁକମୁନି କହନ୍ତି ଶ୍ରୀ ଭାଗବତ ରୀତି ॥
ଏଥିଅନ୍ତରେ ବିହନ୍ତା ପୁରୁଷେ ଯେ ହାସେ ।
ମାଇଁ ବେଗେ ଜଣାଇଲେ ନାରାୟଣ ପାଶେ ॥
ଭୋଗଦେବ ଦାନବ ଶୁମ୍ଭ ନିଶୁମ୍ଭ ଯେ ବୋଲି ।
ବିଧାତା ପ୍ରସନ୍ନ ହେଲେ ତାହାଙ୍କୁ ଯେ କାଲି ॥
ଅମର ବର କମଳାସନ ଛନ୍ତି ଦେଇ ।
ଅସୁରେ କଳପଜୀବୀ ହୋଇଲେ ଗୋସାଇଁ ॥
ଅମର ବର ଧାତାଙ୍କୁ ମାଗିଲେ ସେ ଦୁଷ୍ଟ ।
ଆବର କି ସଂସାରକୁ ରଖିବେ ଦର୍ପିଷ୍ଟ ॥
ବିହନ୍ତା ପୁରୁଷଙ୍କର ଏ ବଚନ ଶୁଣି ।
ମନେ ଅତି ଚିନ୍ତାକଲେ ପ୍ରଭୁ ଚକ୍ରପାଣି ॥

ତତକ୍ଷଣେ ସେ ନାରାୟଣ ବ୍ୟାଘ୍ରରୂପ ଧରି ।
ଗୋପ୍ୟାନ ରୂପୀ ହୋଇଲେ ଅନ୍ତର ଅଭିର ॥
ଋଷିରୂପ ଧଇଲେ ସେ ଦେବ ନାରାୟଣ ।
ଅତି କ୍ଷୀଣାଙ୍ଗ ଦୁର୍ବଳ ନ ଚଳେ ଚରଣ ॥
ବର ପାଇଣ ଦଇତ୍ୟ ଯାନ୍ତି ଯେଉଁ ବାଟେ ।
ସେ ପଥେ ଶୋଇଲେ ହରି ଯାଇଁ ଜଳଘାଟେ ॥
ତାଙ୍କର ଏ ଅବସ୍ଥାକୁ ଦେଖିଣ ଦଇତେ ।
ପଚାରନ୍ତି କାହା ସୁତ ଶୋଇଛ କିମର୍ଥେ ॥
କେଉଁଠାରେ ଘର ପୁଣି କେଉଁ ବଂଶେ ଜାତ ।
ଏପରି ଅବସ୍ଥା ହେଲା କୁହ କି ନିମନ୍ତ ॥
ଶୁଣି ନ ପାରଣ ପ୍ରଭୁ ନ କହନ୍ତି କଥା ।
ପୁଣ ପୁଣ ଦାନବେ ଯେ ପୁଚ୍ଛନ୍ତି ବାରତା ॥
ସରୋବରୁ ପାଣି ଆଣି ମୁଖେ ଦ୍ୟନ୍ତି ସିଞ୍ଚି ।
ଶାଲପତ୍ର ଗୋଟିଏକ ସେନି ଧରି ବିଞ୍ଚି ॥
ସଚେତ ହୋଇ ପୁରୁଷ ଉଠି କହେ କଥା ।
ଶୁଣିବା ବାନ୍ଧବେ ତୁମ୍ଭେ ମୋହର ବାରତା ॥
ମୁହିଁତ ଅଟେ ଅନନ୍ତ ଦେଶର ଯେ ରଜା ।
ନରକାର ନୃପତିର ଅଟଇ ତନୁଜା ॥
ମୋତେ ଯେକାଳେ ପ୍ରସନ୍ନ ହୋଇଲେ ବିରଞ୍ଚି ।
କଳପ ଅସୂଷ କରି ମୋତେ ଗଲେ ରଚି ॥
ସତ୍ୟ କରଣ ବୋଇଲେ ମୋର ସେ ଆୟୁଷ ।
ତୋର ତେବେ ପରମାୟୁ ହେଉ ହେ ପୁରୁଷ ॥
କୋଟିବ୍ରହ୍ମାଣ୍ଡେ ନୋହିବେ ତୋତେ କେହି ସରି
ସମରେ ହାରିବେ ତୋତେ ବ୍ରହ୍ମା ରୁଦ୍ର ହରି ॥
ନାନାଶସ୍ତ୍ର ନ ଭେଦିବ ତୋହର ଶରୀର ।
ଏମନ୍ତ କରଣ ପିତା ମୋତେ ଦେଲା ବର ॥
ମୋର ଅଙ୍ଗେ ବ୍ରହ୍ମଶକ୍ତି ଅମୋଘ ଶକତି ।
ନାରାୟଣ ଶର ପାଶୁପତ ନ କାଟନ୍ତି ॥
ବର ପାଇବାର ହୋଇନାହିଁ ଷଡ଼ମାସ ।
ଏତେବର କଷ୍ଟରେ ଗଲା ମୋର ନାଶ ॥
ଧାତା ମୋତେ ବର ଦେଇ ଗଲେ ଯେଉଁ ଦିନୁ ।
ସେବେଳେ ଘାଣ୍ଟି ହେଲା ସେହିକାଳୁ ମୋର ତନୁ ॥
ଗୋଟିଏ ମାତ୍ର ତନୟ ମୋହର ଯେ ଥିଲା ।
ବିଧାତା କ୍ରୋଧରେ ସେହି ପୁତ୍ର ନାଶ ଗଲା ॥
ବେନି ଭାରିଯା ଅଗାଧ ଜଳେ ଗଲେ ବୁଡ଼ି ।
ଏସନକ ଅବସ୍ଥା ଯେ ମୋହରତ ପଡ଼ି ॥

ଏ କଥା ମନେ ବିଚାରି ଅଛେ ବେନି ଯାରେ ।
ଜାତ ହେଲେ ମରଣତ ଘଟେ ମୃତ୍ୟୁପୁରେ ॥
କାହାକୁ ପ୍ରାପତ ନୋହେ ପରମ ଯେ ପଦ ।
ରକତ ମାଂସ ଦେହରେ ପଡ଼ଇ ପ୍ରମାଦ ॥
ଅନେକ ଦୁଃଖ ପାଇଲି ମୁହିଁ ଅଛେ ଜାଣ ।
ବିଧାତାର ବର ମୋତେ ନୋହିଲା କାରଣ ॥
ଦେଖ ଏଠାରେ ପଡ଼ିଛି ଆସି ଜଳସ୍ଥାନେ ।
କେହିହେଲେ ନ ପଚାରେ ପଦେ କେ ବଚନେ ॥
ଅର୍ଥିତ ଜନ ମୁହିଁତ ଅଟେ ମହାରୋଗୀ ।
ଭଲ ହୋଇବାକୁ ସ୍ଥାନ ଲୋଡ଼ୁଛି ମୁଁ ବେଗି ॥
ଅହୋ ମହାତମା ଜାଣ ସେହି ବେଦବର ।
ଲୋକଙ୍କୁ କେଉଁ ରୂପରେ ଦିଅଇଛି ବର ॥
ସର୍ଜ୍ଜନା କରଇ କେଉଁପରି ଏ ବ୍ରହ୍ମାଣ୍ଡ ।
ଦେବତାଙ୍କ ମଧ୍ୟେ ଯେହୁ ଅଟେ ବଡ଼ ଭଣ୍ଡ ॥
ଏକମୁଖ ଦେବତା ସେ ନୁହଇ କଦାପି ।
ଦେଖୁଁ ଦେଖୁଁ ଗୁରୁମୁଖେ ଭଣ୍ଡେ ଯତି ତପୀ ॥
ଏ ଯେନ ଅଟଇ ସେହୁ ଅତ୍ୟନ୍ତ ଅଜ୍ଞାତ ।
ତୁଚ୍ଛରେ ଲୋକଙ୍କୁ ଭଣ୍ଡୁ ଥାଇ ନିତି ପ୍ରତି ॥
ଈଶ୍ୱର ଜାଣିଲା ଯେଣୁ ତାର ମର୍ମ ଖଣ୍ଡି ।
ପଞ୍ଚମୁଣ୍ଡ ବହିଅଛି ଏକଗୋଟି ଗଣ୍ଡି ॥
ଦେଖିକରି ଅତିକୋପ ସଦାଶିବ କଲା ।
ଗୃହପୋଡ଼େ ମାରି ମୁଣ୍ଡେକ ତାର ଛିଣ୍ଡାଇଲା ॥
ତୁମ୍ଭେ ବାନ୍ଧବେ ନ ଜାଣ ତାର ଚୌର୍ଯ୍ୟ ପଣ ।
ଅପୂଜ୍ୟ ଦେବତା ଯେହୁ ଏ ମର୍ତ୍ତ୍ୟ ପୁରେଣ ॥
ବଡ଼ ମନ୍ଦ ଜାତି ଜାଣ ଅଟେ ପଦ୍ମଯୋନି ।
ବେଶ୍ୟାସଙ୍ଗେ ମାତିଲା ସେ ଦିବସ ରଜନୀ ॥
ତାର ତହୁଁ ଏକଗୋଟି ପୁତ୍ର ଉପୁଜିଲା ।
ଅତି ଶ୍ରଦ୍ଧାରେ ବଶିଷ୍ଠ ନାମ ତାର ଦେଲା ॥
ଅନର୍ଯ୍ୟାପ ଅକର୍ମୀ ଯେ ଅଟଇ ବିରଞ୍ଚି ।
ତାକୁ ସେବା କଲେ ଭଲ ଫଳ ନାହିଁ କିଛି ॥
ମନୁଷ୍ୟ ମଧ୍ୟେ ଅଟଇ ସେ କାଳ ପୁରୁଷ ।
ତୋଷେ ବ୍ରହ୍ମାକୁ ଯେ ତପ କରେ ଯାଏ ନାଶ ॥
କହୁଁ କହୁଁ ବଇକୁଲ୍ୟ ହେଲା ତାଙ୍କ ପ୍ରାଣ ।
କ୍ଷିତିରେ ପଡ଼ି ଛାଡିଲେ ପିଣ୍ଡରୁ ପରାଣ ॥
ଦେଖିଣ ଆଶ୍ଚର୍ଯ୍ୟ ହେଲେ ବେନିଗୋଷ୍ଠି ଯାରେ ।
ବଶିଷ୍ଠଙ୍କର କଥାଯାକ ଭାଳିଲେ ମନରେ ॥

ବାହୁତ ତପସ୍ୟା କଲେ ବିଧାତାର ନାମେ ।
ନିରାହାରରେ ରହିଲେ ଅତ୍ୟନ୍ତ ଉଦ୍ୟମେ ॥
ଅନେକ କାଳ ପର୍ଯ୍ୟନ୍ତ ବସି କଲେ ଧ୍ୟାନ ।
ନ ଦେଖିଲେ ବିଧାତାର ଯେଣୁ ବର୍ଣ୍ଣି ଚିହ୍ନ ॥
ତେଣୁ କ୍ରୋଧେ ବିଚାରନ୍ତି ମନେ ଭାଇ ବେନି ।
ବ୍ରହ୍ମାକୁ ଖୋଜି ଧରିବା ଚାଲ ପୁର ତେଜି ॥
ହେ ପରୀକ୍ଷ ତପ ତେଜ ଉଠିଲେ ସେ ଦୁଇ ।
ଆକାଶେ ପଶି ଲୋଡ଼ନ୍ତି ପଦ୍ମଯୋନିକୁହିଁ ॥
ବ୍ରହ୍ମାକୁ ସେ ଲୋଡ଼ ଲୋଡ଼ି ପଶନ୍ତି ଯେ ପୁରେ ।
ନ ରଖନ୍ତି ଗୋ ବ୍ରାହ୍ମଣ ପ୍ରଭୃତି ତହିଁରେ ॥
ଯନ ଭଣ୍ଡାରଦ ଜୁର କଲେ ମହାବଳୀ ।
ଆକାଶ ପୁରେ ବହୁତ ହେଲା ହାଲହୋଳି ॥
ଶୂନ୍ୟରେ ଗମିଲେ ତହିଁ ବହନ୍ତା ପୁରୁଷେ ।
ବିନମ୍ର ହୋଇ କହନ୍ତି ପିତାମହ ପାଶେ ॥
ସ୍ୱାମି ସ୍ୱର୍ଗେ ବଳେ ଶୁମ୍ଭ ନିଶୁମ୍ଭ ଏ ବେନି ।
ନାଶକର ଛାଡ଼ିଲା ଯେ ପୁର ସଂଯମନୀ ॥
ତବ ବର ପାଇ ସେ ନ ଗଣନ୍ତି କାହାକୁ ।
ଉପାୟ କରଣ ବେଗେ ନିବର୍ତ୍ତି ତାହାଙ୍କ ॥
ସମସ୍ତଙ୍କର ବଚନ ଦେଖି ବେଦପତି ।
କରେ ବ୍ରହ୍ମଶର ଧରି ବାହାର ତତ୍ପତି ॥
ଗୁର ଭୁଜେ ଶର ଗୁର ଭୁଜେ ଧନୁ ଧରି ।
ମହାକୋପେ ବାହାରିଲେ ତହିଁ ମୁଖଗୁର ॥
ବ୍ରହ୍ମାଙ୍କୁ ଦେଖିଣ ଶୁମ୍ଭ ନିଶୁମ୍ଭ ଯେ ବେନି ।
କ୍ରୋଧଭରେ ଉଠିଲେ ସେ କରେ ଶସ୍ତ୍ରଘେନି ॥
ଯହୁଁ ବିଧାତା ଦେଖିଲେ ଅସୁରଙ୍କ ମୂର୍ତ୍ତି ।
ନିଜକ୍ରୋଧ ସମ୍ଭାଳିଣ ହେଲେ ଶାନ୍ତମତି ॥
ବ୍ରହ୍ମାଙ୍କର ଉପରକୁ ଧାଇଁଲେ ଚଣ୍ଡାଳେ ।
ଅକ୍ରୋଷିଣ ପିଣ୍ଟିଲେକ ନେଇ କରବାଳେ ॥
କରବାଳଘାତେ ଅସାଷ୍ଟମ ପିତାମହ ।
କୋପେ ପ୍ରଚଣ୍ଡ ଗଳିତ ସ୍ୱେଦ ସର୍ବକାୟ ॥
କ୍ଷଣକରେ ମୋହ ଛାଡ଼ି ଉଠି ପ୍ରଜାପତି ।
ଦେଖିଲେ ନୟନେ ଶୁମ୍ଭ ନିଶୁମ୍ଭ ଦୁହିନ୍ତି ॥
କହୁଁ ୨ ଧାତାର ଯେ ବଢ଼ ଗରୁ ଚାପ ।
ଶୁମ୍ଭ ନିଶୁମ୍ଭ ଦୁହିଙ୍କି ଦେଲେ ବେଗେ ଶାପ ॥
ଅରେ ମୂର୍ଖବାଇ ମୋତେ ଛିଣ୍ଡି ନ ପାରିଲ ।
ଯେବେ ମୋ ଶରୀରେ କରବାଳ ରେ ମାଇଲ ॥

ଏକକର ଯେବେ ଦେଖ ଅନେକର ଶୀର ।
ତେବେ ଭସ୍ମ ହୋଇଯିବ ତୁମ୍ଭର ଶରୀର ॥
ଶାପ ପାଇକରି ଶୁମ୍ଭ ନିଶୁମ୍ଭ ଯେ ବୀର ।
ପ୍ରଣିପତ୍ୟ ହୋଇଲେ ସେ ପିତାର ପୟର ॥
ତୁହି ଚତୁର୍ମୁଖ ବ୍ରହ୍ମା ସର୍ବ ବର ଦେଇ ।
ଅପାବନ ଲୋକକୁ ତୁ ପାବନ କରାଅ
ହେ ପିତାମହ ଏ କୋପ କରିବାକ ଶାନ୍ତ ।
ଏ ବଚନ ଶୁଣି ଅନ୍ତର୍ଦ୍ଧାନ ବେଦପତି ॥
ଶୂନ୍ୟପୁରୁ ଅସୁରଙ୍କ ଶୁଭିଲା ଶବଦ ।
ଧଲା ଏଥେଁ ରହିଲେକ ଦେବ ପରମାଦ ॥
ଶୁମ୍ଭ ନିଶୁମ୍ଭ ଏ ବେନି କରନ୍ତି ଦଉଡ ।
ପୋଷିଲା ଜୀବକୁ ନାଶ କରନ୍ତି କ ପୁଣି ॥
ବିନମ୍ର ଶୁଣି ପିତାନ ବସିଲା ସନ୍ଦେହେ ।
ସଂଘାତରେ ଶୁମ୍ଭ ନିଶୁମ୍ଭଙ୍କୁ ଦୃଶ୍ୟ ହୁଏ ॥
ଶୁମ୍ଭ ନିଶୁମ୍ଭ ବୋଇଲେ ଶୁଣ ଦେବ ପିତା ।
ବର ପାଇ ଯାଇଥିଲୁ ହୋଇଣ ଅଚିନ୍ତା ॥
ଅଦଭୁତେ ପୁରୁଷେକ ଦେଖିଲୁ ବାଟରେ ।
ମହା ଅବସ୍ଥା ଧରିଛି ସେ ବୃକ୍ଷଶାଖାରେ ॥
ତୁମ୍ଭ ବର ନିନ୍ଦାକରି କହିଲା ବହୁତ ।
ବୋଇଲା ବ୍ରହ୍ମାବରେ ମୁଁ ହେଲି ଏଣ୍ଡସ୍ୱାନ୍ତ ॥
ଗୁରୁଷ୍ଟା ମୁହିଁ ତାହାଙ୍କ ଅସତ୍ୟ ଦେବତା ।
ମିଛୁଅ ଖରିଅ ବଡ଼ ଅଶତ କନ୍ତା ॥
ଶୁମ୍ଭ ନିଶୁମ୍ଭଙ୍କ ମୁଖୁଁ ଏ ବଚନ ଶୁଣି ।
ଧ୍ୟାନେ ପିତା ଜାଣିଲେ ସେ ଅଟେ ଚକ୍ରପାଣି ॥
ଦରହସିତେ ବୋଲନ୍ତି ତହିଁ ପଦ୍ମଯୋନି ।
ଚକ୍ରକୂଟରେତ ପଡ଼ିଗଲ ଭାଇ ବେନି ॥
ବ୍ରହ୍ମା ଈଶ୍ୱର ଯେ ଅମ୍ଭେ ଅଟୁ ବରଦାତା ।
ଶ୍ରୀବିଷ୍ଣୁଙ୍କ ଲୀଳେ ଧିନା ସବୁରି ଚିନ୍ତା ॥
ଅମ୍ଭେତ ତୁମ୍ଭଙ୍କୁ ଦେଲୁ ଅନର୍ଯ୍ୟାପବର ।
ତେଣୁ କରି ବଡ଼ ଚିନ୍ତା କଲେ ଦାମୋଦର ॥
ହେ ଶୁମ୍ଭ ନିଶୁମ୍ଭ ତୁମ୍ଭେ ଅମର ହୋଇବ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଇନ୍ଦ୍ର ସମରେ ଜିଣିବ ॥
ଏ ମଧ୍ୟଭୁବନେ ତୁମ୍ଭେ ଦାନବ ଉତ୍ତମ ।
ସମରେ ଜିଣିବ ତୁମ୍ଭେ ଦେବାସୁର ଯମ ॥
ଅମ୍ଭର ଦେଲା ବର କି ଅନ୍ୟଥା ହୋଇବ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଶ୍ରୀତଙ୍କ ରଖିବ ॥

ତୁମ୍ଭର ମସ୍ତକୁ ଭେଦତ କରିଅଛ ମୁହିଁ ।
ଏକ ବର ଯେବେ ମନ୍ୟ ଟିରେ ଦେବ ନେଇ ॥
ତେବେ ତୁମ୍ଭ ଦୁହଙ୍କର ହୋଇବ ମରଣ ।
ଏମନ୍ତ ବୋଲି କହନ୍ତି ଗୁରୁର ବଦନ ॥
ଶୁଣି ଶୁଣି ଦେବବର ଗଲେ ଅନ୍ତର୍ଦ୍ଧାନେ ।
ପାଇଲେକ ମୃତ୍ୟୁଭେଦ ବିଧାତା ବଚନେ ॥
ଧାତାର ମୁଖେ ଏସନ ବଚନକୁ ଶୁଣି ।
ଚିନ୍ତନ୍ତି କପଟ କଲେ ଚକ୍ରପାଣି ॥
ବାହୁଡ଼ି ଶୁମ୍ଭ ନିଶୁମ୍ଭ ତତକ୍ଷଣେ ଗଲେ ।
କୁଳାବତୀ ପାଟଣାରେ ପ୍ରବେଶ ହୋଇଲେ ॥
ମହା ସମ୍ଭ୍ରମରେ ସେହୁ କରନ୍ତି ଯେ ରାଜ୍ୟ ।
ସର୍ବ ରାଜା ଜିଣି ଭୋଗ କରନ୍ତି ଐଶ୍ୱର୍ଯ୍ୟ ॥
କୁଳାବତୀ ପାଟଣାରେ ହେଲେ ମହାସ୍ୱସ୍ଥେ ।
ସେ ରାଜ୍ୟକୁ ମୈଷା ଦଇତକେ କରି ଯାଏ ॥
ବଜାବନ୍ତି ନାନାବିଧ ବାଦ୍ୟ ଯେ ନିଶାଣ ।
ସଙ୍ଗତେ ଅଛନ୍ତି ବେନିଲକ୍ଷ ନୃପଗଣ ॥
ଯୋଦ୍ଧା ଅମାତ୍ୟଗଣ କେହୁ ପାରେ କଳି ।
ପାଦଘାତେ କମ୍ପମାନ ହୁଏ ମହୀସ୍ଥଳୀ ॥
ଏସ୍ଥାନେ ଶୁମ୍ଭ ନିଶୁମ୍ଭ ଦୁହେଁ ବସିଛନ୍ତି ।
ଚରଗଣେ ଯାଇ ତାଙ୍କ ସମ୍ମୁଖରେ ଜଣାନ୍ତି ॥
ଭୋ ଦେବ ହେ ବୀରବର ପ୍ରତାପୀ ନୃବର ।
ତୁମ୍ଭ ରାଜ୍ୟକୁ ବାହିଲା ମହିଷା ଅସୁର ॥
ମହା ପ୍ରତାପୀ ଅଟଇ ସେ ସିଂହଳ ରାଜା ।
ହରି ଜିଣିଲା କପିଳ ସିଂହର ଅନୁଜା ॥
ହଟକଲା ପଦ୍ମନାଭ ପୁର ତାର ରାଜ ।
ଅନେକ ଦାନବଙ୍କର ଦର୍ପ ରଣେ ଭଞ୍ଜି ॥
କାନ୍ତିମାଳା ମହାବୀର ଚାମର ବେମାଳ ।
ରକ୍ତବୀର୍ଯ୍ୟ ବିଡ଼ାଳାକ୍ଷ ଲୋଚନ ବିଶାଳ ॥
ଏହାଙ୍କର ମୂଳେ ମହା ମହା ବୀର ରହି ।
ନ ଗଣନ୍ତି ଏକେ ଅବକରେ କାହାକୁହିଁ ॥
ମନୋହର ଚରମୁଖେ ଶୁଣିଣ ଏମନ୍ତ ।
ସେ ବେନି ବୋଇଲେ ଦଣ୍ଡ ସାଜ ରେ ତୁରିତ ॥
ରାଜାର ବଚନେ ସଜ ହୋଇଲେ ସଇନ୍ୟ ।
ଅନେକ ଦାନବ ଭରେ କମ୍ପଇ ମେଦିନୀ ॥
ଦ୍ୱି ଲକ୍ଷ ରଥୀ ପଞ୍ଚଶ ଅରବୁଦ ନାଗ ।
ବିଂଶ କ୍ଷୌଣୀ ବଳ ସାତ ବୃନ୍ଦ ଯେ ତୁରଗ ॥
ଏମନ୍ତ ଥାଟ ଘେନି ଶୁମ୍ଭ ନିଶୁମ୍ଭ ଏ ବେନି ।
କଟକରୁ ବାହାରିଲେ କରେ ଶସ୍ତ୍ର ଘେନି ॥
ପଞ୍ଚ ଯୋଜନ ମାଡ଼ିଣ ରହିଲେକ ଥାଟ ।
ମଧ୍ୟ ମହା ଦୈତ୍ୟ ଏକୁଁ ଏକ ଯେ ବଳିଷ୍ଠ ॥
କାଳ ବିକାଳ ନାମରେ ବେନି ସେନାପତି ।
ବାରତା କହିଲେ ଯାଇଁ ମୈଷାସୁର କତି ॥
ଶୁମ୍ଭ ନିଶୁମ୍ଭ ଅସନ୍ତି ପ୍ରବଳେ ସୈନ୍ୟ ଘେନି ।
ବାଦ୍ୟ ମୁଖ ଶବଦରେ କମ୍ପଇ ଧରଣୀ ॥
ଖଡ଼ଗ କୁନ୍ତ ନାରାଚ ଅସିପତ୍ର ଯଷ୍ଟି ।
ଶାବେଳ କୋଦାଳ ଚକ୍ର କୁଠାର ଯେ କାଠି ॥
ତ୍ରେକ୍ଷଣ ଲକ୍ଷ୍ୟ ଘେନି ଅଛନ୍ତି ବୀରେ ।
ସେନାମାନଙ୍କ ଉପମା କେହୁ କହିପାରେ ॥
ତେଖାର ତୁରଗ ବାୟୁଠାରୁ ବେଗେ ଗତି ।
ଧାଉଁଛନ୍ତି ଅରୋହଣ କୋପ କରି ଅତି ॥
ଅସିପତ୍ର ବୁଲାଇଣ ଉଠନ୍ତି ରାଉତେ ।
ବହିରନ୍ତି ଗଜମାନ ଚଳାଇ ମାହୁନ୍ତେ ॥
ହାକନ୍ତି ଦାନବଗଣ ହୋଇ ମହାସୁଖୀ ।
ଦୂରେ ଥାଇ ମୈଷାସୁର ନୟନେ ତା ଦେଖି ॥
ଯହୁଁ ଝାମ୍ପ ଦେଲେ ଶୁମ୍ଭ ନିଶୁମ୍ଭର ବଳ ।
ଅଗୁଆଣି ଥାଟେ ଥିଲେ ଚାମର ବେମାଳ ॥
କାନ୍ତିମାଳା ରକ୍ତବୀର୍ଯ୍ୟ ବିଡ଼ାଳାକ୍ଷ ତିନି ।
ଏକମୁଖରେ ଉଠିଲେ ସୈନ୍ୟମାନ ଘେନି ॥
ଉଭୟ ବଳ ସଇନ ହେଲେ ଭେଟା ଭେଟି ।
ଗଦା ମୁଦ୍ଗର ଚଳେ ହେଲେ ପିଟାପିଟି ॥
ରଣତୋଳ ଧନ୍ଦୋଳ ଯେ ଲାଗିଲା ପ୍ରବଳ ।
ଆକାଶ ଛୁଟିଲେ ହୋଇବାରୁ ମହାଗୋଳ ॥
ଏସନେକ ସମର ଯେ କରନ୍ତି ସଇନ ।
ରାଉତେ ରାଉତ ସଙ୍ଗେ ହେଲେ ଅନ୍ୟୋଅନ୍ୟ ॥
ଶୁମ୍ଭ ନିଶୁମ୍ଭଙ୍କର ଯେ ବେନି ସେନାପତି ।
ବଜ୍ରଅଙ୍ଗ ବୀରଦଣ୍ଡ ନାମରେ ବିଖ୍ୟାତି ॥
ଚାମର ବେମାଳଙ୍କର ସଙ୍ଗେ ସେହୁ ଯାଇ ।
ଘୋର ସମର କରନ୍ତି ଭେଟାଭେଟି ହୋଇ ॥
ବୀରଦଣ୍ଡ ଘେନି ଲୋହସାର ବେନି ଗଦା ।
ମହିଷାସୁର ସଇନ ମାରି କଲା ଚଦା ॥
ବିଶେଷେ ଅର୍ଦ୍ଧ ଯେସନେ ବାହିନ୍ନ ଛତି ।
ମୈଷା ସୈନ୍ୟ ତେସନେକ ବୀରଦଣ୍ଡ ଦେଖି ॥

ସୈନ୍ୟଭଗ୍ନ ଦେଖି ବଜ୍ରାଳାକ୍ଷ କାନ୍ତମାଳା ।
ଖରଦଣ୍ଡ ସନ୍ନିଧିରେ ଯାଇ ହେଲେ ମେଳା ॥
ଲକ୍ଷେକ ନାରାଚ ପୂରଇଣ ବଜ୍ରଖର୍ଯ୍ୟ ।
ବଜ୍ରାଙ୍ଗ ଉପରେ ନେଇ ପକ୍ଟଚଢ଼ ଦନୁଜ ॥
ହାତର ବ୍ୟଗ୍ର ତାଙ୍କର ଦେଖିତ ନ ପାର ।
ଲୋହଶର ଘାତେ ସେହ୍ନ ହ୍ରନ୍ତ ମରମର ॥
ନାରାଚମାନେ ପଡ଼ନ୍ତି ବଜ୍ରାଙ୍ଗର ଅଙ୍ଗ ।
ଉପୁଡ଼ ନାରାଚ ସବୁ ହେଉଛନ୍ତି ଭଙ୍ଗ ॥
ଈଶ୍ୱରଙ୍କୁ ସେବ ସେହ୍ନ ପାଇଅଛି ବର ।
ନାନାଶସ୍ତ୍ର ନ ଭେଦଇ ଶରୀରେ ତାହାର
ଖଡ୍ଗ ନାରାଚ କୁଠାର ପଡ଼ି ହ୍ରନ୍ତ ଭଗ୍ନ ।
ଗିରିବର ସମାନରେ ବଜ୍ରାଙ୍ଗର ଅଙ୍ଗ ॥
ଗୁମର ବେମାଳ ଯୁଦ୍ଧ ଖରଦଣ୍ଡ ଭୁଲେ ।
ନବଲକ୍ଷ ଯୋଦ୍ଧା ଖରଦଣ୍ଡକୁ ବେଢ଼ିଲେ ॥
ଖରଦଣ୍ଡ ତୁଲେ ଛନ୍ତି ପଞ୍ଚଲକ୍ଷ ଯୋଧୀ ।
ସେ ଯୋଦ୍ଧାକୁ ଦଶଲକ୍ଷ ନାରାଚ ସେ ବନ୍ଧ ॥
ରୁଧିରରେ ଜର୍ଜରିତ ହେଲେ ସବୁ ବଳ ।
ତାହା ଦେଖି ଖରଦଣ୍ଡ ଷଣୀ ଅନର୍ଗଳ ॥
କାମ୍ୟକ ନାରାଚ ତାକୁ ଭୃଗୁ ଦେଇଥିଲା ।
ତାହା ଘେନ ମୈଷାସୁର ସୈନ୍ୟକୁ ବିନ୍ଧିଲା ॥
ଏକା ପ୍ରହାରକେ ପଡ଼ିଗଲେ ଲକ୍ଷେ ରଥୀ ।
ରୁଧିରରେ କରଦନ ହେଲା ବସୁମତୀ ॥
ନରେ ଅଗୋଚର ଖରଦଣ୍ଡର ସମର ।
ବୃନ୍ଦାରକବୃନ୍ଦେ ପୁଣି ଲଭେ ଅଗୋଚର ॥
ପଡ଼ନ୍ତି ବେନ୍ନବଳର ସୈନ୍ୟ ଶରଘାଏ ।
ନାରାଚ ଘାତେ ଆକାଶ ଅନ୍ଧକାରମୟେ ।
ଏସନକ ପରକାରେ ହୁଅନ୍ତେ ଅନ୍ୟୋଅନ୍ୟ ।
ଖରଦଣ୍ଡ କରେ ବଜ୍ରାବଳ ଗଦା ଘେନି ॥
କାନ୍ତମାଳା ଉପରକୁ ବେଗେଣ ମାଇଲା ।
ତେତେକ୍ଷେ ଗଦା ଅଙ୍ଗେ ବାଜି ବେଣଖଣ୍ଡ ହେଲା ॥
ପୁଣି ଧାଇଁ ପ୍ରହାର ସେ କଲା ଲୋହଦଣ୍ଡ ।
କାନ୍ତମାଳା ବକ୍ଷସ୍ଥଳେ ପଡ଼ି ହେଲା ଭଙ୍ଗ ॥
କାନ୍ତମାଳା ମାଇଲା ଯେ ଘେନିଣ ମୁଦ୍ଗର ।
ଖରଦଣ୍ଡ ହୃଦସ୍ଥଳେ ବାଜି ହେଲା ଚୂର ॥
ବେଳକୁ ବେଳ ସମର ବଢ଼େ ମହାରୋଳ ।
ବେନ୍ନବଳ ମିଶାମିଶି ହୋଇ କଲେ ଗୋଳ ॥

ପର ଅପଣା ବୋଲି କେ ବାରିଣ ନ ପାରେ ।
ଅପଣା ଅପଣା ମଧ୍ୟେ ହନ୍ତି ମରମର ॥
ମହିଷାସୁର ସଇନ ପଳାଇଲେ ଭଜି ।
ଶୁମ୍ଭ ନିଶୁମ୍ଭ ସଇନ୍ୟ ଗର୍ଜିଲେ ଗଳାଜି ॥
ପାଷପୁଣ୍ୟ ଯାଏ ମୈଷା ସୈନ୍ୟ ପଳାଇଲେ ।
ସମରେ ଅନେକ ସୈନ୍ୟ ନିନ୍ଦି ପଡ଼ିଲେ ॥
ଅନେକ ମାଇଲେ ଶୁମ୍ଭ ନିଶୁମ୍ଭ ଯେ ବେନି ।
ଦଣ୍ଡଭଗ୍ନ ହୋଇଲା ଯେ ମୈଷା ନୃପମଣି ॥
ବିନ୍ଧ୍ୟମାଳ ବନମଧ୍ୟେ ଯାଇଣ ପଶଇ ।
ମହା ବଳଶୁ ଦାନବ ଅସେ ଦୁଃଖ ପାଇ ॥
ମୈଶାସୈନ୍ୟ ବିନ୍ଧ୍ୟମାଳ ପର୍ବତେ ରହିଲେ ।
ଶୁମ୍ଭ ନିଶୁମ୍ଭ ଯେ କୁଳବଟିକ ଚଳଲେ ॥
ଜୟ ତୁ ଜୟ ତୁ ନୀଳ ପର୍ବତନିବାସୀ ।
ମୟୁରପୁଚ୍ଛ ତୋ ଶିରେ ସ୍ଫୁରୁଛର ଶଶି ॥
ନିରାକାର ପୁରୁଷ ତୁ ଭକତ ବତ୍ସଳ ।
ଗୋପେ ଗୋପୀଙ୍କି ରସିଲୁ ହୋଇ ନନ୍ଦଲେଳ ॥
ଏହି ଭବ ଅର୍ଣ୍ଣବକୁ ହୋଇଲା ଅପ୍ରତେ ।
ତୁମ୍ଭ ନାମ ନିବେଦିଲି ଜଟକ୍ଷନ ହିତେ ॥
ଏ ମହାଘୋର ସଂସାରେ କଳକାଳ ଫାଶି ।
ଏଥୁଁ ନେଇ ମୋତେ ଅନଠାରେ ଠାବ ଦେସି ।
ମୁହିଁ ତୋତେ ଛାଡ଼ି ନ ପାରଲି ନଉବେ ।
ମାୟା ମୋହରୁ ଉଦ୍ଧର ଅହେ ବାସୁଦେବେ ॥
ଦିବାସନ ଦେବ ମୁହିଁ ଥାଏ ତୁମ୍ଭ ଅଗେ ।
କଳକାଳୁଁ ତରିବ ମୁଁ ତୁମ୍ଭର ଅଦେଶେ ॥
ବ୍ରହ୍ମା ରୁଦ୍ର ଚନ୍ଦ୍ର ଦିବାକର ବୃନ୍ଦାରକେ ।
ହୋଇ ଯାଅନ୍ତି ମୁକତ ଯାର ପାଦୋଦକେ ॥
ନମାମି ନାରାୟଣ ହେ ଜଟକ୍ଷନ ଦେବ ।
ସମସ୍ତ ଜୀବନ ନାଥ ଏକ ତୋର ଶ୍ରବ ॥
ନୀଳ କମଳ ପରାୟେ ଯାର ମୁଖ ଗୋଷ୍ଠ ।
ତାର ଶ୍ରୀଚରଣେ ମୁହିଁ ଥିବ ନିତ୍ୟ ଖଟ୍ଟ ॥
ଶଙ୍ଖୁଳ ଜନର ନାଥ ପ୍ରଭୁ ପୀତବାସ ।
ହେଉ ମୋତେ ଯେ ଅଦୃଶ୍ୟ ପଦମାନ ଦୃଶ୍ୟ ॥
ଅଜ୍ଞାନୀ ମୂର୍ଖ ଅତି ମୁଁ ଅଟେ ବଡ଼ ଦୋଷୀ ।
ପାଇଲେ ପରମ ଗତି ନିଅ ହୃଷୀକେଶି ॥
ଶ୍ରୀକୃଷ୍ଣଚରଣେ ମୋର ଶତେ ଦଣ୍ଡବତ ।
ସାରଳା ଦାସ କହଇ ଶେଷ ଭାଗବତ ॥

ଅବଦ୍ଧ ବୁଧ ଜନମାନେ ଧରୁବ ଯେ ମନେ ।
ଶ୍ରୀ ଝଙ୍କଡ଼ପୁରବାସୀ ଅମ୍ବା ପରସନ୍ନେ ॥
ଲେଖେ ମୁଁ ଚଣ୍ଡୀପୁରାଣ ଜଗଜ୍ଜନହିତେ ।
ସେ ଦେବୀ ଦୟା ହେବାରୁ ମୋଠାରେ କହିତେ ॥
ବୈକୁଣ୍ଠର ଦ୍ୱାରୀ ଜୟ ବିଜୟ ସେ ବେନି ।
ତାହାଙ୍କ ସ୍ଥାନେ ଭେଟିଲେ ମନୁ ମହାମୁନି ॥
ନିରାକାର ଦେଖିବାକୁ ମନେ କଲେ ଶ୍ରଦ୍ଧା ।
ଜୟ ବିଜୟ ଯେ ଦ୍ୱାର କରିଲେ ନିଷେଧା ॥
କର ପ୍ରସାର କଲ୍ୟାଣ ମନୁ ଋଷି ବୋଲି ।
ଦେଖୁ ଦେଖୁ ଦ୍ୱାରପାଳେ ଦେଲେ ତାଙ୍କୁ ପେଲି
ଜୟ ବିଜୟଙ୍କ କରପଲ୍ଲବର ବାତେ ।
ମନୁ ମହର୍ଷି ଉଡ଼ିଲେ ଗଗନର ପଥେ ॥
ପଡ଼ିଲେକ ମନୁ ନବ ସହସ୍ର ଯୋଜନେ ।
ଭ୍ରମିଲେ ଉନ୍ମନ ହୋଇ ଅତ୍ୟନ୍ତ ଅଜ୍ଞାନେ ॥
ସଚେତ ହୋଇଲେ ଋଷି ଡେଡ଼େଦୂରେ ପଡ଼ି ।
ପୁଣି ବୈକୁଣ୍ଠ ପୁରକୁ ଆଇଲେ ବାହୁଡ଼ି ॥
ବେଦ ଅଧ୍ୟୟନ କରି କଲ୍ୟାଣ ସେ କଲେ ।
ପୁଣି ଜୟ ବିଜୟ ସେ ବହୁତ ଭର୍ତ୍ସିଲେ ॥
କୋପେ ତାଙ୍କୁ ଶାପ ଦେଲେ ବ୍ରହ୍ମାଙ୍କର ପୁତ୍ର ।
ଯେଣୁ ତାଙ୍କର ଦେଖିଲେ ପ୍ରକୃତ ଏମନ୍ତ ॥
ଅରେ ଏ ବୈକୁଣ୍ଠ ପୁରେ ଦ୍ୱାରପାଳ ହୋଇ ।
ଏଡ଼େ ନିର୍ଦ୍ଦୟଚିତ୍ତ ରେ ହୋଇଛ କିପାଇଁ ॥
ମୁହିଁ ବାଳଖିଲ୍ୟା ଯତି କଲ ମୋରେ ତମ ।
ବେଳୁଁ ବେଳ କୋପ କଲେ ସେ ମୁନିସତ୍ତମ ॥
କ୍ରୋଧେ ବୋଇଲେ ରେ ଯେନ ଏ ଶାପ ଅମ୍ଭର ।
ବ୍ରହ୍ମଦୈତ୍ୟ ହୁଅ ବେଗେ ଅରେରେ ପାମର ॥
ମୋର ଶାପେ ତୁମ୍ଭେ ଦୁଃଖ ପାଅ ରେ ଅପାର ।
ଶୁଣି ଜୟ ବିଜୟ ତା ହୋଇଲେ କାତର ॥
ମୁନିଙ୍କି ବିନୟେ ତହୁଁ ବଚନ ପ୍ରକାଶି ।
ବ୍ରହ୍ମାଙ୍କର ପୁତ୍ର ତୁମ୍ଭେ ମନୁ ମହାଋଷି ॥
ନ ଚିହ୍ନି ତୁମ୍ଭଙ୍କୁ ଆମ୍ଭେ କଲୁଁ ବଡ଼ ଦ୍ରୋହ ।
ହେ ମୁନି ଆମ୍ଭଙ୍କୁ ଏବେ ପ୍ରତିକାର କହ ॥
ମନୁ ବୋଇଲେ ରେ ମୋତେ କରିଲ କହାଳ ।
ଅବଶ୍ୟ ଅସୁର ତୁମ୍ଭେ ହେବ ରବତଳ ॥
ପୁଣି ବୋଇଲେ ରେ ତୁମ୍ଭେ ହୋଇଣ ଅସୁର ।
କୃଷ୍ଣେ ବୈରି ହୋଇ ହୁଅ ଶତେଜନ୍ମୁ ପାର ॥
ଶ୍ରୀକୃଷ୍ଣ ସଙ୍ଗତେ ଯେବେ ହୋଇବ ବଇରୀ ।
ତେବେ ଯାଇଁ ମୋର ଶାପୁଁ ଯିବ ରେ ନିସ୍ତରି ॥
ପ୍ରଥମେ ହିରଣ ହିରଣ୍ୟାକ୍ଷ ଯେ ହୋଇବ ।
ଶ୍ରୀବିଷ୍ଣୁ କରରେ ନିଶ୍ଚେ ମରଣ ଲଭିବ ॥
ଦ୍ୱିତୀୟେ ରାବଣ କୁମ୍ଭକର୍ଣ୍ଣ ବୋଲାଇବ ।
ସୀତା ହରଣେ ଶ୍ରୀରାମ କରରେ ମରିବ ॥
ତୃତୀୟରେ ହେବ ଦନ୍ତବକ୍ର ଶିଶୁପାଳ ।
ଚକ୍ରେ ଶିର ଛେଦିବେ ଯେ ପ୍ରଭୁ ଅଦ୍ଦମୂଳ ॥
ରାଜସୂୟ ଯାଗେ ହେବ ରୁକ୍ମିଣୀ ହରଣ ।
ସେ କାଳେ ଚକ୍ରରେ ତୁମ୍ଭେ ଲଭିବ କାରଣ ॥
ତିନିଜନ୍ମେ ମୋର ଶାପୁଁ ପାର ତୁମ୍ଭେ ହୁଅ ।
ପୁଣି ଏଥେ ଦ୍ୱାରପାଳ ରୂପେ ରହିଥାଅ ॥
ଶୁଣ ପରୀକ୍ଷିତ ମନୁଋଷିଙ୍କର ଶାପେ ।
ତତକ୍ଷଣେ ଜନ୍ମିଲେ ସେ ଅସୁର ସ୍ୱରୂପେ ॥
ଦ୍ୱାର ଶୂନ୍ୟ ଯହୁଁ ହେଲା ବୈକୁଣ୍ଠପୁରର ।
ବିଷ୍ଣୁ କୋପ କଲେ ବ୍ରହ୍ମା ତନୟ ଉପର ॥
ଅରେ ଅଳ୍ପଦୋଷେ ଦ୍ୱାରପାଳ ମୋ ନାଶିଲୁ ।
ଯାରେ ମର୍ତ୍ତ୍ୟପୁରେ ନର ହୁଅ ତୁରେ ଖଳୁ ॥
ମନୁ ମହାଋଷି ଶୁଣି ହୋଇଲେ ବିନୟୀ ।
ପିତାର ଆଜ୍ଞାରେ ଦେବ ଆଇଲି ଯେ ମୁହିଁ ॥
ତୁମ୍ଭ ଅଭିଶାପେ ମୁହିଁ ହୋଇବି ମନୁଷ୍ୟ ।
ମୁକତି ପଥକୁ ମୋତେ କହ ଜଗଦୀଶ ॥
ପ୍ରଭୁ ବୋଲନ୍ତି ମନୁଷ୍ୟ ହୋଇବୁ ନିଶ୍ଚୟ ।
ମମ ଲୀଳା କହ ପୁଣି ବୈକୁଣ୍ଠକୁ ପାଅ ॥
ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ସେ ଜନ୍ମରେ ବିଷ୍ଣୁ ଲୀଳା କଲି ପରକାଶ ॥
କାଳେ ସୁପ୍ରସନ୍ନ ମୋତେ ହୋଇଲେ ଅଙ୍ଗିରା ।
ବିଷ୍ଣୁ ଚରିତ କଥନେ ମତି ମୋର ସ୍ଥିର ॥
ଦ୍ୱିତୀୟ ଜନ୍ମରେ ମହାକାଳୀ ନାମେ କବି ।
କଞ୍ଜସବଦନୀ ସୁପ୍ରସନ୍ନ ବାକ୍ୟଦେବୀ ॥
ତୃତୀୟ ଜନ୍ମରେ ହେଲି ଶ୍ରୀ ଶାରଳାଦାସ ।
ଶ୍ରୀ ବିଷ୍ଣୁ ଲୀଳାକୁ ମୁଖେ କରିଲି ଅଭ୍ୟାସ ॥
ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ ।
ତୃତୀୟେ ଲେଖନ କଲି ଶିବଭାଗବତ ॥
ଝଙ୍କଡ଼ପୁର ବାସିନୀ ଶ୍ରୀ ଶାରଳା ଚଣ୍ଡୀ ।
ମୁଖ କମଳ ଯାହାର ସିନ୍ଦୂରରେ ମଣ୍ଡି ॥

ସେ ଦେବୀ ଚରଣତଳେ ନିତ୍ୟ ମୋର ସେବା ।
ଶ୍ରୀ ଶାରଳା ଦାସକୁ ଗୋ ଗତି ମୁକ୍ତି ଦେବା ॥
ଏଥିଅନ୍ତେ ପରୀକ୍ଷିତ ନାମେ ମହାରାଜେ ।
ଶୁକ ମୁନି ଚରଣରେ କରଣ ବିନୟେ ॥
ବୋଲଇ ହେ ମହାମୁନି କର ଅନୁଗ୍ରହ ।
ଭଗବତୀ ପୁରାଣକୁ ମୋର ଅଟଗ କୁହ ॥
ମନୁଷ୍ୟ ଜନ୍ମରୁ ଯେହ୍ନେ ପାଇବି ମୁକତି ।
ତାହା ମୋତେ କହିଦିଅ ଅହେ ମହାଯତି ॥
ଶୁକ ବୋଇଲେ ତୁ ଶୁଣ ପରୀକ୍ଷିତ ରାଜେ ।
ଶ୍ରୀ ଚଣ୍ଡୀ ପୁରାଣ ଶୁଣି ପାପ କର କ୍ଷୟେ ॥
ସେ ଦିନ ରଜନୀ ଯାଇ ହୋଇଲା ପ୍ରଭାତ ।
ସୈନ୍ୟଙ୍କର ଡାକହାକେ ମହୀ ପ୍ରକମ୍ପିତ ॥
ଧର ଧର ମାର ମାର ଓଗାଳ ଓଗାଳ ।
ପିଟ ପିଟ ବାନ୍ଧ ବାନ୍ଧ ପଡ଼ିଲା ଚହଳ ॥
ଶୁମ୍ଭ ନିଶୁମ୍ଭ ଗଡ଼ରୁ ହୋଇଲେ ବାହାର ।
ସଇନ ସଙ୍ଗତେ ଛନ୍ତି ଅପାରୁ ଅପାର ॥
ରେ ରେ କାର ଶବଦରେ ଉଚ୍ଛୁଳେ ଆକାଶ ।
ଅମର ପୁରରେ ଦେବେ ଲଭିଲେକ ତ୍ରାସ ॥
ମୈଷା ସୈନ୍ୟ ବିନ୍ଧ୍ୟମାତ୍ର ବାହାର ହୋଇଲେ ।
ହାବୋଡ଼ା ହାବୋଡ ତହିଁ ବେନିସୈନ୍ୟ ହେଲେ
ବଜ୍ରାଘାତ ସମାନରେ ବିନ୍ଧିଲେକ ଶର ।
ବ୍ରହ୍ମାଣ୍ଡ କମ୍ପଇ କରିବାରୁ ଶବ୍ଦ ଘୋର ॥
ରକ୍ତବୀର୍ଯ୍ୟ ବଡ଼ାଳାକ୍ଷ ଚାମର ବେମାଳ ।
ଧଇଲେ ସେ ଲୌହସାର ଗଦା ମହାମସ୍ତ ॥
ରକ୍ତବୀର୍ଯ୍ୟ କୋପ ଦେଖି ସେ ଶୁମ୍ଭ ନିଶୁମ୍ଭ ।
ତାଙ୍କ ଦିଅନ୍ତି ରେ ଦୈତ୍ୟେ କାହିଁ ପଳାଇବ ॥
ରକ୍ତବୀର୍ଯ୍ୟ ସଙ୍ଗେ ବେନିଭାଇ ଭେଟାଭେଟି ।
ବଜ୍ରାବଳ ଗଦା ଶୁମ୍ଭ ନିଶୁମ୍ଭ ଯେ ପିଟି ॥
ଲୌହସାର ଗଦାବର ଅଶୀସହସ୍ର ଭାର ।
ରକ୍ତବୀର୍ଯ୍ୟ ବକ୍ଷସ୍ଥଳେ ପଡି ହେଲା ଚୂର ॥
ଲକ୍ଷେ ଭାର ଗଦା ଘେନି ରକ୍ତବୀର୍ଯ୍ୟ ପିଟି ।
ଶୁମ୍ଭ ନିଶୁମ୍ଭ ଉପରେ ପଡି ଗୁଣ୍ଡା ଉଠି ॥
ପୁଣି ଯାତକାରେ ରକ୍ତବୀର୍ଯ୍ୟ ଯେ ନିଘଣି ।
ନିଶୁମ୍ଭ ଦଇତକୁ ସେ ଧଇଲା ଅକ୍ଷୋଷି ॥
ମାଲବନ୍ଧେ ଲାଗି ଭୁଜେ ଭୁଜ ଭିଡ଼ାଭିଡ଼ ।
ସମରେ ସେ ବେନି ବୀରେ ହେଲେ ଗଡ଼ାଗଡ଼ ॥

ବେନ୍ତିଁ ୨ ସମର ଯେ ହୋଇ ମହାଘୋର ।
ମହୀ କମ୍ପିଲା ଦେବତା ନୀର ଅଗୋଚର ॥
କେହିତ ସାନ ନୁହନ୍ତି ସମାନ ସେ ଦୁହେଁ ।
ବନ ଗିରି ପୃଷ୍ଠ ହେଉଛନ୍ତି ପଡ଼ି ବାହେ ॥
ହୁଙ୍କାର ଶବ୍ଦେ କମ୍ପଇ ଚତୁର୍ଦ୍ଦଶ ପୁର ।
ଯାମଳା ବୃକ୍ଷ ପରାଏ ଦୁହିଙ୍କ ଶରୀର ॥
କୋପରେ ନିଶୁମ୍ଭ ରକ୍ତବୀର୍ଯ୍ୟକୁ ପାଡିଲା ।
ବଜ୍ରାଘାତ ଜାଣି ତାକୁ ବିଦ୍ଧାଏ ମାଇଲା ॥
ତେତେବେଳେ ବୀର ଯୋଦ୍ଧା ଅତି ବଳବାନ ।
ନିଶୁମ୍ଭ ବିଦ୍ଧାଘାତରେ ହେଲା ଅଚେତନ ॥
ଲକ୍ଷେ ଲକ୍ଷେ ଭାର ବେନି କରେ ଗଦା ଘେନି ।
କୋପରେ ଉଠିଲେ ଶୁମ୍ଭ ନିଶୁମ୍ଭ ଯେ ବେନି ॥
ମହିଷାସୁର ସଇନ ଉପରେଣ ପିଟି ।
ବାତଘାତେ ରମ୍ଭାବନ ପ୍ରାଏ ସୈନ୍ୟ ଲୋଟି ॥
ଶୁମ୍ଭ ନିଶୁମ୍ଭ ଆଗରେ ଚାମର ବେମାଳ ।
ଭେଟିଣ ସେ ଯୁଦ୍ଧ କଲେ ଷଢୀ ଅନର୍ଗଳ ॥
ମହାଭମ୍ଭୁଙ୍କର ରଣ କଲେ ସେହ୍ନ ମିଳ ।
ଚାମର ବେମାଳ ମୋହେ ମହୀପରେ ଢଳ ॥
ଶୁମ୍ଭ ନିଶୁମ୍ଭ ଅକ୍ଷୋଷି ଗଦା ଘେନି ପିଟି ।
ଗଦାଘାତେ ବେନି ବୀରେ ଭୂମିପରେ ଲୋଟି ॥
ଚାମର ବେମାଳ ମୋହ ଦେଖି କାନ୍ତିମାଳା ।
ଶୁମ୍ଭ ନିଶୁମ୍ଭଙ୍କ ଚୁଲେ ସମର ସେ କଲା ॥
ଲକ୍ଷେ କୋଟିଏ ଅର୍ବୁଦ ପ୍ରହାରିଲା ଶର ।
ଶୁମ୍ଭ ନିଶୁମ୍ଭ ଅଙ୍ଗରେ ପଡି ହେଲା ଚୂର ॥
ଲକ୍ଷେ ଭାର ଗଦା ଘେନି ଶୁମ୍ଭ ବେଗେ ପିଟି ।
ବଞ୍ଚାଇ ନ ପାରି କାନ୍ତିମାଳା ମହୀ ଲୋଟି ॥
କାନ୍ତିମାଳାର ଅବସ୍ଥା ଦେଖିଣ ମହିଷା ।
କୋପେଣ ଧାଇଁଲା ଛାଡ଼ି ଜୀବନର ଆଶା ॥
ମହିଷାକୁ ଦେଖି ଶୁମ୍ଭ ଦାନବ ଯେ କୋପୀ ।
ମନ୍ଦର ସମାନେ କାଯ୍ୟ କଲା କାମରୂପୀ ॥
ଯୋଜନେ ୨ ଲମ୍ବ କଲା ବେନି ବାହୁ ।
ସୂର୍ଯ୍ୟଙ୍କୁ ଦେଖିଣ ଯେହ୍ନେ ଘୋଟିଯାଏ ରାହୁ ॥
ତେସନେ ମହିଷାସୁର ଘେରେ ମହାବଳା ।
ଧାଇଁଣ ମହିଷାସୁର ତାହାକୁ ଘୋଟିଲା ॥
ଜମ୍ବୁଫିଦ ବଜ୍ରଫିଦ ମହିଷା ଅସୁର ।
ଶୁମ୍ଭ ନିଶୁମ୍ଭର ଚୁଲେ ରଣ ମହାଘୋର ॥

ଲୌହର ଧନୁଏ କରେ ଧାରଣ ଦେବୀର ।
ଲୌହର ନାରାଚ ବନ୍ଧେ କ୍ରୋଧେ ଲକ୍ଷ ଶୂର ।
ଶରବୃଷ୍ଟି ଦେଖିଣ ମହିଷାସୁରର ।
ଶୁମ୍ଭ ନିଶୁମ୍ଭ ପ୍ରଶଂସା କଲେ ଅପାର ॥
ଧନ୍ୟ ଧନ୍ୟ କ୍ଷତ୍ରିପଣ ଅଟଇ ତୋହର ।
କେଉଁ ଦେଶେ ଜନମ ତୁ କାହାର କୁମର ॥
ମହିଷାସୁର ଯେତେ ଶର କରଇ ପ୍ରହାର ।
ନିଶୁମ୍ଭ ଅଙ୍ଗରେ ପଡ଼ି ହୁଏ ସବୁ ଚୂର ॥
ଶର ବାଜନ୍ତେ ନିଶୁମ୍ଭ ଅତ୍ୟନ୍ତ ପ୍ରଜ୍ୱଳ ।
ଧାମେ ବେନି କରେ ବେନି ଗଦାବର ତୋଳ ॥
ମହିଷାସୁର ରଥରେ ନେଇ ସେ ପିଟଇ ।
ଗଦାଘାତେ ମହିଷା ରଥ ଗୁଣ୍ଡା ହୋଇ ॥
ରଥ ଭାଜନ୍ତେ ମହିଷାସୁର ପାଦଗତି ।
କୋପକରି ବୁଲାଇଲା ସେ ବଜ୍ର ଶକତି ॥
ଗଦା ବୁଲାବନ୍ତେ କମ୍ପି ଉଠଇ ମେଦିନୀ ।
ଆକାଶରେ କମ୍ପମାନ ଦେବ ସଦ୍‌ଯୋନି ॥
ଶକତିକି ବୁଲାଇଣ ମହିଷା ଦଇତ ।
ନିଶୁମ୍ଭ ଉପରେ ନେଇ ପହୁଟେଡ଼ି ତୁରିତ ॥
ଶକ୍ତି ଆସନ୍ତେ ନିଶୁମ୍ଭ ପାତେ ଭୁଜଦଣ୍ଡ ।
ଭୁଜେ ଶକତି ବାଜିଣ ହେଲା ବେନି ଖଣ୍ଡ ॥
କୋଟି କୋଟି ବଜ୍ର କିବା ପଡ଼େ ମେରୁମୁଣ୍ଡ ।
ଶବ୍ଦେକ କଲା ସେହି ସପତ ବ୍ରହ୍ମାଣ୍ଡ ॥
ଶୂନ୍ୟହସ୍ତ ହୋଇଣ ଯେ ମହିଷା ଦୂରଇ ।
ରହ ରହ ବୋଲି ଶୁମ୍ଭ ଦଇତ ବୋଲଇ ॥
ଲୌହଶର ଗଦା ଘେନି ଶୁମ୍ଭ ପହୁଡ଼ନ୍ତେ ।
ତ୍ରାସେ ମହିଷା ଚରଣ ଧରେ ବେଗେ ଦନ୍ତେ ॥
କାକୁସ୍ଥ ଶରଣ ଦେଖି ବୋଲଇ ଯେ ଶୁମ୍ଭ ।
ଦେଖ ଦେଖ ଭାଇ ପାପୀ ହେଲାଣି ଅଦମ୍ଭ ॥
ଭୂମିରେ ଚରଣ ଧରି ମାଗଇ ଶରଣ ।
ଏହାରି ସଙ୍ଗତେ ଅଉ ନ କର ହେ ରଣ ॥
ଶୁମ୍ଭ ଦଇତ ପଚାରେ ତୁ କେବଣ ଦେଶୀ ।
କିମ୍ଭୂତ କାରଣେ ଅମ୍ଭ ରାଜ୍ୟେ ଆସି ପଶି ॥
ଏ କୁଳବତୀ ପାଟଣା ଅଜେୟ ନଗର ।
ଯମ ଅଗ୍ନି ବାୟୁ ଯହିଁ ପଶିତ ନ ପାର ॥
କିମ୍ଭୂତ କାରଣେ ତୋର ଏତେକ ଭରସା ।
ବିନୟ ହୋଇଣ ତାକୁ କହଇ ମହିଷା ॥

ଶୁଣ ଅହେ ମହାବୀର ଏ ମୋହର ବାଣୀ ।
ତୋହର ଆଗେ ସ୍ୱରୂପ କହୁଛି ଏଷଣି ॥
ମୋହର ରାଜ୍ୟ ସିଂହଳ ଦ୍ୱୀପ ନାମେ ପୃଥ୍ୱୀ ।
ଦ୍ୱୀପ ସମସ୍ତ ଯୋଜନେ ମୁହିଁ ଚକ୍ରବର୍ତ୍ତୀ ॥
କ୍ରୌଞ୍ଚଦ୍ୱୀପ କୁଶଦ୍ୱୀପ ଚନ୍ଦ୍ରଦ୍ୱୀପ ଜିଣି ।
ଏ ଦ୍ୱୀପ ନୃପତିଗଣ ଖଟାଇଲି ଆଣି ॥
ଚଣ୍ଡ ମୁଣ୍ଡ ରକ୍ତବୀର୍ଯ୍ୟ ଚାମର ଓବମାଳ ।
ବିଡ଼ାଳାକ୍ଷ ବୀରଦଣ୍ଡ ପୁଣି କାନ୍ତମାଳ ॥
ଦ୍ୱୀପମାନଙ୍କର ଯେତେ ଅଟନ୍ତି ନୃପତି ।
ମୋତେ ସେବା କଲେ ସେହି ହୋଇଣ ଭକତି ॥
ଚତୁରଙ୍ଗ ବଳ ଘେନି ପାଦେ ଛନ୍ତି ଖଟି ।
ବ୍ରହ୍ମାର ବରେ ମୁହିଁତ କଷା ଜଗକୋଟି ॥
ଏକ ଦିନକରେ ଜାଣ ନାରଦ ମହର୍ଷି ।
ପ୍ରୀତି ବଚନ ମୋତେ ସେ କହିଲେ ଆସି ॥
ଜମ୍ବୁଦ୍ୱୀପ ପୃଥ୍ୱୀସାର ବୋଲିଣ ବୋଇଲେ ।
ଦେବତାଙ୍କ ଯୋଗ୍ୟ ସ୍ଥାନ ବୋଲିଣ କହିଲେ ॥
ତାଙ୍କ ବାଣୀ ଶୁଣି ଦଣ୍ଡ ସାଜ ମୁଁ ଅଇଲି ।
କର୍ମ ଅବଳରେ ତୁମ୍ଭ ତୁଲେ ରଣ କଲି ॥
ଅନେକ ନୃପତି ଜିଣିଥିଲି ବାହୁବଳେ ।
ତୁମ୍ଭ ତୁଲ୍ୟ କ୍ଷତ୍ରୀ ନାହିଁ କେହି ରବିତଳେ ॥
ଭୋଗପୁର ବୋଲି ଏଥେଁ କରିଲି ମୁଁ ଇଚ୍ଛା ।
ତୁ ମହାପ୍ରଭୁ ପୁରାଅ ମୋର ମନୋବାଞ୍ଛା ॥
ଅନେକ ବିନୟେ ବୋଲେ ମହିଷା ନୃପତି ।
ଶୁଣି ଶାନ୍ତ ହେଲା ମହାଦାସର ଯେ ନାତି ॥
ବିନୟ ଦେଖିଣ ବୀର କୋପ ସଂହରିଲା ।
ମହିଷାସୁରକୁ ଆସି ଶୁମ୍ଭ କୋଳ କଲା ॥
ମହିଷାସୁର ସଇନ ଘେନି ସେ ଆପଣେ ।
କୁଳବାଟରେ ପ୍ରବେଶ ହେଲା ତତକ୍ଷଣେ ॥
ଶୁଣ ବତ୍ସ ବୋଲନ୍ତି ଯେ ଶୁକ ମହାତମା ।
ଶୁମ୍ଭ ନିଶୁମ୍ଭଙ୍କର ଯେ ବଡ଼ାଇ ମହିମା ॥
ଯନ୍ତର ଟେବଛ ମହିଷାସୁରର ସଇନ ।
ସମ୍ମାର୍ଜନା କଲେ ଶୁମ୍ଭ ନିଶୁମ୍ଭ ଯେ ବେନି ॥
ଯଥା ବିଧି ପ୍ରମାଣରେ ପାନଦ ଭୋଜନ ।
ଦେଲେ ସନ୍ତୋଷ ହୋଇଲେ ମହିଷା ସଇନ ॥
ଭୁଞ୍ଜି ପାର ରାଜାଗଣ ବସି ଏକସ୍ଥାନେ ।
ପଟୁଆସ ହୋଇଲେକ ସକଳ ସଇନେ ॥

ଅଳପ ହସିଣ ଶୁମ୍ଭ ନିଶୁମ୍ଭ ଏ ବଚନ ।
ମହିଷାସୁରଙ୍କୁ ଧୀରେ କହନ୍ତି ଯେ ବାଣୀ ॥
ଅହୋ ନୃପତି ତୁ ଯେବେ କଲୁ ସେବା ଇଚ୍ଛା ।
ମାଗ ମାଗ ଯେ ତୋହର ଅଛି ମନବାଞ୍ଛା ॥
ମହିଷା ବୋଲେ ପ୍ରସନ୍ନ ହେଲ ଯେବେ ମୋତେ
ମାଗୁଅଛି ଏହି କଥା ଦିଅ ସ୍ୱଚ୍ଛ ଚିତ୍ତେ ॥
ତୁମ୍ଭେ ଯେ ମହତ ଜନ ହୋଇବା ପୀରତି ।
କେଳାବଳୀ ନଗ୍ରେ ମୋତେ କରିବା ନୃପତି ॥
ଏଥି ମୋତେ ତୁମ୍ଭେ ଆପେ କର ରାଜଭୋଗ ।
ତୁମ୍ଭ ପ୍ରସନ୍ନେ ପାଇବି ଅଇଶ୍ୱର୍ଯ୍ୟଯୋଗ ॥
ଶୁମ୍ଭ ନିଶୁମ୍ଭ ବୋଇଲେ ମାଗିଲୁ ଯେ ପଦ ।
ସୁଖେ ଭୋଗ କରୁଥାଅ ଆମ୍ଭର ସମ୍ପଦ ॥
ଶୁଣ ହୋ ପରୀକ୍ଷ ରାଜା ବୋଲେ ଶୁକ ବ୍ରହ୍ମା ।
ମହିଷା ମାଣ୍ଡବସିଲା କେଳାବଳୀ ସୀମା ॥
କେବଳ ମହିଷା ରାଜ୍ୟ ଭୋଗ କରୁଥାଇ ।
ଶୁମ୍ଭ ନିଶୁମ୍ଭର ଆଜ୍ଞା ରାଜ୍ୟରେ ଫେରଇ ॥
ସିଂହଳଦ୍ୱୀପ ସହିତ ଜମ୍ବୁଦ୍ୱୀପ ସୈନ୍ୟ ।
ବନ୍ଧୁବାନ୍ଧବ ହୋଇଲେ ନୋହି ଅନ୍ୟୋଅନ୍ୟ ॥
ଶୁମ୍ଭ ନିଶୁମ୍ଭ ମହିଷାସୁର ଆଠେ ଭଡ ।
ଯେ ଭୂମି ଅସାଧ୍ୟ ତହିଁ ଦେଉଥାନ୍ତି ଧାଡ଼ି ॥
ଜିଣି ପାରନ୍ତି ନିମିଷମାତ୍ରେ ସମସ୍ତଙ୍କୁ ।
ବଶାଗତେ ଷଡ଼ଙ୍ଗୀ ଯେ ଅସୁରଙ୍କ ଥାଟ ॥
ଲକ୍ଷେ ରାଜା ବସନ୍ତି ସେ ଜମ୍ବୁଦ୍ୱୀପ ପୃଥ୍ୱୀ ।
ସବୁ ସାଧି କଲେ ଶୁମ୍ଭ ନିଶୁମ୍ଭ ଯେ ଷଢ଼ୀ ॥
ଉତ୍ତରେ ଶୁମ୍ଭ ନିଶୁମ୍ଭ ବେନି ମହାବୀର ।
ଦକ୍ଷିଣ ଦିଗକୁ ରକ୍ତବୀର୍ଯ୍ୟ ଧନୁର୍ଦ୍ଧର ॥
ପଶ୍ଚିମେ ଧୂମ୍ର ଅଉ ବେମାଳ ଏ ବେନି ।
ସଙ୍ଗ ଖରଧଣ୍ଡ ଚଳେ ଘେନିଣ ସଇନ ॥
ଏମନ୍ତେ ଗୁରୁଦିଗକୁ ସୈନ୍ୟମାନ ଘେନି ।
କ୍ଷଣତ ମାତ୍ରକେ ସାଧି କରିଲେ ମେଦିନୀ ॥
ବାରଂବାର ପରଯ୍ୟେ ଯେ ଅକଳିତ ବଳ ।
ଦୈତ୍ୟଙ୍କ ପାଦରେ ମହୀ ହୁଏ ଟଳମଳ ॥
ଭସ୍ମରେ ଆପଦମାନ ନ ପଡ଼େ ସେ ପୁଣି ।
ଯମ ଅଗ୍ନି ବାୟୁ ତହିଁ ପଶିତ ନ ପାରି ॥
ଅନେକ ବୃଦ୍ଧି ହୋଇଲେ ତହିଁ ଦୈତ୍ୟବଳ ।
ମହାଭୟ ପାଇଲେ ଯେ ଦେବତା ସକଳ ॥

ଦିନ ବଡ଼େ କରିଣ ସେ ସମସ୍ତ ସାଧିଲେ ।
ରାଜଭୋଗ ପାଇ ସୁଖୀ ହୋଇଣ ରହିଲେ ॥
ଦଣ୍ଡ ପ୍ରଣାମ କରନ୍ତେ ଦେବୀ ବସୁମତୀ ।
ଅସମ୍ଭାଳ ହୋଇ ରକ୍ତ କରଇ ସେ ବାନ୍ତି ॥
ଶୁକ ବୋଲନ୍ତି ହୋ ଶୁଣ ପରୀକ୍ଷିତ ରାଜା ।
ତିନି ଭୁବନରେ ଦୈତ୍ୟେ ପାଇଲେକ ପୂଜା ॥
ଶୁମ୍ଭ ନିଶୁମ୍ଭ ଆସ୍ଥାନ ପରେ ବସିଥିଲେ ।
ଦିନେ ନାରଦ ମହର୍ଷି ତହିଁ ବିଜେ କଲେ ॥
ଦଇତେ ଦେବ ଡଗର ସେ ନାରଦ ମୁନି ।
ନୃତ୍ୟ ରଙ୍ଗରେ ମୋହନ୍ତି ଦେବ ପଦ୍ମଯୋନି ॥
ମିଥ୍ୟା ନ କହିଣ ସତ୍ୟ ବଚନ ସେ କହି ।
ସତ୍ୟ କହିଲେ କାହାକୁ ତାହା ନ ଯୋଗାଇ ॥
ନ ଜାଣିବା ଲୋକେ ବୋଲୁଥାନ୍ତି ଭଣ୍ଡ ପୁଣ ।
ଗୁଣ ଘେନି ପୂଜ୍ୟ ସେହି ବ୍ରହ୍ମାଣ୍ଡ ମଧ୍ୟେଣ ॥
ନମସ୍ତେ ତୁ ନାରାୟଣ ନରକୁ ତାରନ୍ତା ।
ସ୍ଥିତି ସଂହାରକାରକ ପୃଥ୍ୱୀ ଉଦ୍ଧାରନ୍ତା ॥
ଯାବତ ଜୀବନର ତୁ ଅଟ ପଞ୍ଚଭୂତ ।
ଯୋଗୀଜନମାନଙ୍କର ତୁ ସେ ପରମାର୍ଥ ॥
ମହାବ୍ରହ୍ମ ରୂପ ତୋର ଜଗତରେ ପୂର୍ଣ୍ଣ ।
କଉତୁକେ ରଚିଅଛୁ ଏ ମିଥ୍ୟା ଭୁବନ ॥
ସ୍ୱାମି ତୁହି ଯାହା କହୁ ବ୍ରହ୍ମା ତା ଶୁଣଇ ।
ତହିଁ ନାରଦ ଶୁଣିଣ ବ୍ୟାସଙ୍କୁ କହଇ ॥
ବ୍ୟାସଙ୍କ ମୁଖୁଁ ଶୁଣନ୍ତି ତାହା ସର୍ବ ଋଷି ।
ଜ୍ଞାନ ପାଇଣ ସେ ବ୍ୟକ୍ତ କରନ୍ତି ସେ ଅସି ॥
ତୁ ପରମ ନିରାକୁଳ ତୋର ମହାବୁଦ୍ଧି ।
ଜଗନ୍ନାଥ ନାଥ ତୁ ଯେ ଜାଣୁ ବୃଦ୍ଧି ସିଦ୍ଧି ॥
ଯୁକତେ ଏ କଳିଯୁଗ କଳିହ ବୋଲାଇ ।
ସକଳ କଳାକୁ ଘେନି କଳାବର୍ଣ୍ଣ ବହି ॥
ଜଗତର ଧାରଣ ଯେ ରାମ ନାମ ଗୋଟି ।
ହୃଦେ ଭାବ ଜନେ କଳିକାଳ ଯାଉ ଫିଟି ॥
ଝଙ୍କଡ଼ପୁରବାସିନୀ ଶ୍ରୀ ଶାରଳା ଚଣ୍ଡୀ ।
ତାଙ୍କ ପାଦରଜ ମୋର ମସ୍ତକରେ ମଣ୍ଡି ॥
ପ୍ରସନ୍ନ ହୋଇଣ ମୋତେ କହନ୍ତି ଯେ ବାଣୀ ।
ମୁଁ ତାହା ଲେଖି ପଢ଼ାଏ ସଭରେ ତକ୍ଷଣି ॥
ସେ ସର୍ବମଙ୍ଗଳା ପାଦପଦ୍ମ ନିତ୍ୟ ସେବି ।
ଜଗତରେ ବୋଲାଇଲୁ ଏକଗୋଟି କବି ॥

ଅନ୍ୟେ ବୁଧଜନମାନେ ନ ଧରିବ ଦୋଷ ।
ସକଳ ଝଂଘଟ୍ଟା ସାର ରାମ ନାମ ଘୋଷ ॥



### ଇନ୍ଦ୍ର ନିକଟକୁ ଶୁମ୍ଭ ନିଶୁମ୍ଭଙ୍କର ଚିଟାଉ ଓ ଅନ୍ଧକାସୁରର ବିବରଣ ।

ଶୁକମୁନି ବକତା ଯେ ପରୀକ୍ଷିତ ଶ୍ରୋତା ।
ଅତି ବିଚିତ୍ର ଅଟଇ ଚଣ୍ଡୀଙ୍କ କଥା ॥
ନାରଦଙ୍କୁ ଦେଖିଣ ସେ ଅସୁର ସକଳ ।
ଅର୍ଚ୍ଚନା ବନ୍ଦନା କଲେ ତାଙ୍କ ପାଦ ବେନି ॥
ବସିଲେ ସେ ମହାମୁନି ପାଦ୍ୟ ଅର୍ଘ୍ୟ ପାଇ ।
କଲ୍ୟାଣ ବାଞ୍ଛା କରିଲେ ସେ ତପୀ ଗୋସାଇଁ ॥
ଶୁମ୍ଭ ନିଶୁମ୍ଭଙ୍କୁ ଚାହିଁ ବୋଲନ୍ତି ନାରଦେ ।
ତୁମ୍ଭ ତୁଲ୍ୟ ବଳୀ ନାହିଁ ଜଗତର ମଧ୍ୟେ ॥
ସମସ୍ତ କୁଶଳ ପଚାରନ୍ତି ବ୍ରହ୍ମଋଷି ।
ଅସୁର ଭୁବନ ବୁଲି ଦେଖିଣ ପ୍ରଶଂସି ॥
ନାରଦ ବୋଇଲେ ଶୁଣ ହେ ଶୁମ୍ଭ ନିଶୁମ୍ଭ ।
ତୋର ଭୁବନକୁ ସମ ଅଳକା ନ ହେବ ॥
ଯେତେ ସମ୍ପଦ ଦେଖିଲି ଏ ତୁମ୍ଭର ପୁରୀ ।
ଅମରପୁର ଏଥକୁ ପଟାନ୍ତର କରି ॥
ପଶ୍ଚିମେ ସିଂହଳ ଗିରି ପୂର୍ବେ ଋଷ୍ୟ ଗିରି ।
ଦକ୍ଷିଣେ କୁଣ୍ଡଳ ଗିରି ବାମେ ବିନ୍ଧ୍ୟଗିରି ॥
ଏ ଗୁରୁ ପର୍ବତ ଅଛି ଆକାଶକୁ ଭେଦି ।
ବହଇ କଣ୍ଠଭଦ୍ର ବ୍ରହ୍ମଭୋଗ ନଦୀ ॥
ପୁଣି ବୋଇଲେ ଦୈତ୍ୟଙ୍କ ନଗରୀକୁ ଚାହିଁ ।
ତୁମ୍ଭ ହେତୁ ସିନା ବାବୁ ଏ କଥା ହୁଅଇ ॥
ଏସନେକ ଭୁବନକୁ ତୁଲ୍ୟ ଆଉ ନାହିଁ ।
ବଢ଼ାଇ ହରଷ ଅମ୍ଭେ ହେଉଅଛୁଁ ଚାହିଁ ॥
ଦେବତାଙ୍କର ନଗର ପୁରୀ ବାରବତୀ ।
ତହିଁକି ଅଳ୍ପ ଅନ୍ତର ଏହି ଜେନାବତୀ ॥
ସ୍ୱର୍ଗକୁ ପଟାନ୍ତର ବା ହୁଅନ୍ତା ଭୁବନ ।
ଗୁରୁ ପଦାର୍ଥ ମାନଙ୍କ ନାହିଁ ଏଥି ସ୍ଥାନ ॥
ଏହା ଶୁଣିକରି ଶୁମ୍ଭ ନିଶୁମ୍ଭ ପୁଛନ୍ତି ।
ମୁନି କେଉଁ କେଉଁ ଦ୍ରବ୍ୟମାନ ନାହିଁ ଏଥି ॥
ଯେବଣ ଯେବଣ ଦ୍ରବ୍ୟମାନ ଏଥି ନାହିଁ ।
ହେ ନାରଦ ମହାମୁନି କହ ଦୟା ବହି ॥

ନାରଦ ବୋଇଲେ ବାବୁ ଶୁଣ ମୋ ଉତ୍ତର ।
ଯେଉଁ ଯେଉଁ ଗୁରୁ ଦ୍ରବ୍ୟ ନାହିଁ ଏହିପୁର ॥
ଇନ୍ଦ୍ର ଦେବତାର ଯେଉଁ ଐରାବତ ହସ୍ତୀ ।
ଆଉର ଅପୂର୍ବ ରମ୍ଭା ନାମରେ ଯୁବତୀ ॥
ଉଚ୍ଚୈଃଶ୍ରବା ଅଶ୍ୱ ଆଉ ପାରିଜାତ ତରୁ ।
ଏତେକ ଅପୂର୍ବ ଦ୍ରବ୍ୟ ଅମ୍ଭେ ହୋ ବରିରୁଁ ॥
ନାରଦ ବାକ୍ୟେ ବୋଲନ୍ତି ସେ ଶୁମ୍ଭ ନିଶୁମ୍ଭ ।
ଅମ୍ଭର ଏ ବାହୁବଳେ ସାଧିକଲୁଁ ସର୍ବ ॥
ଅମ୍ଭର ନାମ ଜଗତେ କେହି ନାହିଁ ଜାଣି ।
ଥାରବରପଣେ ଅମ୍ଭ ନାମ ଏ ଧରଣୀ ॥
ତୁମ୍ଭ ଅଜ୍ଞା ପ୍ରମାଣେ ସେ ମିଳିବ ଅମ୍ଭଙ୍କୁ ।
ଶୁଣିଣ ନାରଦ ଗଲେ ଅମର ପୁରକୁ ॥
ତହୁଁ ଶୁମ୍ଭ ନିଶୁମ୍ଭ ଯେ ହୋଇ କୋପମୂର୍ତ୍ତି ।
ସ୍ୱର୍ଗପୁର ଇନ୍ଦ୍ରକୁ ସେ ଶ୍ରୀମୁଖ ଲେଖନ୍ତି ॥
ପ୍ରଥମେ ଲେଖିଲେ ଚିଟାଉର ଆଦ୍ୟ ଏତେ ।
ଶ୍ରୀ ଜଗତର କରତା ଚରଣେ ନମସ୍ତେ ॥
ଶ୍ରୀ ପିତାମହ ଚରଣେ ନମସ୍ତେ ନମସ୍ତେ ।
ଏ ଉତ୍ତାରୁ ଲେଖନ୍ତି ସେ ତହୁଁ ଭାଷା ଯେତେ ॥
ଆଦି ଅନାଦି ଦେବ ଶ୍ରୀ କଶ୍ୟପଙ୍କ ଗୋଷ୍ଠୀ ।
ସିଂହିକା କୁମାର ରାହୁ ବଂଶରେ ପ୍ରତିପ୍ତି ॥
ଅନୁଗତ ଜନଙ୍କର ଆନନ୍ଦ ପ୍ରଦାତା ।
ଅଧମ ଉଦ୍ଧାରଣ ଏ ଜଗତ କରତା ॥
ଚତୁର୍ଦ୍ଦଶ ଭୁବନର ମଣ୍ଡଳାଧିପତି ।
ଶିବ ବ୍ରହ୍ମାବରେ ଯାର ଅତ୍ୟନ୍ତ ପୀରତି ॥
ତିନି ଭୁବନ ପୁରକୁ ଯେ ବଜ୍ର କପାଟ ।
ସେହି ସିଂହଳ ଦ୍ୱୀପର ଅଟେ ସମରାଟ ॥
ମହୀମଣ୍ଡଳରେ ଜତା ପ୍ରାକର୍ମରେ କର୍ତ୍ତା ।
ସୁନ୍ଦରୀ ମନୋରଞ୍ଜନ ରତିରସେ ଜତା ॥
ଦେବଲୋକ ନରଲୋକ ରାକ୍ଷସ କିନ୍ନର ।
ନାଗଲୋକ ଗ୍ରହଗଣ ଋକ୍ଷ ଯେ ବାନର ॥
ଗନ୍ଧର୍ବଲୋକ ଯେ ଯକ୍ଷଲୋକ ଯମଲୋକ ।
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଏଥିରେ ଯେତେକ ॥
ଆଉର ସିଦ୍ଧ ଲୋକହିଁ ଛନ୍ତି ଯେତେ ଭଲ ।
ଏ ଲୋକମାନଙ୍କର ଯେ ଅଟେ ଉର ଶଲ ॥
ଜମ୍ବୁଦ୍ୱୀପ ପ୍ଲକ୍ଷଦ୍ୱୀପ ପୁଣି କୁଶଦ୍ୱୀପ ।
କ୍ରୌଞ୍ଚଦ୍ୱୀପ ଶାକଦ୍ୱୀପ ଯେ ଶାଲ୍ମଳିଦ୍ୱୀପ ॥

ପୁଷ୍କର ଦ୍ୱୀପାନ୍ତ ଏହୁ ସପ୍ତଦ୍ୱୀପ ଯେତେ ।
ସିଂହଳ ଦ୍ୱୀପ ଯେ ଚନ୍ଦ୍ରଦ୍ୱୀପ ନୈକ ପୁଣି ॥
ପାରଦ୍ୱୀପ ବହୁଦ୍ୱୀପ ପଦ୍ମଦ୍ୱୀପ ପର ।
ଏତେ ଏତେ ଦ୍ୱୀପମାନ ଯେହ୍ନୁ ସାଧ କର ॥
ଲବଣେକ୍ଷୁ ସୁରା ସର୍ପି ଦଧି ଦୁଗ୍ଧ ଜଳ ।
ଏ ସାତସିନ୍ଧୁ ହୁଅଇ ଯାକୁ ଏକଚଳ ॥
ଏତେ ଦ୍ୱୀପ ଏତେ ସିନ୍ଧୁ ସ୍ଥିତ ଲୋକଗଣ ।
ଯାହାର ଚରଣ ତଳେ ପଶନ୍ତି ଶରଣ ॥
ରକ୍ତବୀର୍ଯ୍ୟ ବୀରଘଣ୍ଟ ଗୃମର ବେମାଳ ।
ଧୂମ୍ର ଲୋଚନ ଯେ ଚଣ୍ଡମୁଣ୍ଡ କାନ୍ତମାଳ ॥
ଶୁମ୍ଭ ନିଶୁମ୍ଭ ଯେ ବିଡ଼ାଳାକ୍ଷ ମହାବୀର ।
ଏକେ ଏକେ ଏହ୍ନୁ ଦହି ପାରନ୍ତି ତ୍ରିପୁର ॥
ଶ୍ରୀବାସ୍ଥ ବୀରବର ମାନ ଦର୍ପ ହର ।
ମାନଉଦ୍ଧାରଣ ଯେହ୍ନୁ ଶରଣସୋଦର ॥
ସମସ୍ତ ନୃପତି ଅଉ ସର୍ବ ସେନାପତି ।
ଯାହାର ଶ୍ରୀ ପଦ୍ମପାଦ ନିରତେ ସେବନ୍ତି ॥
ଶରଣ ଉଦ୍ଧାରଣ ଯେ କକ୍ଷା ଜଗଜ୍ୟୋତି ।
ଭକତବତ୍ସଳ ସିଦ୍ଧ ମୁନି ଯେ ସେହନ୍ତି ॥
ଶରଣ ରକ୍ଷଣ ପୁଣି ଦୁଷ୍ଟ ନିବାରଣ ।
ଦେବାଧି ଦେବରାଜାଙ୍କ ମୁକୁଟଭୂଷଣ ॥
ନଷ୍ଟଚ୍ୟୁତ ନୃପତିଙ୍କ ସ୍ଥାପନାକାରକ ।
ଅମାନସ୍ଥ ରାଜାଙ୍କର ନଗରଧ୍ୱଂସକ ॥
ମଦନ ସୁନ୍ଦର ରୂପ ବୀର ମହାବୀର ।
ପ୍ରତାପୀ ଅସୁରକୁଳ କମଳେ ଭାସ୍କର ॥
ଏବଂଭୂତ ଶ୍ରୀ ମହିଷାସୁର ନୃପତିର ।
ଶ୍ରୀମୁଖ ସ୍ୱର୍ଗ ଇନ୍ଦ୍ରକୁ କଲ୍ୟାଣ ଉତ୍ତର ॥
ତୋହର ଅ ରଗଣମାନ ଯେତେ ସଙ୍ଗେ ।
ଶ୍ରୀମୁଖ ପ୍ରବେଶ ମାତ୍ରେ ଅସିବୁ ତୁ ଏବେ ॥
ଐରାବତ ନାଗ ପାରିଜାତ ତରୁବର ।
ରମ୍ଭା ଅପସରା ଉଚ୍ଚୈଃଶ୍ରବା ହୟସାର ॥
ଏ ଗୁରୁ ପଦାର୍ଥ ଆଜ୍ଞା ପ୍ରମାଣେ ଯେତେକୁ ।
ଦୂତ ସଙ୍ଗତରେ ଅସି ଦର୍ଶନ କରିବୁ ॥
ଯେବେ ଅବଜ୍ଞା କରଣ ଶୀଘ୍ର ନ ଅସିବୁ ।
ତେବେ ଅନ ଇନ୍ଦ୍ର ହେବ ଏହା ଜାଣିଥିବୁ ॥
ପ୍ରଚଣ୍ଡ ଶ୍ରୀ ବୀରବର ଯେ ଶୁମ୍ଭ ନିଶୁମ୍ଭ ।
ଏରୂପେ ସେ ଲେଖାଗୋଟି ଶେଷ କଲେ ଜବ ॥

ଗଦାବର ସନ୍ତକକୁ ଶ୍ରୀମୁଖରେ ଦେଲେ ।
ତତକାଳେ ଲେଖାର ପୃଷ୍ଠେ ଶ୍ରୀମୁଖ ମୁଦଲେ ॥
ଶ୍ରୀମୁଖକୁ ଲେଖିଲେ ଯେ ହୋଇଣ ହରଷ ।
ଶ୍ରୀକୃଷ୍ଣେ ଶରଣ ପଶି ଶ୍ରୀ ଶାରଳାଦାସ ॥
କହେ ଶୁକମୁନି ଶୁଣ ପରୀକ୍ଷିତ ରାୟେ ।
ଶ୍ରୀଭାଗବତ ଶୁଣିଣ ପାପ କର କ୍ଷୟେ ॥
ଶୁମ୍ଭ ନିଶୁମ୍ଭ ଯେ ଶସ୍ତ୍ର ପ୍ରହସ୍ତକୁ ବଲ ।
ଆଜ୍ଞା ଦ୍ୟନ୍ତି ଶ୍ରୀମୁଖକୁ ତାଙ୍କହସ୍ତେ ଦେଇ ॥
ଶ୍ରୀମୁଖ ଘେନିଣ ତୁମ୍ଭେ ଯାଅ ସ୍ୱର୍ଗପୁରେ ।
ଇନ୍ଦ୍ର ଦେବତାକୁ ଘେନି ଆସ ଧାଡ଼କାରେ ॥
ଇନ୍ଦ୍ର ଅଟଇ ଭୂଷଣ୍ଡ କାକର ତନୟେ ।
ବେଗେ ଅସୁ ମନେ କିଛି ନ କରୁ ଯେ ଭୟେ ॥
ରାଜାର ଆଜ୍ଞା ନିବେଶି ଶିରେ ବେନିବୀରେ ।
ଶ୍ରୀମୁଖକୁ ହସ୍ତର ସେ ଲମ୍ବାଇ ଗଳାରେ ॥
ଆକାଶ ମାର୍ଗେ ବହନ ଚଳାଇଲେ ଦୂତେ ।
ବରସ୍ଥିର ବରେ ସେହ୍ନୁ ଗଲେ ଶୂନ୍ୟପଥେ ॥
ପ୍ରବେଶ ହୋଇଲେ ଯାଇ ଅମରାବତୀରେ ।
ନାରଦେ କହିଲେ ତେଣେ ଇନ୍ଦ୍ରଙ୍କ ସମ୍ମୁଖେ ॥
ବୋଲନ୍ତି ନାରଦ ଅହୋ ଶୁଣ ପୁରନ୍ଦର ।
ତୋତାକୁ ଶ୍ରୀମୁଖ ଦେଇଅଛି ମୈଷାସୁର ॥
ଶୁଣିଣ ଦରହରିତ ହେଲେ ଦେବତାଏ ।
ଶସ୍ତ୍ର ପ୍ରହସ୍ତ ପ୍ରବେଶ ଏସନ ସମୟେ ॥
ଗଳଇ ପ୍ରଚଣ୍ଡ ଝାଳ ପ୍ରଖର ନିଃଶ୍ୱାସ ।
ସ୍ୱର୍ଗପୁର ଯୋଷିଛନ୍ତି ସେ ବେନି ରାକ୍ଷସ ॥
ଅସ ହୋ ଇନ୍ଦ୍ର ବୋଲିଣ ଡାକନ୍ତି ଦର୍ପିଷ୍ଠ ।
ମହାଗାଢ଼ ପଣ କରି କରନ୍ତି ଉଚ୍ଚାଟ ॥
ତ୍ରୈଲୋକ୍ୟ ଈଶ୍ୱର ମୈଷାସୁର ଶ୍ରୀଠାକୁର ।
ତୋତେ ଶ୍ରୀମୁଖ ସେ ଦେଲେ ଶୁଣ ସୁରେଶ୍ୱର ॥
ଅସ୍ଥାନ ତେଜିଣ ରୁହ ଅସ ହୋ ବହନ ।
ପାଦ୍ୟେହ୍ନା ପାଡ଼ ଶ୍ରୀମୁଖ ଗୋଟି ବେଗେ ଘେନ ॥
ଶୁଣି କୋପକଲା ତହିଁ ଦେବ ଇନ୍ଦ୍ର ରାୟେ ।
ତାହା ଶ୍ରୀମୁଖକୁ କରେ ମୋର ଅଛି ଭୟେ ॥
ଅସ ଅସ ଅଙ୍ଗାରପଲଙ୍ଗ ରେ ବହନ ।
ଏ ମୋହ୍ନା ଦୁହିଙ୍କ ଶିର କର ରେ ଛେଦନ ॥
ମୈଷାସୁର ବାଘ ଅସି ରକ୍ଷା କରୁ କିନା ।
ମୋହ୍ନପୁରେ କେତେ କରୁଅଛନ୍ତି ଭର୍ତ୍ସନା ॥

ଇନ୍ଦ୍ର ବଚନ ଶୁଣି ସେ ଅଙ୍ଗାରପର୍ଣ୍ଣ ।
ଅସୁରଙ୍କ କେଶ ଧରି ନେଲେ ତହୁଁ ବେଗ ॥
ସ୍ୱର୍ଣ୍ଣ କୁଠାର ଧରିଣ ହେନ୍ତେ ବିଦ୍ୟାଧର ।
ଦୁହିଙ୍କ ଉପରେ ନେଇ କଲ୍ଲକ ପ୍ରହାର ॥
ସେ ବିଦ୍ୟାଧରର ମହାପ୍ରଚଣ୍ଡ ଆଘାତେ ।
ବେନି ବେନିଖଣ୍ଡ ହୋଇ ପଡ଼ିଲେ ସେ ଦୈତ୍ୟେ ।
ତାଙ୍କ ବଧ ଦେଖି ବୋଇଲେକ ନାରଦାଦ ।
ଦୂତଙ୍କୁ ଯେ ବଧ କଲୁ ତୋର ମନ୍ଦ ବୁଦ୍ଧି ॥
ସତ୍ୟ ତ୍ରେତା ଦ୍ୱାପର ଯେ କଳିଯୁଗ ଚାରି ।
ଦୂତକୁ ମାରିଲେ ହୋଏ ବ୍ରହ୍ମହତ୍ୟା ପରି ॥
ନାରଦାଦ ବଦନରୁ ଏହି ବାଣୀ ଶୁଣି ।
ପ୍ରତିଜ୍ଞା କରି ଗର୍ଜନ୍ତି ଦେବ ବଜ୍ରପାଣି ॥
ଅମରାବତୀ ସ୍ୱର୍ଗରେ ଦେଖ ନିରଞ୍ଜନ ।
ଦେବରାଜା ପଦେ ମୋତେ କଲେ ନିବେଶନ ॥
ତିନି ଭୁବନେ ଅଛଇ ମୁହିଁ ଦେବରାୟେ ।
ଦୁଷ୍ଟ ନାଶନ ମୁଁ ମୋର କାହାକୁଷ୍ଟ ଭୟେ ॥
ଯହୁଁ ଶିରଛେଦ ହେଲେ ଶସ୍ତ୍ର ଯେ ପ୍ରହସ୍ତ ।
ଦେବତା ରୂପରେ ଭୋଗ କଲେ ସେ ବହୁତ ॥
କୁମ୍ଭ ଶୁକଳ ଦ୍ୱିତୀୟା ତିଥି ଚନ୍ଦ୍ର ବାର ।
ଅଶ୍ୱିନୀ ନକ୍ଷତ୍ର ଭୋଗ ମେଷ ସେ ରାଶିର ॥
ବାଳବନାମେ କରଣ ଆୟୁଷ୍ମାନ ଯୋଗ ।
କୁମ୍ଭ ସଙ୍କ୍ରାନ୍ତିକ ପଚିଶ ଦିନ ଭୋଗ ॥
ଜେନାବଳୀ ନକ୍ଷେତ୍ର ଶୁମ୍ଭ ନିଶୁମ୍ଭ ଏ ବେନି ।
ଅସ୍ଥାନେ ବସିଲେ ପାତ୍ର ଅମାତ୍ୟ ଘେନି ॥
ଅନ୍ଧକ ବୋଲି ମହିଷାସୁର ନୃପ ମନ୍ତ୍ରୀ ।
ଭୂତ ଭବିଷ୍ୟତ ଜ୍ଞାତା ସମସ୍ତ କହନ୍ତି ॥
ବଦନ୍ତି ପରୀକ୍ଷି ରାଜା ଶୁଣିବା ମୁନି ହେ ।
ଏ କଥାରେ ଲାଗିଲାତ ବଡ଼ଇ ସନ୍ଦେହେ ॥
ନବଦ୍ୱୀପ ସାଧିକଲା ଯେବଣ ମହିଷା ।
ମନ୍ତ୍ରୀ ଅନ୍ଧକର ଠାରେ କମ୍ପା କଲା ଆଶା ॥
ନେତ୍ର ବେନି ତାର ଯେବେ ଅନ୍ଧ ହୋ ଅଛଇ ।
କି ବୁଦ୍ଧି ପଣେ ସେ ମନ୍ତ୍ରୀ ହୋଇଣ ଅଛଇ ॥
ଏ କଥା ଲୋ ମହାମୁନି ଅଟେ ଅପୂରୁବ ।
ଏ ସନ୍ଦେହ ଗୋଟା ମୋତେ ଫେଡ଼ିଣ କହିବ ॥
କହନ୍ତି ସେ ଶୁକମୁନି ମହାବ୍ରହ୍ମବେତ୍ତା ।
ଶୁଣ ପରୀକ୍ଷିତ ରାଜା ପଣ୍ଡିତ ସୁଜ୍ଞାତା ॥

ରକ୍ଷ ଭକ୍ଷଙ୍କର ଯେତେ ଅଟେ ପଣନାତ ।
ଜନ୍ମ ହେଲା କାଳୁ ସେହି ହେଲା ମହାଘାତ ॥
ତାହାର ଭଉଣୀ ନାମ ଅଟେ ବନ୍ଧ୍ୟାବଳୀ ।
ତାର ତନୟ ଅନ୍ଧକ ନାମେ ମହାବଳୀ ॥
ମହିଷାସୁରର ସେହି ଦେଖିଲା ଅମାତ ।
ତଥାରଲା ନାନାରୂପେ ସେ ଅନ୍ଧକ ମନ୍ତ୍ରୀ ॥
ବୋଲେ ବସ୍ତ୍ରଧନ ଅରଜିଲୁ ଭୁଜବଳେ ।
ଦୁଷ୍ଟ ହୋଇଲେ ହୋ ଶିଶୁ ତୁଟେ ଅଳ୍ପକାଳେ ॥
ଅନେକ ମତେ ତଥାରେ ମଧ ବିରୂପାକ୍ଷ ।
ଶୁଣି କୋପିଲା କପିଳ ସିଂହର ଯେ ବନ୍ଧ ॥
ମାତୁଳ ନୋହିଲେ ଶିର ପକାନ୍ତି ମୁଁ ମୋଡ଼ ।
କୋପେ ମୈଷାସୁର ବେନି ଚକ୍ଷୁ ତାର ତାଡ଼ ॥
ଚକ୍ଷୁ ବେନି ତାଡ଼ନ୍ତେ ଯେ ପଡ଼େ ମୁହଁମାଡ଼ ।
ଈଶ୍ୱର ରଖ ବୋଲି ଯେ ଦେଲା ଘୋରରଡ଼ ॥
ଅନାଥ ଲୋକର ସେ ଯେ ବଇକଲ୍ୟ ଦେଖି ।
ବୃଷଭ ଅହେନ୍ଦ୍ର ବଳେ ପଞ୍ଚଦଶ ଅକ୍ଷି ॥
ବୋଲନ୍ତି ଅସୁର ରୂପେ କି ନମିଲେ କାହ୍ନୁ ।
ପର ଦୁଃଖେ କାତର ମୁଁ ପରଲୋକ ବନ୍ଧୁ ॥
ଏ ଅଶ୍ୱାସ ବଚନକୁ ଶୁଣିଣ ଦଇତ ।
ବୋଲଇ ସେ କରପଦ ଯୋଡ଼ିଣ ଏମନ୍ତ ॥
ସ୍ୱାମି ରକ୍ଷଭକ୍ଷ ବଂଶେ ହେତ ଯେ ପ୍ରହେତ ।
ବିରୂପାକ୍ଷ ନାମ ମୋର ତାଙ୍କର ସନ୍ତତ ॥
ସ୍ୱାମି ମୈଷାସୁରର ମୁଁ ଅଛଇ ମଉଳା ।
ଉତକର୍ମୀ ଦାନବ ସେ ଅନୀତ କରିଲା ॥
ଅନେକ ତଥାରଲି ତା ଦୁଷ୍ଟପଣ ଦେଖି ।
କୋପେ ପାଧାଙ୍କା ଖୋଳିଲା ମୋର ବେନିଅକ୍ଷି ॥
ଈଶ୍ୱର ବୋଇଲେ ଅଟୁ ଅମ୍ଭେ ବିରୂପାକ୍ଷ ।
ଏ ଯୋଗୁଁ ତୋହ ମୋହର ମିତ୍ରତା ପ୍ରତ୍ୟକ୍ଷ ॥
ଏବେ କହ ବୋଇଲେ ସେ ଦେବ ତ୍ରିଲୋଚନ ।
ନିଶ୍ଚୟ ତୋତେ ଅମ୍ଭେ ଯେ ଦେବା ଚକ୍ଷୁଦାନ ॥
ଅନ୍ଧ ବୋଲେ ମୈଷା ସମ୍ପଦ ମୁଁ ନ ଦେଖିବ ।
ଅନ୍ଧ ହୋଇଣ ତାହାର ରାଜ୍ୟେ ରହିଥିବ ।
ଭକତେ ପ୍ରସନ୍ନ ହେବା ଦେବ ବିଶ୍ୱନାଥ ।
ହୃଦରେ ଚକ୍ଷୁ ମୋହର ହେବ ପରାପତ ॥
ମନ୍ତ୍ରିପଣକୁ ହେ ଦେବ ହୋଇବ ଶକତା ।
ତବାଜ୍ଞାରେ ହେବ ଭୂତ ଭବିଷ୍ୟତ ଜ୍ଞାତା ॥

ଶୁଣି ସଦାଶିବ ବୋଇଲେକ ତୋଷଚିତ୍ତେ ।
ବ୍ରହ୍ମାଣ୍ଡରେ ବଇକୁଣ୍ଠ ଯାଏ ଦଶ୍ଯୁ ତୋତେ ॥
ଏସନେକ ବୋଲି ଯହୁଁ ଶିବାଜ୍ଞା ମିଳଇ ।
ଅନ୍ଧକ ହୃଦରେ ଦିବ୍ୟ ଚକ୍ଷୁ ଯେ ହୋଇଲା ॥
ଦିବ୍ୟ ବର ଯେଣୁ ତାକୁ ଦେଲେ ତ୍ରିଅମ୍ବକ ।
ତେଣୁ କରି ସବୁ କଥା ଜାଣେ ସେ ଅନ୍ଧକ ॥
ତେଣୁ ଅନ୍ଧକକୁ ପୁଚ୍ଛି ଶୁମ୍ଭ ଯେ ନିଶୁମ୍ଭ ।
ସ୍ୱର୍ଗେ ଯିବା ଦୂତ ବାର୍ତ୍ତା ସତ୍ୱର କହିବ ॥
ହୃଦଗତେ ଚିନ୍ତା କରି ଜାଣିଣ ଅନ୍ଧକ ।
ବୋଲେ ଶୁଣ ମହାସୁରେ ମନକର ଏକ ॥
ଶ୍ରୀ ମୁଖ ଶୁଣିଣ କୋପ କଲା ବଜ୍ରପାଣି ।
ଶସ୍ତ୍ର ପ୍ରହସ୍ତ ଦୁହିଁଙ୍କି ପକାଇଲା ହାଣି ॥

~ ✱ ~

ଶୁମ୍ଭ ନିଶୁମ୍ଭଙ୍କର ସ୍ୱର୍ଗପୁରଗମନ ।

ଅନ୍ଧକ ମୁଖୁଁ ଏସନ ବଚନକୁ ଶୁଣି ।
ବିଷାଦେ ବିସ୍ମୟ ହେଲେ ସେହି ସାର ବେନି ॥
କୋପେ ଆଜ୍ଞାଦେଲେକ ସେ ବେନି ସାରବର ।
ଅମର ସ୍ୱର୍ଗେ କାହିଁକ ଥିବ ସୁନାସୀର ॥
ସମଦଣ୍ଡ ଅମ୍ବରତ ବେଗେ ସାଜ ସାଜ ।
ଅମର ସ୍ୱର୍ଗପୁରକୁ ଯିବୁଁ ଅମ୍ଭେ ଆଜ ॥
ରାଜାର ବଚନେ ମନ୍ତ୍ରୀ ସାଜ ସମଦଣ୍ଡ ।
ସଇନ୍ୟ ସଜ୍ଜିତ ହୋଇ ହେଲେ ଏକ ଗୁଣ୍ଡ ॥
ଗଜ ତୁରଙ୍ଗ ପଦାତି ରଥୀ ରଥମାନ ।
ସାଜି ଅସୁରେ କରନ୍ତି ଘୋର ଗରଜନ ॥
ହେମମୟ ରଥ ଏକ ସାଜ ମହାବଳ ।
ରଥରେ ଯୋଚିଲେ ନେଇ ସହସ୍ରେ ଶାର୍ଦ୍ଦୂଳ ॥
ତହିଁ ସଜ ହୋଇ ଶୁମ୍ଭ ନିଶୁମ୍ଭ ବସିଲେ ।
ଚଳ ବୋଲି କହି ସୈନ୍ୟେ ଆଜ୍ଞା ଦେଲେ ॥
ମନପବନ ସାରଥି ବାହିଲେ ସେ ରଥ ।
ପବନ ବେଗେ ଗମନ୍ତି ଅସୁରେ ସମର୍ଥ ॥
ନାରଦାଦି ବୋଇଲେ ହୋ ଶୁଣ ପୁରନ୍ଦର ।
ଶୁମ୍ଭ ନିଶୁମ୍ଭ ବାହିଲେ ତୋହର ଅମର ॥
ଶୁଣିଣ ଆସ୍ଥାନୁ ଉଠି ବୋଲେ ପୁରୁହୂତ ।
ସାଜ ରେ ମୋହର ସୈନ୍ୟ ଗଜ ଐରାବତ ॥
ଭୁଜେ ଅର୍ଦ୍ଧାବଳ ଧନୁ ଶକତି ଧରଣ ।
ଚଉଷଠି କୋଟି ସଜ ଗନ୍ଧର୍ବଗଣ ॥
ନେବତାଏ କଟକ ଧରନ୍ତି କୃତ୍ୟାଦଷ୍ଟି ।
ପଚିଶ ମୁଷଳ ମୁଦ୍‌ଗର ଧକାନ୍ତି କୋଟି ॥
ସଜ ହୋଏ ଉଚ୍ଚୈଃଶ୍ରବା ନାମେ ହୟବର ।
ଗର୍ଜନ ଘାତରେ କମ୍ପ ଅନ୍ତେ ତିନି ପୁର ॥
ଆଭରଣ ଦେଲେ ସେହି ବସ୍ତ୍ର ଦ୍ରବ୍ୟମାନ ।
ଦିଗନ୍ତ ସେ ବ୍ରହ୍ମା ରୁଦ୍ର କୁବେର ସମାନ ॥
ଏସନ ପ୍ରକାରେ ସଜ ହେଲେ ସର୍ବସେନା ।
ପ୍ରଚଣ୍ଡ ସହିତରେ ପଚିଶ କୋଟି ଜେନା ॥
ଏସନ ସମ୍ଭବେ ଇନ୍ଦ୍ର ଥାଇ ଯେ ପଲ୍ଲଣି ।
ବ୍ରହ୍ମାଣ୍ଡ କମ୍ପେ ଦେବଙ୍କ ଦୁନ୍ଦୁଭିକୁ ଶୁଣି ॥
ଶୁମ୍ଭ ନିଶୁମ୍ଭ ଯେ ଆସି ହୋଇଲେ ନିକଟ ।
ଦେବ ଅସୁର ହୋଇଲେ ଯାଇଁ ଭେଟାଭେଟ ॥
ଇନ୍ଦ୍ର ରାଜା ବୋଇଲେକ ରେ ଶୁମ୍ଭ ନିଶୁମ୍ଭ ।
ମର୍ତ୍ତ୍ୟ ମଣ୍ଡଳ ରାଜାନ୍ତ ଜିଣିଲେ ରେ ସର୍ବ ॥
ମୁହିଁ ଦେବରାଜା ସ୍ୱର୍ଗ ପୁର ରକ୍ଷାପାଳ ।
କମ୍ପୁତ କାରଣେ ମୋତେ ତୁମ୍ଭର କଣ୍ଟାଳ ॥
ଶୁମ୍ଭ ନିଶୁମ୍ଭ ବୋଇଲେ ଶୁଣ ଦେବରାଜେ ।
ମୈଷାସୁର ନୃପତିକୁ ନ ଜାଣେ ବା କିଏ ॥
ଅମ୍ଭେ ଦୂତ ପଠାଇଲୁ ତୋହର ନିକଟ ।
ନ ବୁଝି ନ ପୁଚ୍ଛି ତାର କଲୁ ମୁଣ୍ଡ କାଟ ॥
ତାହାକୁ ବିନାଶ ତୁ ହୋ କଲୁ ଅନମିତ୍ତେ ।
ଏ କର୍ମ କରିବ କେହି ଏ ତିନି ଜଗତେ ॥
ନ ଜାଣିବା ପଣେ ଏହା କଲୁ ଯେବେ ହୃତ ।
ଏତେଦ୍ରବ୍ୟ ଦେଲେ ଅମ୍ଭେ ଯିବୁଁ ହୋ ବାହୁଡ଼ ॥
ପାରିଜାତ ନାମେ ତରୁ ଐରାବତ ଗଜ ।
ରମ୍ଭା ଅପସରା ଉଚ୍ଚୈଃଶ୍ରବା ହୟରାଜ ॥
ଏ ସୁର ପଦାର୍ଥ ବେଗେ ତୁହି ଆଣି ଦିଅ ।
ଅମ୍ଭେ ବାହୁଡ଼ିବୁ ତୁ ଏ ସ୍ୱର୍ଗପୁରେ ଥାଅ ॥
ଅମ୍ଭ ଦୂତକୁ ମାଇଲୁ କହ କି କାରଣ ।
ଜାଣିଲୁ ହୋ ଇନ୍ଦ୍ର ତୋର ନ ଜାଣିବା ପଣ ॥
ଦୂତକୁ ମାଇଲେ ଯେତେ ପାତକ ହୁଅଇ ।
ଏକଥା କି ଇନ୍ଦ୍ର ତୋର ଶୁଣିମାର ନାହିଁ ॥
ଅମ୍ଭେ ଅସୁରମାନେ ହୋ ଚଣ୍ଡାଳ ଯେ ହୋଇ ।
ଧର୍ମ ଲଙ୍ଘିବାକୁ ପୁଣ ମହା ଭୟ ପାଇ ॥
ପୁଣି ବୋଇଲେ ରେ ଶୁଣ ଶୁଣ ଅରେ ମନ୍ଦ ।
ମୈଷାସୁର ଅଗେ ରହି ପାରିବୁ କି ଇନ୍ଦ୍ର ॥

ବୋଲନ୍ତି ବାସବ ତୁମ୍ଭେ ଶୁଣ ଗୁରୁ ବେନି ।
ମୁଂ ଯାଇଁ ଜଣାଇ ଆସେ ଏବେ ପଦ୍ମଯୋନି ॥
ତାହାଙ୍କ ଆଜ୍ଞାରେ ମୁହିଁ ସର୍ବ ରକ୍ଷାପାଳ ।
ସେ ବୋଇଲେ ଯେଣନ୍ତ ହୋ ଅମର ମଣ୍ଡଳ ॥
ଅଧିକାର ଅଛି ଦିନା ଅମରେ ମୋହର ।
ମୁହିଁ ଯାଇ କହି ଆସେ ବ୍ରହ୍ମାର ଆଗର ॥
ଏତେ ବୋଲି ଇନ୍ଦ୍ର ଗଲା ବ୍ରହ୍ମାର ସନ୍ନିଧେ ।
ଦୈତ୍ୟଙ୍କ ଭୟେ ଲୁଚିଲେ ସମସ୍ତ ବିବୁଧେ ॥
ଅମର ଛାଡ଼ିଣ ଯହୁଁ ଗଲା ପୁରୁହୂତ ।
ସ୍ୱର୍ଗେ ରହିଲେ ସେ ଶୁମ୍ଭ ନିଶୁମ୍ଭ ଦଇତ୍ୟ ॥
ଅପସରାମାନେ କେହି ନ ରହିଲେ ଡରେ ।
ସ୍ୱର୍ଗ ଛାଡ଼ି ପଳାଇଲେ ସର୍ବ ବିଦ୍ୟାଧରେ ॥
ଅପସରଶ୍ରେଷ୍ଠ କାମସେଣା ପ୍ରମୋହିନୀ ।
ତାହାଙ୍କ ହରିଲେ ଶୁମ୍ଭ ନିଶୁମ୍ଭ ଯେ ବେନି ॥
ଏଥି ଅନ୍ତରେ ସେ ଯେ ଦେବ ସୁରପତି ।
ପଳାଇଣ ପଶିଲେ ସେ ପୁର ଯଶୋବନ୍ତୀ ॥
ଭୁଲେଣ ଅମର ବିଦ୍ୟାଧରେଣ ସଇନ ।
ଅପସରଗଣମାନ ସଙ୍ଗେ ଅଛି ଯେନ ॥
ବ୍ରହ୍ମାଣ୍ଡ କରତାଙ୍କର ନିତ୍ୟକର୍ମ ବେଳେ ।
ଯାଇଣ ଇନ୍ଦ୍ର ପ୍ରବେଶ ହେଲା ସଭାତଳେ ॥
ନେତ୍ର ବୁଜିଣ ବିରଞ୍ଚି ଲୟ କରିଛନ୍ତି ।
ଏହିକାଳେ ଇନ୍ଦ୍ର ସଭାତଳେ ଉଭା ହୋନ୍ତି ॥
ସମାଧି ନ ତେଜି ବସିଅଛି ଅଷ୍ଟଅକ୍ଷେ ।
କିଛି ନ କହନ୍ତି ଇନ୍ଦ୍ର ଉଭା ହୋଇଅଛି ॥
ବ୍ରହ୍ମଙ୍କୁ ଯେ ନବଦଣ୍ଡ ହୋଇଲା ପ୍ରବେଶ ।
ଇନ୍ଦ୍ରଦେବତାଙ୍କୁ ନବସହସ୍ର ବରଷ ॥
ସ୍ୱର୍ଗେ ଭୋଗ କରନ୍ତି ସେ ବଳେ ଦୈତ୍ୟବେନି ।
ହରିନ୍ତା ପୁରୁଷ ଧରି ପାଳନ୍ତି ମେଦିନୀ ॥
ଆଜ୍ଞାରେ ମେଘେ ଖଟନ୍ତି ଆଉ ଗ୍ରହଗଣେ ।
ନବଦ୍ୱୀପା ପୃଥ୍ୱୀ ସେହୁ କରିଲେ ଶାସନ ॥
ଯେ ଯାହାର ଠାରେ ଦିଗପାଳମାନେ ଭୋଗି ।
ଅକାଳେ ମୃତ୍ୟୁଦେବତା ନ ପାରଇ ଲଙ୍ଘି ॥
ଶୁମ୍ଭ ନିଶୁମ୍ଭ ଯେ ନବସହସ୍ର ବରଷ ।
ସ୍ୱର୍ଗପୁରେ ରହିଲେ ଯେ ହୋଇଣ ହରଷ ॥
ନର ନାଗ ଯକ୍ଷ କିନ୍ନରାଦି ଯେତେ ଥିଲେ ।
ଶୁମ୍ଭ ନିଶୁମ୍ଭ ଭୟରେ ସର୍ବେ ପଳାଇଲେ ॥
ନାଗଳର ପଳାଇଲା ଯମଭୟ ନାହିଁ ।
ଜରାରୋଗ ମୃତ୍ୟୁ ଅବା ରନ୍ଧବନ୍ତ ନାହିଁ ॥
ମେଘଙ୍କୁ ଏମନ୍ତ ଆଜ୍ଞା ଦେଲେକ ଅସୁରେ ।
ନିତହିଁ ବରଷିବ ରେ ରାତିରେ ପ୍ରହରେ ॥
ଗଗନ ମଣ୍ଡଳେ ଦିବସରେ ନ ରହିବ ।
ପୃଥିବୀକ ୯ ନଯାକ ଖରା କରିଥିବ ॥
ଶୁଣ ପରୀକ୍ଷିତ ରାଜା ବୋଲେ ଶୁକମୁନି ।
ଅମିତ ଅବଧି ନାହିଁ ପାଳିଲେ ମେଦିନୀ ॥
ଅଖଣ୍ଡ ମଣ୍ଡଳେ ହେଲା ମୈଷା ଏକ ରାଜା ।
ଯାହା ଅଜନ୍ତ୍ର ନିଅନ୍ତ ସୁଖରେ ପରଜା ॥
ଦୈତ୍ୟମାନଙ୍କର କିଛି ଉପଦ୍ରବ ନାହିଁ ।
ମହା ସମ୍ଭବରେ ପୃଥ୍ୱୀ ଫଳଦାୟୀ ହୋଇ ॥
ଯାଗମାନ କରନ୍ତି ଯେ ସୁରେଖ ସର୍ବମୁନି ।
ମୈଷା ରାଜାକୁ ଶୁଭିଲା ଧନ୍ୟ ଧନ୍ୟ ଧ୍ୱନି ॥
ଯୁଗେ ଯୁଗେ ନୃପ ହୋଇଥାଉ ମୈଷାସୁର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ହେଉ ଏ ଈଶ୍ୱର ॥
ମୈଷା ପଗ୍ରରିଲା ଶୁଣ ଅହୋ ଅନ୍ଧମନ୍ତ୍ରି ।
ଉତ୍ତମ କରିତ ଇନ୍ଦ୍ର ପାଳୁଅଛି ପୃଥ୍ୱୀ ॥
ଅନ୍ଧକ ବୋଲେ ଶୁଣିମା ଅହେ ମହାମତି ।
ଏହି ନବ ବ୍ରହ୍ମାଣ୍ଡରେ ତୁମ୍ଭ ବଡ଼ କୀର୍ତ୍ତି ॥
ନାରଦ ମୁନି କହିଲେ ଶୁମ୍ଭ ନିଶୁମ୍ଭଙ୍କୁ ।
ଗୃର ପଦାର୍ଥ ଅପୂର୍ବ ତୁମ୍ଭ ଭୁବନକୁ ॥
ଆଉ ସର୍ବ ସମ୍ପଦରେ ପୂର୍ଣ୍ଣ ଏହୁ ପୁର ।
ଶୁଣି ବୋଲନ୍ତି ସେ ଶୁମ୍ଭ ନିଶୁମ୍ଭ ଦ୍ୱିବୀର ॥
କେବଣ ଗୃରପଦାର୍ଥ ଏଥିରେତ ନାହିଁ ।
ଭୋ ମୁନି ଏ କଥା ଆମ୍ଭ ଆଗେ ଦିଅ କହି ॥
ନାରଦେ ବୋଇଲେ ଅହେ ଶୁଣ ବୀରବେନି ।
ଯେଉଁ ଗୃରଦ୍ରବ୍ୟ ଅପୂର୍ବତ ଏ ମେଦିନୀ ॥
ରମ୍ଭାନାମେ କନ୍ୟା ପାରିଜାତ ନାମେ ପୁଷ୍ପ ।
ଐରାବତ ନାମେ ଗଜ ଉଚ୍ଚୈଃଶ୍ରବା ଅଶ୍ୱ ॥
ଏମାନେ ଅପୂର୍ବ ଏଥି ବୋଇଲେ ନାରଦ ।
ଏ ଗୃର ପଦାର୍ଥ ଥିଲେ ସୁନ୍ଦର ସମ୍ପଦ ॥
ଶୁଣି ଶୁମ୍ଭ ନିଶୁମ୍ଭ ଯେ ଲେଖାଇଲେ ଲେଖ ।
ଶସ୍ତ୍ର ପ୍ରହସ୍ତଙ୍କୁ ଗଇ ଦେଲେକ ଶ୍ରୀମୁଖ ॥
ବୋଇଲେ ଇନ୍ଦ୍ରକୁ ଯେଣିଅସ ଲେଖଦେଇ ।
ଶୁଣି ବେଗବାରେ ଗଲେ ବିମାନ ଆରୋହି ॥

ଇନ୍ଦ୍ର ଶୁମ୍ଭରେ ଶ୍ରୀମୁଖ ଦେଲେ ନେଇ ଦୂତ ।
ସେ ଦୂତଙ୍କୁ ମାରିଲା ସେ କୋପେ ପୁରୁହୂତ ॥
ତାହା ଶୁଣି ଶୁମ୍ଭ ନିଶୁମ୍ଭ ଯେ ଭାଇ ବେନି ।
ଅମରଙ୍କୁ ବାହାର କରିଦେଲେ ସଧ୍ରୁଯୋନି ॥
ସ୍ୱର୍ଗପୁର ମାଡ଼ି ବସିଲେକ ବେନିବୀର ।
ବଢ଼ାଇ ସମ୍ପଦେ ପାଳୁଅଛନ୍ତି ତ୍ରିପୁର ॥
ଦିବସେ ପର୍ବତେ ମେଘେ କରନ୍ତି ଯେ ବୃଷ୍ଟି ।
ନିତ ରଜିରେ ପୁବୃଷ୍ଟି ହୁଏ ନବସୃଷ୍ଟି ॥
ନାଗକର ସହିତରେ ପଳାଇଲେ ତରେ ।
ନବସହସ୍ର ବରଷ ହେଲା ପୃଥ୍ୱୀପାଟେ ॥
ମୃତ୍ୟୁ ନ ପାବନ୍ତି ନରେ ସୁଖେ ଛନ୍ତି ରହି ।
ଯମ ପଳାଇଲା ଆଉ ଯମଦଣ୍ଡ ନାହିଁ ॥
ନିଃଶଙ୍କ ହୋଇଣ ଦିବ୍ୟପୁର ସର୍ବେ କଲେ ।
ଉପରେ ହେମ କଳଶ ମାନ ବସାଇଲେ ॥
ଯତି ସନ୍ନ୍ୟାସୀ ଯେ ତପୋଧନ ବ୍ରାହ୍ମଣ ।
ବୋଲନ୍ତି ଚିରାୟୁ ହେଉ ମହିଷା ରାଜନ ॥
ଏମନ୍ତ ବୋଲି ସମସ୍ତେ କରନ୍ତି କଲ୍ୟାଣ ।
ଅତ୍ୟନ୍ତ ସୁଖୀ ହୋଇଣ ଛନ୍ତି ପ୍ରଜାଗଣ ॥
ଶୁଣି ହରଷ ହୋଇଲା ମୈଷାସୁର ରାସ୍ତେ ।
ସାଧୁ ଶୁମ୍ଭ ନିଶୁମ୍ଭରେ ତୁମ୍ଭ ବାପ ମାସ୍ତେ ॥
ସାଧୁ ସାଧୁ ବେନିବୀରେ ତୁମ୍ଭର ଜୀବନ ।
ସାଧୁ ସାଧୁ ତୁମ୍ଭ ଯଶ ଧନ୍ୟ ଅଟେ ଧନ୍ୟ ॥
ଅନେକ ହରଷ ହେଲା ମହିଷା ଅସୁର ।
ଇନ୍ଦ୍ରଙ୍କୁ ଘଉଡ଼ି ମାଡ଼ି ବସିଲେ ଅମର ॥
ସନ୍ନିଧିକୁ ଚାଲିଲା ସେ ଗୃମର ବେମାଳ ।
ତାଙ୍କ ହସ୍ତେ ଦେଲା ତାଡ଼ ବାହୁଟି ସରଳ ॥
ହିଦ ମୁଦ କଙ୍କଣ ଯେ ମୁକୁଟ କୁଣ୍ଡଳ ।
ହୃଦକୁ ପଦକ ନାନାବର୍ଣ୍ଣ କଣ୍ଠମାଳ ॥
ବୋଇଲା ଏମାନ ଘେନି ଯାଅ ସ୍ୱର୍ଗପୁର ।
ନେଇ ସମର୍ପିବ ଶୁମ୍ଭ ନିଶୁମ୍ଭ ଅଗର ॥
ବୋଲିବ ଏ ଅଭରଣମାନ ତୁମ୍ଭେ ଘେନ ।
ଅକାଶ ମଣ୍ଡଳେ ହୋଇଥାଅ ହେ ରାଜନ ॥
ଅମର ପୁରରେ ଶ୍ରେଷ୍ଠ ହୋଇଥାନ୍ତୁ ରାଜା ।
ଯେ ଭୁବନେ ଷଣେ ଅଉ ନ ଥାଉ ବଡ଼ହୋଜା ॥
ମୈଷାସୁର ଅଜ୍ଞା ଘେନ ଗୃମର ବେମାଳ ।
ନବଲକ୍ଷ ସେନା ତୁଲେ ଘେନି ଅଙ୍ଗବଳ ॥

ଶୁମ୍ଭ ନିଶୁମ୍ଭଙ୍କ ପାଇଁ ଉପହାରମାନ ।
ଘେନି ପ୍ରବେଶ ହୋଇଲେ ଅମର ଭୁବନ ॥
ଶୁମ୍ଭ ନିଶୁମ୍ଭଙ୍କ ଅଗେ ଉପହାର ଥୋଇ ।
କହିଲେ ଯେମନ୍ତ ଆଜ୍ଞା ଦେଲା ନୃପ ଦେଇ ॥
ବୋଇଲେ ରାଜା ତୁମ୍ଭଙ୍କ କଲାକ ପ୍ରଶଂସା ।
ଅନେକ ହରଷ ପ୍ରୀତି ହୋଇଲା ମହିଷା ॥
ଏ ବହୁମାନ ତୁମ୍ଭେ ହୋ ନିଅ ଅଭରଣ ।
ଉତ୍ତମେ ଯେସନ୍ତେ ପାଳନ୍ତି ପୃଥ୍ୱୀ ଗ୍ରହଗଣ ॥
ତେମନ୍ତ କରି ପାଳନ କରିଅ ହେ ତୁମ୍ଭେ ।
ରାଜା ଅଦେଶ ଯେମନ୍ତ କହିଲୁଁ ହୋ ଅମ୍ଭେ ॥
ଶୁଣି ଶୁମ୍ଭ ନିଶୁମ୍ଭ ଯେ ସନ୍ତୋଷ ହୋଇଲେ ।
ବହୁମାନ ରଖି ତାଙ୍କୁ ବିଦା କରି ଦେଲେ ॥
ଏଥୁ ଅନ୍ତରେ ପରୀକ୍ଷ ନାମେ ମହାରାଜା ।
ଶୁକ ମୁନି ଚରଣରେ କରି ଦିବ୍ୟ ପୂଜା ॥
ବୋଲେ ଇନ୍ଦ୍ରଦେବ ଗଲା ଧାତାର ଛାମୁକୁ ।
ତହିଁକି କି ବଚିବ ସେ କହିଲେ ଇନ୍ଦ୍ରକୁ ॥
ଶୁଣି ରାଜାକୁ କହନ୍ତି ଶୁକ ମହାମୁନି ।
ସମାଧି ସରନ୍ତେ ଗୃହିଁ ଦେଲେ ପଦ୍ମଯୋନି ॥
ପରୀକ୍ଷିତ ପୁଚ୍ଛାକଲେ ପୁଣି ଭଗବନ୍ତେ ।
ବ୍ରହ୍ମାର ସମାଧି ମୁନି କାହାର ନିମନ୍ତେ ॥
ନମସ୍କାର ତାହାଙ୍କୁ ସେ ଦେଲେ ବଜ୍ରପାଣ ।
ତାହାଙ୍କର ସମାଧି ହୋ କେବଣ କାରଣ ॥
ଶୁକମୁନି ବୋଲେ ରାଜା ପୁଚ୍ଛାକଲ ଯାହା ।
ସାବଧାନେ ଶୁଣ ମୁହିଁ କହେ ତୋତେ ତାହା ॥
ଗୃହଶାନ୍ତି ଚଉରାଶୀ କୋଟି ଜୀବଜନ୍ତୁ ।
ଏମାନଙ୍କ ଚିନ୍ତା ନିତ୍ୟ ଲାଗେ ତାଙ୍କୁ ତନ୍ତୁ ॥
ନିତ୍ୟେହେଁ ସଂସାର କରୁଥାନ୍ତି ସେ ରଚନା ।
ଯେ ଯେମନ୍ତକୁ ଭଜନ କରନ୍ତି ସର୍ଜନା ॥
ଚତୁର୍ବଦନ ପିତାର ଅଟେ ଅଷ୍ଟ ଅକ୍ଷି ।
ଧ୍ୟାନ ଅନୁକ୍ରମରେ ସେ ସବୁଙ୍କୁହିଁ ଦେଖି ॥
ଲକ୍ଷ୍ମୀ କରଣ ସବୁଙ୍କୁ ସେହି ଦିଏ ଅନ୍ନ ।
ତହିଁକି ସେ ଧ୍ୟାନ କରୁଥାଏ ପ୍ରତିଦିନ ॥
ନବସୃଷ୍ଟି ସରଜନା କରିବା ନିମିତ୍ତେ ।
ଲକ୍ଷ୍ମୀ ବସଇ ଅଠର ଦଣ୍ଡ ପରଯନ୍ତେ ॥
ହେ ପରୀକ୍ଷ ପୁଚ୍ଛାକଲୁ ଧାତା ଲକ୍ଷ୍ମୀ କଥା ।
ଏଥିକୁ ଯେ ଧ୍ୟାନ କରୁଥାଇ ଦେବ ପିତା ॥

ଜୟ ଜୟ ପିତାମହ ଈଶ୍ୱର ଶରଣ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାହାରେକ ସୃଷ୍ଟ ।
ବାମ ମୁଖରେ ଅଥର୍ବବେଦ ଗୋଷ୍ଠୀ ଭାଷି ।
ପଛେ ବଶିଷ୍ଠ ବଦନେ ଋକ ବେଦ ଘୋଷି ॥
ଡାହାଣରେ କରତା ସେ ଶୋଭେ ଧାତାନନ ।
ସାମବେଦ ମୁଖେ ପୁଣି କର ଅଧ୍ୟୟନ ॥
ଆଗ ପାଖେ ବ୍ରହ୍ମମୁଖ ସେ ଦିବ୍ୟ ବକତା ।
ଯଜୁର୍ବେଦ ସେ ବଦନେ ଭାଷ ଦେବଧାତା ॥
ଚତୁର୍ବଦନରେ ଚାରିବେଦଙ୍କ ଉଚ୍ଚାର ।
ମହାବ୍ରହ୍ମ ବାକ୍ୟ ତୋର ଲୋକେ ଅଗୋଚର ॥
ଜୟ ତୁ ଜୟ ତୁ ଆଦ୍ୟଅନ୍ତ ମଧ୍ୟମାନ ।
ତୋହର ପ୍ରଯତ୍ନେ ସୃଷ୍ଟି ହୋଏ ବର୍ତ୍ତମାନ ॥
ଶ୍ରୀବଶିଷ୍ଠ ନାରଦଙ୍କୁ ସେଉଁ ମହାତ୍ମା ଜନ୍ମ ।
ମୁଁ କିସ କହିବି ମୁଖେ ତା ମହିମା ମାନ ॥
ଜୟ ଜୟ ପଦ୍ମଯୋନି ବ୍ରହ୍ମାଣ୍ଡ କାରଣ ।
ଭକତ ବତ୍ସଳ ନାଥ କରିବା ତାରଣ ॥
ଜଗତର ନାଥ ତୁହି କଷା ଜଗଜ୍ଜେଠି ।
ତୋହର ତନୟ ବାଲ୍ମୀକ ତପୋନିଷ୍ଠି ॥
ଶ୍ରୀବ୍ରହ୍ମ ଦେବତା ଶ୍ରୀଚରଣରେ ନମସ୍ତେ ।
ପ୍ରଣିପାତ ବାସବ ସେ ବ୍ରହ୍ମା ପାଦଗତେ ॥
ଏଥି ଅନ୍ତରେ ପରୀକ୍ଷ ନାମେ ମହାରାଜ୍ୟେ ।
ଶୁକ ବ୍ରହ୍ମା ପାଦଗତେ ପ୍ରଣମତ ହୋଏ ॥
ବୋଲେପିତାଙ୍କ ସମାଧି ଭାଙ୍ଗେ ଯେତେବେଳେ ।
ଆଖଣ୍ଡଳଙ୍କୁ ସେ କେଉଁ ପ୍ରତ୍ୟୁତ୍ତର ଦେଲେ ॥
ବଦନ୍ତି ଯେ ଶୁକମୁନି ପରାଶର ନାତି ।
ବ୍ୟାସଙ୍କ ପଦକମଳ ମନଙ୍କେ ଚିନ୍ତି ॥
ଇନ୍ଦ୍ରଙ୍କୁ କହନ୍ତି ତହୁଁ ସର୍ବ ବିଦ୍ୟାଧରେ ।
ଅପସରାମାନେ ଛନ୍ତି ତାହାଙ୍କ ସଙ୍ଗରେ ॥
ସ୍ୱାମି ତୁମ୍ଭେ ପଳାଇଲ ସ୍ୱର୍ଗପୁର ଛାଡି ।
ବସିଲେ ଶୁମ୍ଭ ନିଶୁମ୍ଭ ଦୁହେଁ ସ୍ୱର୍ଗମାଡି ॥
ମୋହିନୀ କାମସେଣା ଏ ଅପସରା ବେନି ।
ଏହାଙ୍କୁ ବଳେ ହରିଲେ ଅସୁର ଆଣିଣି ॥
ଅମର ଭୁବନେ ଦେବ ନ ରହିଲେ କେହି ।
ଅସୁରଙ୍କ ବିନୁ ଅନ୍ୟ ତହିଁ କେହି ନାହିଁ ॥
ଭଲ ଭଲ ଦ୍ରବ୍ୟମାନ ଗଲେ ସବୁ ଘେନି ।
ତ୍ରିଲୋକନାଥ ଦଇତେ ବଳେ ଏବେ ଜିଣି ॥

ପୁଣି ଅଇଲେ ଗମର ବେମାନ ଏ ବେନି ।
ସଙ୍ଗତରେ ଅନେକ ସେ ଦୈତ୍ୟବଳ ଘେନି ॥
ଏହା ଶୁଣି ଇନ୍ଦ୍ରଦେବ ବିସ୍ମୟ ହୋଇଲେ ।
ପିତାମହ ଆଗେ ଏହା କହିବା ହୋଇଲେ ॥
ବ୍ରହ୍ମାଳୟ ତେଜ ଗୃହେ ଏସନେକ ବେଳେ ।
ଇନ୍ଦ୍ର ପ୍ରଣିପାତ ହେଲେ ରହି ସଭାତଳେ ॥
ପୁରୁହୂତ ପ୍ରଣିପାତ ଦେଖି ପିତାମହ ।
ବୋଇଲେ ଉଠହୋ ଇନ୍ଦ୍ର କିନିମିତ୍ତ କହ ॥
ବୋଲେ ଇନ୍ଦ୍ରଦେବ ତୁ ଯେ ବିହନ୍ତା ବିଧାତା ।
ତୁହି ସୃଜିଲୁ ନାଥ ତୋ ନବସୃଷ୍ଟି ଚିନ୍ତା ॥
ତୁମ୍ଭର ଆଜ୍ଞାରେ ମୁହିଁ ଥିଲା ସୁରେଶ୍ୱର ।
ମୁହିଁ କି ଲୋକ ପାଳଇ ସବୁ ବୁଦ୍ଧି ତୋର ॥
ନୈଷା ବୋଲିଣ କପିଳ ଫିହର ଦୁଲ୍ଲଳ ।
ସେ ମୋହର ଘେନଲା ଯେ ଅମର ମଣ୍ଡଳ ॥
ପାରିଜାତ ତରୁ ଆଉ ଐରାବତ ହସ୍ତୀ ।
ରମ୍ଭା ଅପସରା ଉଚ୍ଚୈଃଶ୍ରବା ସ୍ୱର୍ଗେ ସ୍ଥିତ ॥
ଅସୁରେ ମାଗିଲେ ଆସି ଏ ଗୁରୁ ପଦାର୍ଥ ।
ଶ୍ରୀମୁଖ ଦେଇଣ ପୁଣ ପେଷିଥିଲେ ଦୂତ ।
ନିରାସ କରିଣ ଦୂତ କହିଲା ବହୁତ ।
ତାହା ଶୁଣିକରି କୋପ ବସିଲା ମୋ ଚିତ୍ତ ॥
ସ୍ୱାମି ତୁମ୍ଭର ପ୍ରସାଦେ ମୁହିଁ କଲି ସେଥ ।
କୋପେ ବେନିଦୈତ୍ୟଙ୍କୁ ମୁଁ ପ୍ରାଣେ କଲି ନାଶ ॥
ତାଙ୍କ ନାଶ ଶୁଣି ଶୁମ୍ଭ ନିଶୁମ୍ଭ ଯେ ବେନି ।
ଦୈତ୍ୟବଳ ତୁଲେ ଆସି ସ୍ୱର୍ଗପୁର ଘେନି ॥
ହରିଲେ ଦୈତ୍ୟେ ମୋହିନୀ କାମସେଣା ନାରୀ ।
ତୋହର ବରେ ଅସୁରେ ହେଲେ ଏଡେସର ॥
ଅସଂଖ୍ୟ କରିଣ ଦେବ ଦେଲୁ ତାଙ୍କୁ ବର ।
ତେଣୁକରି ନୈଷାସୁର ଭ୍ରମେ ତିନପୁର ॥
ମୁହିଁ କିବା ସମରରେ ପାରେ ତାଙ୍କୁ ମାରି ।
ପ୍ରଭୁ ତୁମ୍ଭେ ଅବଧ ବୋଲି ଏ ବର ପ୍ରସରି ॥
ଶୁକ ବୋଇଲେ ହେ ରାଜା ଶୁଣ ମୋ ବଚନ ।
ଏତେବୋଲି ଇନ୍ଦ୍ର ଅଭିଷେକ ବଧ୍ୟମାନ ॥
ଥୋଇଣ ବୋଲଇ ପିତାମହଙ୍କର ଆଗେ ।
ତୁମ୍ଭେ ଘେନ ଶୁମ୍ଭ ନିଶୁମ୍ଭଙ୍କୁ ଥାଅ ସ୍ୱର୍ଗେ ॥
ଗନ୍ଧର୍ବ ବିଦ୍ୟାଧର ଯେ ସୈନ୍ୟବଳ ଘେନି ।
ଯଶୋବନ୍ତୀ ଭୁବନରେ ଥାଅ ପଦ୍ମଯୋନି ॥

ହେ ପରୀକ୍ଷିତରାଜା ଚନ୍ଦ୍ରକାଳ ସମ୍ବତରେ ।
ସିଦ୍ଧମାସ ଶୁକ୍ଳପକ୍ଷ ଅଷ୍ଟମୀ ଦିନରେ ॥
ଶନିବାର ସ୍ୱାତୀ ଋକ୍ଷ ବିଷ୍ଟି ଯେ କରଣ ।
ବିଷ୍କୁମ୍ଭ ନାମ ଯୋଗରେ ସେ ଦିନ ଘଟଣ ॥
ସେ ଦିନେ ଶୁମ୍ଭ ନିଶୁମ୍ଭ ନାଗ ଭାଇ ବେନି ।
ଅଳକାପୁରକୁ ଗଲେ ଦୈତ୍ୟବଳ ଘେନି ॥
ଅଗିଥିଣି ହେଲେ ଆସେ ଧୂମର ବେମାଳ ।
ତାହାଙ୍କର ତୁଳେ ଥିଲେ ନବଲକ୍ଷ ଦଳ ॥
ଶୂନ୍ୟପୁରୁଷେ ଯାଇଣ କହି କୁବେରଙ୍କୁ ।
ଶୁମ୍ଭ ନିଶୁମ୍ଭ ବାହୁଲେ ତୁମ୍ଭ ଭୁବନକୁ ॥
ଶୁଣିଣ ଅଳକା ନାଥ ସମସ୍ତ ଭଣ୍ଡାର ।
ଛାଡ଼ି ପଳାଇଲା ମନେ କରି ଭୟ ଘୋର ॥
ନିଶାଚର ସଇନ ଯେ ବସି ସ୍ୱର୍ଗପୁରୀ ।
ଦେବତାଙ୍କ ଧନ ରତ୍ନ ଦୈତ୍ୟେ କଲେ ଚୁରି ॥
ପିନ୍ଧିଣ ଦେବବସନ ହରନ୍ତି ଅପ୍ସରା ।
ଆକାଶରେ ବିହରନ୍ତି ଦୈତ୍ୟ ମହାବୀର ॥
ଦେବତାଙ୍କ ଅଭିଷେକ ଯୋଗାଡ଼ ନ ପାଇ ।
କୁବେର ଦେବତାଙ୍କୁ ଯେ ଅସୁରେ ଗୋଡ଼ାଇ ॥
ହେ ପରୀକ୍ଷ ଅସୁରଙ୍କ ବିଶ୍ୱରୂପ ଦେଖି ।
ପଳାଇଲେ ବୃନ୍ଦାରକେ ଭୁବନ ଉପେକ୍ଷି ॥
କୁବେର ପଳାଇଲା ଯେ ନୈଇର୍ତ ପୁରେ ।
ପଛେ ଗୋଡ଼ାନ୍ତି ଅସୁରେ ପଳାଇ ସେ ଦୂରେ ॥
ପଳାଇ କୁବେର ଫିଙ୍ଗି ଦିଏ ଦେବ ରତ୍ନ ।
ଘେନିଲେ ତା ଯାଉଣ୍ଡିଣ ଦୈତ୍ୟେ କରି ଯତ୍ନ ॥
ଅଭିଷେକର ଯୋଗାଡ଼ ପାଇଲେ ସେ ଯନ୍ତେଁ ।
ଧୂମର ବେମାଳ ଆସି ଲେଉଟାଇ ତନ୍ତେଁ ॥
ତୁଲେ ତାଙ୍କ ଛତ୍ରି ତିନି ଅରବୁଦ ବଳ ।
ଅଳକା ପୁରେ ପଶିଲେ ଧୂମର ବେମାଳ ॥
କୁବେରଙ୍କ ରତ୍ନ ଘେନି ଗଲେ ସେ ହରଷେ ।
ଧୂମର ବେମାଳ ଶୁମ୍ଭ ନିଶୁମ୍ଭଙ୍କ ପାଶେ ॥
ବୋଲନ୍ତି ଶୁମ୍ଭ ନିଶୁମ୍ଭ ତାହାଙ୍କୁ ଯେ ଗୃହେଁ ।
ମୈଷାସୁରକୁ ଦିଅ ଏ ରତ୍ନମାନ ନେଇଁ ॥
ଆଜ୍ଞାପାଇଣ ଧୂମର ବେମାଳ ଦ୍ୱିବୀର ।
ଦେବତାଙ୍କ ଅଭିଷେକ ଯୋଗାଡ଼ ଅପାର ॥
ଇନ୍ଦ୍ରଦେବତାଙ୍କ ଅଭିଷେକ ରତ୍ନମାନ ।
ମହିଷା ଛାମୁକୁ ଘେନିଗଲେ ସେ ବହନ ॥

କଳ୍ପବୃକ୍ଷ ପାଟଣାରେ ମୈଷାସୁର ବିଜେ ।
ସ୍ୱର୍ଗରୁ ଆସି ଦର୍ଶନ କଲା ସେ ଦନୁଜେ ।
ରତ୍ନମାନ ଥୋଇଲେ ସେ ମହା ନିଶାକାଳେ ।
ଶମିର ବଦାରଣ ଯେ ହୁହୁଳା ତତକାଳେ ॥
ଆକାଶର ବାର୍ତ୍ତା କହିଲେକ ଦୂତମାନେ ।
ସ୍ୱର୍ଗେ ରହି ନ ପାରିଲେ ଷଣେ ଦେବଗଣେ ॥
ଇନ୍ଦ୍ର ଦେବତାର ଅଭିଷେକ ଦ୍ରବ୍ୟମାନ ।
ମଣିମନ୍ଥନ ନାଥ ଯେ ହୋଇଲା ଭୂଷଣ ॥
ସମୁଦ୍ର ମନ୍ଥନ୍ ଉପୁଜିଲା ଯେତେ ଅସ୍ତ୍ରେ ।
ତାହା ବଳସଇ ବଳେ ମୈଷାସୁର ରାଜ୍ୟେ ॥
ବୀରଘଣ୍ଟ ବୀର ରକ୍ତବୀର୍ଯ୍ୟ ବିଡ଼ାଳାକ୍ଷ ।
ଅସୁର ସୈନ୍ୟ ମଧ୍ୟରେ ସର୍ବେ ଦୁର୍ମୁଖ ॥
ଡାକଇ କମ କାହାଳ ଡାଉଣ୍ଡି ଦୁମୁରୁ ।
କାଦମ୍ବର ପାନକରି ନାଚନ୍ତି ଅସୁର ॥
ଏକଦିନେ ଆଜ୍ଞା ଦେଲା ମୈଷାସୁର ରାଜ ।
ଅମରାବତୀ ପୁରକୁ ଦଣ୍ଡି ମୋର ସାଜ ॥
ରାଜାର ବଚନ ଶୁଣି ଲୋଚନ ସାରଥି ।
ଶୀଘ୍ରବକ୍ରମେ ସ୍ୟନ୍ଦନ ମଣ୍ଡଇ ତଡ଼ିତ ॥
ଅସୁତେକ ବ୍ୟାଘ୍ର ଯୋଚିଲା ସେ ନେଇ ରଥେ ।
ମୈଷାସୁର ବିଜେକଲା ରଥରେ ତୁରିତେ ॥
ଆକାଶ ମାର୍ଗରେ ଚଳିଯାଏ ସେହି ଯାନ ।
ହରଷେ ଉଡ଼ି ଯାଆନ୍ତି ପକ୍ଷୀଏ ଯେସନ ॥
ଟମକ ନିଶାଣ ଭେରୀ ବୀରତୂରୀ ବାଜେ ।
ସମଦଣ୍ଡ ଘେନି ମୈଷା ଆକାଶକୁ ବିଜେ ॥
ବ୍ରହ୍ମାର ବରରେ ସେହି ଅଟେ କାମରୂପୀ ।
ଅସୁର ବଳ ସଇନ ଅନ୍ତରୀକ୍ଷେ ଷେପି ॥
ପବନନ୍ତେଁ ବେଗରେ ଯେ ଖେପନ୍ତି ଶାର୍ଦ୍ଦୂଳ ।
ଢାକଯେ ମହିଷାସୁର ଆକାଶ ମଣ୍ଡଳ ॥
ଗନ୍ଧର୍ବ କଲରେ ଯେବା ଥିଲେ ସ୍ୱର୍ଗପୁରେ ।
ଅସୁରଙ୍କୁ ଦେଖିଣ ସେ ପଳାଇଲେ ଡରେ ॥
ଇନ୍ଦ୍ର ବିନା ରକ୍ଷାପାଳ ଅଟଇ ସ୍ୱର୍ଗରେ ।
ଦେବେ ରହିବେ କେମନ୍ତେ ତାହାଙ୍କୁ ବାହାରେ ॥
ଅସୁର ସଇନ୍ୟ ଯନ୍ତେଁ ପଡ଼ିଲେକ ମାଡ଼ି ।
ପଳାଇଲେ ବୃନ୍ଦାରକେ ସ୍ୱର୍ଗପୁର ଛାଡ଼ି ॥
ଗଗନ ମାର୍ଗରେ ଯେସେ ମହିଷା ଅସୁର ।
ଭେଷଗ କରିଲେ ଅସୁର ବଳ ସ୍ୱର୍ଗପୁର ॥

ଅମରାବତୀ ପୁରରେ ପ୍ରବେଶିଲେ ସର୍ବେ ।
ଅଷ୍ଟନିଧି ଦେନି ଭେଟି ଦେ ଶୁମ୍ଭ ନିଶୁମ୍ଭେ ॥
ବାସବ ଦେବର ଅଭିଷେକ ଯେ ଯୋଗାଡ଼ ।
ତାହା ଆଭରଣ ହେଲା ମହିଷାସୁର ମୂଢ଼ ॥
ସ୍ୱର୍ଗେ ବିଜୟ କରିଲେ ସର୍ବ ଦୈତ୍ୟ ଯୋଧୀ ।
ଅନ୍ଧକ ମଲ୍ଲିକ ସେ ଯେ ଦେଲେ ସପ୍ତନିଧି ॥
ବସ୍ତ୍ରଧନ ନେଲେ ବୀରଘଣ୍ଟ କାନ୍ତିମାଳା ।
ଚଣ୍ଡମୁଣ୍ଡ ତାଙ୍କ ସୁଷମା ସକଳ ସେ ନେଲା ॥
ବସ୍ତ୍ରରତ୍ନ ପାଇଲେ ଅସୁର ବିଡ଼ାଳାକ୍ଷ ।
ଅସୁର ସବୁ ଗର୍ବ ବୀର ବିରୂପାକ୍ଷ ॥
କାଳଦଣ୍ଡ ବୀରବଜ୍ର ଦଣ୍ଡ ବୀରବାହୁ ।
ଲୌହାସୁର କଙ୍କ ଧଙ୍କ କାଳାନଳ ରାହୁ ॥
ବାହୁ ସୁବାହୁ ପ୍ରଚଣ୍ଡ ଭେଷ୍ଟା କାଳଭେଷ୍ଟା ।
ଅଗ୍ନିଚଣ୍ଡ ଦୁର୍ଦ୍ଦଣ୍ଡା ସୁରଧ୍ୱଜ ମୋଷ୍ଟା ॥
ଏକମୁଣ୍ଡ ଅସୁର ଯେ ସୁମୁଖା ଦୁର୍ମୁଖା ।
ଶିଳା ମହାଶିଳା ଶୁଣ ତାଡ଼କା ବିମୁଖା ।
କାଳକେତୁ କେଶରୀ ଯେ ଖର ଧୀର ବୀର ।
ମହିଷାସୁର ସେନାପତି ଏତେକ ଅସୁର ॥
ଏମନ୍ତେ ଏ ମହିଷାସୁର ସେନାପତିମାନ ।
ସମସ୍ତେ ଭୂଷଣ ହେଲେ ଦେବ ରତ୍ନମାନ ॥
ମହା ସମ୍ଭ୍ରମରେ ବସେ ମହିଷା ଅସୁର ।
ଆଗରେ ଉଭା ଯେ କାଳ ବିକାଳ ଡ଼ଗର ॥
ଶୁଣ ମୋ ବଚନ ପରୀକ୍ଷିତ ଦଣ୍ଡଧାରୀ ।
ଦେବ ଭଣ୍ଡାର ଆଣିଲେ ଯନ୍ତୁଁ ଜୁରକର ॥
ଦେବାଙ୍ଗ ଝୀନବସନମାନ ଆଣି କରି ।
ଅତି ହରଷେ ପିନ୍ଧିଲେ ଅସୁର ଅସୁରୀ ॥
ମହିଷା ପ୍ରଶଂସଇ ସାଧୁ ହୋ ଶୁମ୍ଭ ନିଶୁମ୍ଭ ।
ତୁମ୍ଭ ଯେନ୍ତ ମୋତେ ପ୍ରାପ୍ତ ହେଲା ଅସି ସର୍ବ ॥
ତୁମ୍ଭେ ବେନିବୀର ଅଛ ଏ ତିନି ଭୁବନେ ।
ଧନ୍ୟ ଶବଦ ବୋଇଲେ ମୋତେ ସର୍ବଜନେ ॥
କାଳକେତୁ ଦଇତକୁ ମହିଷା ଦେଲା ଶାଢ଼ୀ ।
ନାଗକର ଭୁବନକୁ ଯାଇଁ ବସ ମାଡ଼ି ॥
ବୀରଘଣ୍ଟ ନାମେ ଅଛି ଯେଉଁ ସେନାପତି ।
ହେମବନ୍ତ ପୁରେ ତାକୁ କଲାକ ନୃପତି ।
ପୁଣ ବିଡ଼ାଳାକ୍ଷ ରାଇ ବୋଲେ ଶାଢ଼ୀଦେଇ ।
ହିରଣ୍ୟଗର୍ଭ ପୁରେ ତୁ ରାଜା ହୁଅ ଯାଇଁ ॥
ଶାଢ଼ୀଦେଲା ଯେ ଗୁମର ଅଜ ବେମାଳଙ୍କୁ ।
ବୋଇଲା ଅଳକାପୁର ଦେଲୁଁ ହୋ ତୁମ୍ଭଙ୍କୁ ॥
ଶୀଘ୍ରେ ମହିଷାସୁର ବେଗେ ଶାଢ଼ୀ ଦେଲା ।
ଶୁମ୍ଭ ନିଶୁମ୍ଭ ଦୁହିଁଙ୍କ ସ୍ୱର୍ଗେ ରାଜା କଲା ॥
ସନ୍ନିଧିକୁ ହକାରିଲା ଚଣ୍ଡ ମୁଣ୍ଡ ବେନି ।
ପାତାଳକୁ ଗଲେ ଶିରେ ସେହୁ ଶାଢ଼ୀଘେନି ॥
ଜଳତରଙ୍ଗ ନାମରେ ଯେଉଁ ସେନାପତି ।
ବରୁଣ ଭୁବନେ ସେହୁ ହେଲା ଚକ୍ରବର୍ତ୍ତୀ ॥
ଜଣେ ଜଣେ ଶାଢ଼ୀଦେଲା ନୃପ ମହିଷାସୁର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ପାଳିଲେ ଅସୁର ॥
ଜୟ ଜୟ ନାରାୟଣ ଜଗତ କରତା ।
ଜୟ ଜୟ ନାରାୟଣ ଶଙ୍କଟ ନିହନ୍ତା ॥
ଜୟ ହେ ପ୍ରଭୁ ଅଖିଳ ବ୍ରହ୍ମାଣ୍ଡାଦି ପତି ।
ଶାରଳା ଦାସକୁ ପ୍ରଭୁ ଦିଅ ଗତି ମୁକ୍ତି ॥



### ନାରାୟଣଙ୍କ ନିକଟରେ ଦେବଗଣଙ୍କର ଦୁଃଖ ଜଣାଇବା ଓ ତାହା ଶୁଣି ମହିଷାସୁର କ୍ରୋଧ ।

ପଚାରନ୍ତି ପରୀକ୍ଷିତ ଶୁକମୁନି ଗୃହିଁ ।
ମହିଷାସୁରର କଥା ଆଶ୍ଚର୍ଯ୍ୟ ଲାଗଇ ॥
ତଦୁପରେ କିସ ହେଲା କହ ମହାମୁନି ।
ଭବୁଁ ତରିଯିବ ଚଣ୍ଡୀପୁରାଣକୁ ଶୁଣି ॥
ବଦନ୍ତି ଶୁକ ବ୍ରହ୍ମା ଶୁଣ ମହାରାଜେ ।
ଚଣ୍ଡୀପୁରାଣକୁ ଶୁଣି ପାପକର କ୍ଷୟେ ॥
ନାରଦାଦି କହିଲେକ ଶୁଣ ବେଦପତି ।
ମହିଷାସୁର ଗ୍ରାସିଲା ପୁର ବାରସ୍ୱତୀ ॥
ଦେବେ ରହି ନ ପାରିଲେ କୌଣସି ଠାବରେ ।
ଅସୁରଙ୍କ ଭୟ ଏବେ ଲାଗେ ତିନିପୁରେ ॥
ଯେ ଯାହାର ଭୁବନକୁ ତେଜି ବୃନ୍ଦାରକେ ।
ଭୟେ ତୋ ପୁରେ ଲୁଚିଲେ ଆସି ଦେବଲୋକେ
କୁବେର ବରୁଣ ଚନ୍ଦ୍ର ସୂର୍ଯ୍ୟ ସ୍ଥାନଭ୍ରଷ୍ଟ ।
ଦେଖିଣ ସେ ପିତାମହ ସବୁଙ୍କର କଷ୍ଟ ॥
ସଙ୍ଗତରେ ଘେନି ତହୁଁ ସମସ୍ତ ଅମର ।
ମରାଳ ବାହନେ ବିଜେ କଲେ ବେଦବର ॥
ଇନ୍ଦ୍ରଦେବ ବିଜେକଲେ ଐରାବତ ପିଠି ।
ମହିଷେ ବାହନେ ବିଜେ ଯମ କାଳଦୃଷ୍ଟି ॥

ଗ୍ରହଗଣ ତାରାମାନ ଯେଣ ଧ୍ୱଜସଜେ ।
ବୃଷଭ ବାହନେ ସଦାଶିବ କଲେ ସଜେ ॥
ମକର ବାହନେ ସଜେ ଦେବ ରତ୍ନାକର ।
ମେଣ୍ଢା ପୃଷ୍ଠରେ ବିଜୟ କଲେ ଦାବାନଳ ॥
ଆଦିତ୍ୟ ଯେ ଏକଚକ୍ର ରଥେ କଲେ ସଜେ ।
ପୁଣି ରଥରେ ବିଜୟ କଲେ ଚନ୍ଦ୍ରରାଜେ ॥
ମରୁତ ଦେବତା ସଜେ ହରିଣ ବାହନେ ।
ବୃହସ୍ପତି ଚଳନ୍ତି ଯେ ହଂସର ବାହନେ ॥
ଭୁରଣବା ଅଶ୍ୱ ଚଢି କାମକ୍ଷେତ୍ରପାଳ ।
ଛତଲେକ ଦେବତାଏ ଆକାଶମଣ୍ଡଳ ॥
ଅସୁରଙ୍କ ଭୟ ଦେଖି ଦେବ ସ୍ତ୍ରୀମାନେ ।
ଦେବତାଙ୍କ ସହିତରେ ବିଜୟେ ଗଗନେ ॥
ସ୍ୱର୍ଗ ଭୁବନରେ ଆଉ ନ ରହିଲେ କେହି ।
ଅସୁରଙ୍କ ଭୟେ ଅଙ୍ଗମାନ ଯେ କମ୍ପଇ ॥
କ୍ଷୀର ସମୁଦ୍ରରେ ସଜେ ଜଗତ ଗୋସାଇଁ ।
ତାଙ୍କ ନିକଟେ ଚଳନ୍ତି ସର୍ବ ଦେବତାହିଁ ॥
ଦେଖିଲେ ସେ କରିଛନ୍ତି ମହାଯୋଗନିଦ୍ରା ।
ଧ୍ୟାନ ଅନୁରୂପେ ଧରିଛନ୍ତି ମହା ମୁଦ୍ରା ॥
ଲକ୍ଷ୍ମୀଜାନୁ ସୀମସ୍ଥାନେ ଅଛେ ସରସ୍ୱତୀ ।
କରେଣ ବୀଣା ବାଦନ କରୁଛନ୍ତି ସତୀ ॥
ବିମଳ ଚନ୍ଦ୍ର ନାମରେ ଏକଇ ଉତ୍ତଙ୍ଗ ।
ତାହାକୋଳେ ନାରାୟଣ ମହାନିଦ୍ରା ଯୋଗ ॥
ଏମନ୍ତେ ତେତିଶକୋଟି ଦେବେ ଗଲେ ବେଗେ ।
ବିନୟ ହୋଇଣ ଉଭା ନାରାୟଣ ଆଗେ ॥
କୃତାଞ୍ଜଳି ହୋଇ ବନ୍ଦୁଛନ୍ତି ଦେବ ପିତା ।
ନାରାୟଣ ସମାଧିକ ଭାଙ୍ଗି ଜଗନ୍ମାତା ॥
ପିତାମହ ଆଜ୍ଞାକୁ ଯେ ପାଇ ବାକ୍ୟଦେବୀ ।
ବିଷ୍ଣୁଙ୍କୁ ଲକ୍ଷ୍ୟ କରିଣ ପଞ୍ଚସ୍ୱରେ ସ୍ତବ ॥
ଅଜପା ଲୟେ ରହସ୍ୟ ସୁସଙ୍ଗୀତ କଳା ।
ସପ୍ତସ୍ୱରେ ବୀଣାଗୁଣା ଗାଇଲେ ଧବଳା ॥
ସାରିଗମ ପଧନି ଯେ ସପ୍ତସ୍ୱର ଗୀତା ।
ବିଷ୍ଣୁ କଣ୍ଠେ ପଶେ ବାକ୍ୟଦେବୀର ସଙ୍ଗୀତା ॥
ବେଳକୁବେଳ ମାଧୁର୍ଯ୍ୟ ରସ ଯେ ଉଚ୍ଛୁଳ ।
ମହାବ୍ରହ୍ମ ଭେଦନ୍ତେ ଯେ ଚେତ ବନମାଳୀ ॥
ନୟନ ମେଲ ସଧୀରେ ଚାହିଁଲେ ଅନାଦି ।
ସୁରଗଣ ଯେଣ ପ୍ରଣିପାତ ଜମ୍ଭଭେଦୀ ॥
ଯାହାଁ ଯେ ଲକ୍ଷ୍ୟ କରଣ ଚାହିଁଲେ ମହାତ୍ମା ।
ନମସ୍କାର କରି ପାଦେ ଶୋଏ ବେଦବ୍ରହ୍ମା ॥
ଶ୍ରୀବିଷ୍ଣୁ ଚାହିଁ ବୋଲନ୍ତି ଦେବଙ୍କର ମୁଖ ।
କମୁତ କାରଣେ ଅଛୋ ତୁମ୍ଭର ଏ ଦୁଃଖ ॥
ଉଠି କରପଦ୍ମ ଯୋଡ଼ି ବୋଲେ ଦେବପିତା ।
କ୍ଷୀରୋଦଶାୟୀ ହୋଇ ତୁ ଛଡ଼ିଲୁ ଯେ ଚିନ୍ତା ॥
ବିଷ୍ଣୁ ବୋଇଲେ ତୁମ୍ଭର କାହାକୁ ବା ଭୟେ ।
କ୍ରୋଧଭର ହୋଇ ବୋଲୁଛନ୍ତି ଦେବରାୟେ ॥
ଅବନୀର ସକଳତ କହି କେହୁ ପାର ।
ତୁମ୍ଭର ଛାମୁରେ କସ କହିବୁଁ ମୁଖର ॥
ସ୍ୱାମି ସହି ନ ପାରିଲୁ ଅସୁରଙ୍କ ତ୍ରାସ ।
ମୁଖରୁ ରୁଧିର ବହେ ଦେଖ ବସୁନ୍ଧର ॥
ଚନ୍ଦ୍ର ସୂର୍ଯ୍ୟାଗ୍ନି ବରୁଣ କରନ୍ତି ଗୁହାରି ।
ସେ ମହିଷାସୁର ତ୍ରାସ ସହିତ ନ ପାରି ॥
ଆକାଶ ଜିଣିଲେ ପଶି ଦୈତ୍ୟବଳ ସୈନ୍ୟ ।
ଜଳ ପବନ ଅଗ୍ନିରେ ନୁହନ୍ତି ନାଶନ ॥
ଅପସରାଙ୍କୁ ହରିଲେ ଅନ୍ଧକ ବୁଦ୍ଧିରେ ।
କୁବେର ପୁରରୁ ଅଷ୍ଟନିଧି ଜୁରୁକଲେ ॥
ଜଳ ମନ୍ଥିଲେ ବରୁଣ ନଗରରେ ପଶି ।
ତମିର ନାଶନମଣି ଦଇତ୍ୟେ ହଳପି ॥
ନରଲୋକେ ନାଗଲୋକେ ଯେ ମୃତ୍ୟୁ ମଣ୍ଡଳେ ।
ତୋର ନିର୍ଦ୍ଦୟାରେ ସ୍ୱାମି ସବୁ ନଷ୍ଟହେଲେ ॥
ତୁ ଦେବ ସ୍ୱାମି ଛଡ଼ିଲୁ ଜଗତର ଚିନ୍ତା ।
ଦେବଲୋକେ ନାଗଲୋକେ ପାଅନ୍ତି ଅବସ୍ଥା ॥
ହେ ପଦ୍ମାକ୍ଷ ଦେବତାଏ ଜଣାନ୍ତି ଯେ କଷ୍ଟ ।
ତୋହ ଯୋଗେ ନାଶ ଯିବ ଅସୁର ଅରିଷ୍ଟ ॥
ଦେବଙ୍କ ବିକଳ ଦେଖି ପ୍ରଭୁ ନାରାୟଣ ।
ନିଦ୍ରା ତେଜିଣ ବିଜୟେ ଗରୁଡ଼ବାହନ ॥
ତେତିଶ କୋଟି ଦେବତା ଶ୍ରୀହରି ସହିତେ ।
ବିଜେ କଲେ ଯାଇ ତହୁଁ ମେରୁ ପର୍ବତେ ॥
ସମସ୍ତ ଦେବତାମାନେ ବସିଣ ବଗୁର ।
ହରଷ ବଦନ ହୋଇ ନାହିଁ ଯେ କାହାର ॥
ତେତିଶ କୋଟି ଦେବତା ପାଇ ବଡ଼ଦୁଃଖ ।
ଏମନ୍ତ କରିଣ ବର ଦେଲେ ଚତୁର୍ମୁଖ ॥
ଶ୍ରୀବିଷ୍ଣୁ ବୋଇଲେ ପୁଣ ଶୁଣ ହେ ଶଙ୍କର ।
ତୁମ୍ଭେ ବଧ କରିଥିଲ ତ୍ରିପୁର ଅସୁର ॥

ରେଣୁକର ଭୂତ୍ ନାମ ଅଟଇ ଏପୁରର ।
ଏବେ ମହିଷାସୁରକୁ ପାରୁ କ ମାର ॥
ଈଶ୍ୱର ବୋଇଲେ ମହିଷା ଯେବେ ତପ କଲା ।
ପୁରୁଷେ ଅବଧ୍ୟ ବର ପିତ୍ରୁକୁ ମାଗିଲା ॥
ଦେବଲୋକ ନାଗଲୋକ ରଣେ ନ ମରିବ ।
ନରବାନର ସମରେ ବଧ ମୁଁ ନୋହିବ ॥
ଯମର କାଳଦଣ୍ଡରେ ମୁହିଁ ନ ପଡ଼ିବ ।
ମହାପ୍ରଳୟ ଜଳର ମଧ୍ୟେ ନ ବୁଡ଼ିବ ॥
ଅନଳରେ ନ ପୋଡ଼ିବ ଶସ୍ତ୍ରେ ନ ଛିଡ଼ିବ ।
ନାଗପାଶ ବ୍ରହ୍ମଶସ୍ତ୍ରେ ବିନାଶ ନୋହିବ ॥
ଦେବତାଙ୍କ କୋପ ଋଷିମାନଙ୍କର ଶାପ ।
ସେମାନ ପଡ଼ିଲେ ମୋତେ ନ ଲାଗିବ ପାପ ॥
ଏମନ୍ତେକ ବର ସେହି ଦୈତ୍ୟ ପାଇ ଥାଇ ।
ପୁଣି ବ୍ରହ୍ମାଏ ତାହାକୁ ବୋଇଲେ ଏପର ॥
ପୁରୁଷ ହସ୍ତରେ ତୁହି କେବେ ନ ମରିବୁ ।
ଅନେକ ବର୍ଷ ଯୁଗେ ଯୁଗେ ରାଜ୍ୟ କରୁଥିବୁ ॥
ଶ୍ରୀବିଷ୍ଣୁ ବୋଇଲେ ମଧୁ ନ ମରେ ମୋ ହସ୍ତେ ।
ମୋହୋରେ ଭସ୍ମ ଅବା ସେ କରିବ କେମନ୍ତେ ॥
ଶ୍ରୀ ନାରାୟଣ ହସ୍ତରେ ଅବଧ୍ୟକୁ ଶୁଣି ।
ଉଚ୍ଚସ୍ୱରରେ ରୋଦନ କରଇ ଧରଣୀ ॥
ଅବର ମୁହିଁ ଧରି ନ ପାରେ ମହୀସ୍ଥଳୀ ।
ପୋତ୍ରୁ ସେ ମେଦିନୀ ଯାଉ ରସାତଳେ ଗଡ଼ି ॥
ଚନ୍ଦ୍ରସୂର୍ଯ୍ୟ ବୋଇଲେ ନ ହେବୁ ଅମ୍ଭେ ଉଦେ
କ୍ଷୀର ସମୁଦ୍ରେ ଖଟରୁଁ ନାରାୟଣ ପାଦେ ॥
ପବନ ବୋଇଲେ ମୁଁ ନ ବହିବ ଶୀତଳ ।
ସ୍ଥାବର ଜଙ୍ଗମ ଜୀବ ମରନ୍ତୁ ସକଳ ॥
ନାରାୟଣଙ୍କୁ ବହିଁଣ ଭୁଦନ୍ତି ବୃନ୍ଦାର୍କେ ।
ଖଗବର ଆସନ କି କର ଦେବଲୋକେ ॥
ଏଥୁଅନନ୍ତରେ ଶୁଣ ଅହେ ମହୀପାଳ ।
ଦେବତାଏ ବସି ସର୍ବେ ହୁଅନ୍ତି ବିକଳ ॥
କନ୍ୟାମାସ ଶୁକ୍ଳପକ୍ଷ ଅଷ୍ଟମୀର ତିଥି ।
ଉତ୍ତରଷାଢ଼ା ନକ୍ଷତ୍ର ଭୋଗ ଯେ ଯୁକତ ॥
ବାଳବକରଣ ସଉଭାଗ୍ୟ ନାମେ ଯୋଗ ।
ସତପ୍ରହରକେ ଦେବତାଏ ଉଦବେଗ ॥
ଏମନ୍ତ ସମୟେ ପାପୀ ମହିଷା ଅସୁର ।
ଅନ୍ଧାର ବଜମ୍ଭେ କରି ଅଛଇ ସମର ॥

ନାରାୟଣ କହୁଛନ୍ତି ବ୍ରହ୍ମାଙ୍କର ଆଗେ ।
ମହିଷାସୁର ନାଶଯିବ କେବଣହିଁ ବାଗେ ॥
ଏଥକୁ କି ବୁଦ୍ଧି ତୁମ୍ଭେ କର ବେଦପାଣି ।
ଗିରିତଳେ ଥାଇ ମହିଷାସୁର ତାହା ଶୁଣି ॥
ହେ ପରୀକ୍ଷ ପଛଦ୍ୱାରା ଦେଲାକ ସେ ବେଗେ ।
ଗିରିରାଜ ପରେ ନେଇ ମାଇଲାକ ଶିଙ୍ଗେ ॥
କୋପେଣ ଦନୁଜ ପୁଣି ମାରେ ଗଳଗାଞ୍ଜ ।
ତେତେବେଳୁ ଚିରବର ପଡ଼ିଲାକ ଭାଙ୍ଗ ॥
ତେତିଶକୋଟି ଦେବତା କଲେ ମହାରାଗ ।
ସବୁଙ୍କର ମୁଖୁଁ ଅଗ୍ନି ଉଠିଲାକ ବେଗ ॥
ମହାପ୍ରଳୟ କରଣ ପ୍ରକାଶେ ବହୁତ ।
ମହାନଳ ସମ୍ଭବରେ ହେଲା ଯେଣୁ ଜାତ ॥
ଗଗନ ଛୋଟିଲା ମହା ଅନଳର ଜ୍ୱାଳା ।
ଧୂମ୍ର ଉଠିଲାକ କାଳ ଅନଳ ପିଙ୍ଗଳା ॥
ରୁଦ୍ରଅଗ୍ନି ବ୍ରହ୍ମଅଗ୍ନି ବିଷ୍ଣୁଅଗ୍ନି ଖଣ୍ଡ ।
କାଳାନଳ ଅଗ୍ନି ହେଲେ ସର୍ବେ ଏକକୁଣ୍ଡ ॥
ସପତ ବ୍ରହ୍ମାଣ୍ଡ ଯାକେ ତେଜ ପ୍ରକଟିଲା ।
ଧ୍ରୁବଲୋକ ଯାଏ ଅଗ୍ନି ଶିଖା ପ୍ରକାଶିଲା ॥
ମହାତେଜ ଦେଖି ମହିଷାଅସୁର ଦୂଷଇ ।
ପଳାଇ ଯାଇଣ ଶୁମ୍ଭ ନିଶୁମ୍ଭେ କହଇ ॥
ଦେବତାଙ୍କ ଚରିତ ମୁଁ ବୁଝିଲି ସକଳ ।
ମେରୁଗିରି ଶିଖେ ସର୍ବେ ହୋଇ ଏକମେଳ ॥
ଅନ୍ଧାର ବଜମ୍ଭ କାଳେ ଶୁଭିଲାକ ମୋତେ ।
ବୋଲୁଛନ୍ତି ମହିଷାସୁର ମରିବ କେମନ୍ତେ ॥
ଆଜ ସେ ସବୁ ଭୁବନେ ଦେବ ମୁହିଁ ଯାତ ।
ଦେବତାମାନଙ୍କ ମୁଣ୍ଡ ପକାଇବ ମୋଡ଼ି ॥
ପଳାଇଲେ ଖୋଜିବଇଁ ସପତ ବ୍ରହ୍ମାଣ୍ଡ ।
ବ୍ରହ୍ମାପୁରେ କରିବଇଁ ରାଜା ଚଣ୍ଡ ମୁଣ୍ଡ ॥
ଶୁଣି ସେ ବୋଇଲେ ବ୍ରହ୍ମା ବରଦେଲେ ତୋତେ
ଅଦୋଷରେ ପିତାକୁ ତୁ ଲଙ୍ଘିବୁ କେମନ୍ତେ ॥
ମହିଷା ବୋଇଲା ଯେବେ ସେ ଅମ୍ଭର ପିତା ।
ଦେବପକ୍ଷରେ ସେ ମୋର କରେ ମନ୍ଦଚିନ୍ତା ॥
ପିତା ହୋଇ ଯେବେ ପୁତ୍ର ବିନାଶ ଲୋଡ଼ଇ ।
ତାହାକୁ ବଧ କରିଲେ ଦୋଷ କିଛି ନାହିଁ ॥
ଶୁମ୍ଭ ନିଶୁମ୍ଭ ମହିଷାସୁରକୁ ବୋଇଲେ ।
ଦେବତାମାନେ ଯେ ମେରୁଶୃଙ୍ଗେ ରହିଥିଲେ ॥

କେବଣ ଭୁବନକୁ ସେ ପଳାଇଣ ଗଲେ ।
ତାହା ତଥ୍ୟକରି ତୁମ୍ଭେ ବୁଝିଲ କି ଭଲେ ॥
ମୈଷାସୁର ବୋଇଲା ମୁଁ ମହାନଳ ଦେଖି ।
ହାସେ ଅଇଲି ଦେବତାମାନଙ୍କୁ ଉପେକ୍ଷି ॥
ଚଣ୍ଡ ମୁଣ୍ଡ ବୋଇଲେ ହୋ ଶୁଣ ଜେନାବଳୀ ।
ଅଯୋଗେ ଦେବଙ୍କୁ ଯାଡ଼ ଦେବା ସର୍ବେ ମିଳି ॥
ତାହାଙ୍କ ବଚନେ ମୈଷାସୁର ବୋଧପାଇ ।
ଥାଟଘେନ ନିଜରାଜ୍ୟେ ତହିଁ ସେ ଚଳଇ ॥
ଅନ୍ଧକ ମନ୍ତ୍ରୀକି ସଙ୍ଗ କହିଲା ବସାଇ ।
ଅମ୍ଭ ନାଶକୁ ଦେବତା ବିଗ୍ରହନ୍ତି ରହି ।
ମନ୍ତ୍ରୀବୋଲେ ସେ କଥା ମୁଁ ଅଜହୁଁ ହେ ଜାଣେ
ଅନଷ୍ଟ ବାଞ୍ଛନ୍ତି ତୋର ବସି ଦେବଗଣେ ॥
ଶିବବ୍ରତ ଲକ୍ଷ୍ମୀ ହେଲେ ଅସିଣ ତୋହର ।
ତେଣୁକରି ଏ କଥା ମୁଁ ମଣୁଛି ଅସାର ।
ମହାମହା ଅସୁରେ ଯେ ପୂର୍ବକାଳେ ଥିଲେ ।
କେହିତ ଅମର ପୁର ମାଡ଼ ନ ବସିଲେ ॥
ହିଣିସ ତାଡ଼କାସୁର ମଧୁ କଇଟଭ ।
ରକ୍ଷ ଭକ୍ଷ ହିରଣାକ୍ଷ ନାମରେ ଦାନବ ॥
ହିରଣ୍ୟକଶିପୁ ତୋର ଯେ ଉପର ବଂଶେ ।
ସ୍ୱର୍ଗକୁ ନ ଭଗିଛନ୍ତି ସେ ମହା ସାହସେ ॥
ଏବେ ତୁହି ବ୍ରହ୍ମାବରେ ହେଲୁ ଉତକର୍ମ ।
ଅଟଚତ ହୋଇଣ ତୁହି ହେଲୁ ମତିଭ୍ରମ ॥
ମୈଷାସୁର ବୋଇଲା ତୁ ଶୁଣ ମନ୍ତ୍ରିବର ।
ଏବେ ଅମ୍ଭଙ୍କୁ କହ ହୋ କେବଣ ବିଗ୍ରହ ॥
କ୍ଷୀରବ୍ଧି ଭିତରେ ଦେବେ ଗୋପ୍ୟ ହୋଇଥାନ୍ତି ।
ଆନଠାବରେ ସେମାନେ ରହି ନ ପାରନ୍ତି ॥
ସପତ ସମୁଦ୍ରରେ ମୁଁ ନ ଥୋଇବି ପାଣି ।
ତେବେ ସେ ଦେବଗଣଙ୍କୁ ହକାଇବ ଜାଣି ॥
ଏମନ୍ତ ବିଗ୍ରହ କରେ ସେ ଅସୁର ସମ୍ଭ ।
ଦେବେ ଯେବେ ଶନ୍ତାକଲେ ମୋମୃଷ୍ଟ ଉପାୟୁ ॥
ଶୂନ୍ୟ ଉପଶୂନ୍ୟ ବୋଲି ବେନି ସେନାପତି ।
ତାଙ୍କୁ ଅଜ୍ଞାଦେଲେ ମୈଷାସୁର ନରପତି ॥
ତୁମ୍ଭେ ଥାଟ ଘେନ ଚଳ ସମୁଦ୍ରର ତୀର ।
ଦେବେ ଅବା ପଶନ୍ତି ସମୁଦ୍ର ଭିତର ॥
ସବୁ ଦେବତାଙ୍କୁ ଧରି ନ ଛାଡ଼ିବ କାହିଁ ।
ସିନ୍ଧୁମାନ ଶୋଷ ନୀର ନ ଥାଉ ଟେ ତହିଁ ॥

ବୋଲେ ଜଳତରଙ୍ଗଙ୍କୁ ପୁଣି ସେ ଡକାଇ ।
ଲବଣ ସମୁଦ୍ର ତୁହେ ଶୋଷ ବେଗେ ଯାଇ ॥
ବିଡ଼ାଳାକ୍ଷ ରାକ୍ଷସକୁ ବୋଲଇ ଏମନ୍ତ ।
ତୁ ଯାଇ କ୍ଷୀର ସମୁଦ୍ର ଶୋଷରେ ତୁରିତ ॥
ତହିଁର ଭିତରେ ଯେବେ ଥାନ୍ତି ଦେବତାଏ ।
ସବୁ ଶୋଷ କ୍ଷୀର ତହିଁ ନ ଥାଉ ମଧ୍ୟାଏ ॥
ନୀର ସମୁଦ୍ରକୁ ଯାଅ ଚାମର ବେମାଳ ।
ସେହି ସମୁଦ୍ରକୁ ଶୋଷ ନ ଥାଉ ଯେ ଜଳ ॥
ପୁଣି ଅଜ୍ଞା ଦେଲା ଅବେ କୃତାନ୍ତ ରାକ୍ଷସ ।
ତୁ ଯାଇଁ ଇକ୍ଷୁସମୁଦ୍ର ବେଗେ କର ଗ୍ରାସ ॥
ସୁଖା ଧୂମ୍ରଖାକୁ ଚାହିଁ ପୁଣି ସେ ବୋଲଇ ।
ସୁରା ସମୁଦ୍ରକୁ ଶୋଷ ତୁମ୍ଭେ ବେନି ଭାଇ ॥
ଅଜ୍ଞାଦେଲା ଯାଅ ଚଣ୍ଡ ମୁଣ୍ଡ ବେନି ବୀର ।
ଘୃତ ସମୁଦ୍ରକୁ ତୁମ୍ଭେ କର ହୋ ଅହାର ॥
ଏ ବିଧିରେ ଅଜ୍ଞା ଦେଲା ମହିଷା ନୃପତି ।
ସପତ ସମୁଦ୍ର କରି ହରିବ ବିଭୂତି ॥
ଅପଣେ ମହିଷାସୁର ଥାଟଅଛି ଭିଡ଼ି ।
ବ୍ରହ୍ମାର ଭୁବନକୁ ସେ ବେଗେ ଦେଲା ଧାଡ଼ି ॥
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନ ।
ମୈଷାସୁର କରେ ବ୍ରହ୍ମାପୁରକୁ ଗମନ ॥
ଏସନ ଉପାୟ ସେହି ମୈଷାସୁର କଲା ।
ବନ୍ଧ ସମ୍ଭାର କରିଣ ଥାଟ ଚଳାଇଲା ॥
ଏହା ଶୁଣି ବୋଇଲେ ସେ କୁରୁକୁଳ ନାହା ।
ସୁଧାମୟ କଥା ମୋତେ କହ ପୁଣ୍ୟଦେହା ॥
ଅଦଭୂତେ ଅନଳ ଯେ ହୋଇଲା ପ୍ରକାଶ ।
ତେତିଶକୋଟି ଦେବତା କଲେ ପୁଣ ବାସ ॥
ଏହା ମୋତେ କହିବା ଯେ ହେଉ ବ୍ରହ୍ମବେତ୍ତା ।
ତବ ମୁଖୁଁ ଶୁଣିମଇଁ ସୁଧାରସ କଥା ।
ବଦନ୍ତି ସେ ଶୁକବ୍ରହ୍ମା ଶୁଣ ମହାରାଜେ ।
ଦୁର୍ଗାଙ୍କ କଥା ଶୁଣିଣ ପାପକର କ୍ଷୟେ ॥
ଅନ୍ତର୍ଜଳେ ପଡ଼ି ହୋଇଥିଲ ଅସାତ୍ତ୍ୱମ ।
ଶ୍ରୀ ଭାଗବତ ଶୁଣ ହେ ଉଦେ ହେବ ଧର୍ମ ॥
ଦେବତାଙ୍କ ତହିଁ ଜାତ ଯେବଣ ବହ୍ନି ।
ତହିଁ ନିଶ୍ଚିତ ହୋଇଲା କାଳାନଳ ଅଗ୍ନି ॥
ଅଗ୍ନି ଶାନ୍ତି ଅର୍ଥେ ବ୍ରହ୍ମା ଦେଲେ ଅଦ୍ଭୁତ ।
ସ୍ୱରପାଦ ମନ୍ତ୍ରେ ବ୍ରହ୍ମା ବେଦେ କରେ ସ୍ତୁତ ॥

ଦେବଙ୍କର ଜୀବନର ଭସ୍ମ ଅନଳକୁ ।
ଏକଲକ୍ଷ କରି ସ୍ତୁତ କଲେ ଶାନ୍ତ୍ୟର୍ଥକୁ ॥
ଜୀବ ଆଶା ତ୍ୟାଗ କଲେ ସର୍ବେ ଏକାବେଳେ ।
ମହାଅଗ୍ନି ଘୋଟିଗଲା ବ୍ରହ୍ମାଣ୍ଡ ମଣ୍ଡଳେ ॥
ସମସ୍ତ ଅସୁରେ ଯାଉଥିଲେ ଯେ ଆକାଶେ ।
ସ୍ୱର୍ଗେ ପଶି ନ ପାରିଲେ ମହାନଳ ତ୍ରାସେ ॥
ସ୍ୱର୍ଗପୁର ଛାଡ଼ିକରି ପଳାଇ ଆଇଲେ ।
କେନାବଳୀ ପୁରେ ଭୟେ ଯାଇଁଣ ପଶିଲେ ॥
ଦେବତାଙ୍କ କଥା ଏବେ ଶୁଣ କୁରୁପତି ।
ଅଗ୍ନିଙ୍କ ବେଢ଼ି ସକଳେ କରୁଛନ୍ତି ସ୍ତୁତି ॥
ଜୟ ତୁ ଦାବାନଳ ହେ ଅତି ତେଜୋମୟ ।
ଜଗତେ ବ୍ୟାପିଛୁ ତୁହି ନାହିଁ ତୋର କ୍ଷୟ ॥
କୋଟି ବ୍ରହ୍ମାଣ୍ଡରେ ପୂରିଅଛି ଶିଖା ଯାର ।
ଜୟ ତୁ ଜୟ ତୁ ରକ୍ଷାକର ବୈଶ୍ୱାନର ॥
ଜାତ ଅନ୍ତ ମଧ୍ୟ ଶୂନ୍ୟ ଭୁବନକୁ ଭେଦ ।
ସକଳ ସିଦ୍ଧଙ୍କ ନାଥ ତୁହି ଆଦ୍ୟ ସିଦ୍ଧ ॥
ନ ଦେଖି ନ ଶୁଣିଲା ଯା ଅଦୃଶ୍ୟ ଦେହଟି ।
ସପ୍ତ ବ୍ରହ୍ମାଣ୍ଡକୁ ଯାର ତେଜଗୋଟି ଘୋଟି ॥
ତବ ମନରୁ ଉତ୍ପତ୍ତି ହେଲେ ଦେବରାୟେ ।
ଗଗନ ଭେଦ ସଂସାର ହୁଏ ତେଜୋମୟେ ॥
ଅଶଉଚ ଅନ୍ଧାରକୁ କରୁ ତୁହି ଭେଜ ।
ସମସ୍ତ ଭୁବନ ଲୋକେ ତୋତେ ଦେବ ପୂଜ ॥
ଅକ୍ଷୟ ନିରାକାର ତୁ ଅକାଳ ଅକାମ ।
ଅନୁବ୍ରତେ ପାଳ ଉବାସହେ ଅବଶ୍ରାମ ॥
ଭକତର ଅଧୀନ ତୁ ଦରିଦ୍ରର ଧନ ।
ବସ୍ତୁତ ଆହାରେ ଯାର ତେଜ ଦୁଇଗୁଣ ॥
ଉତ୍ପତ୍ତି କରତା ଜଳକର୍ତ୍ତା ଦାତା ବ୍ରହ୍ମା ।
ଯାବତ ଚନ୍ଦ୍ର ମହିର ତୋର କର୍ମେ କର୍ମା ॥
ଦେବ ନର ନାଗଲୋକ ସର୍ବଗର୍ଭେ ଥାଉ ।
ଅବକାର କାଳେ ପୁଣି ସମସ୍ତଙ୍କୁ ଖାଉ ॥
ନାମ ସଙ୍କେତ ଯାହାର ମହାବ୍ରହ୍ମ ଲକ୍ଷ୍ୟେ ।
ସମସ୍ତ ଭକ୍ଷକର ତୁ ଦେବ ଯେ ଅଭକ୍ଷ୍ୟେ ॥
ଅଜପା ପୁରୁଷ ଯାର ନାହିଁ ବର୍ଣ୍ଣ ଚିହ୍ନ ।
ଏକ ନିମିଷକେ ଦେବ ହେଉ ତୁ ଅଙ୍ଗୀନ ॥
ପରଂବ୍ରହ୍ମ ଦେବ ହେ ମନ୍ତ୍ରେ ବଶ ତୁହି ।
ଅଜାତରେ ଜାତ ତୁ ଯେ ମହାତେଜ ବହ୍ନି ॥
ସୁରସିଦ୍ଧ ମୁନି ଯାହା ଚରଣରେ ବନ୍ଦେ ।
ମୁଁ କସ ବନ୍ଦିବି ଦେବ ସେ ପରମାନନ୍ଦେ ॥
ସ୍ୱାମି ଆଭରଣ ଜ୍ୟୋତି ଧନୁ ତ୍ରିଶୂଳା ।
ଅଜପା ଜପା ତୋହର କବଚ ଯେ ସେନା ॥
ନିରଞ୍ଜନ ନିରାକାର ଅଟ ମହାବାହୁ ।
ଅନେକ ପ୍ରକାରେ ଅନ୍ନଅନ ନାମ ବହୁ ॥
କଣ୍ଠତ ତୃଷା ମାହକେ ନବସୃଷ୍ଟି ଖାଉ ।
ତୋ ମୁଖରେ ଦଡ଼ ଅବା କେତୁ ପ୍ରାଣ ପାଉ ॥
ଅସ୍ମାକୁ ସଖା ନାଥ ତୁ ଧୀର ଗୁଣଗ୍ରାହୀ ।
ଜଗତର ଉଦ୍ଧାରଣ ନାଥ ସିନା ତୁହି ॥
କାମ୍ୟକ ମେଖଳା ଶତେ କୋଟି ଯାର ଗର୍ଭ ।
ଦେବତାଙ୍କ ଉପରେ ତୁ ଅଟୁ ଦେବଦେବ ॥
ନମୋ ନାରାୟଣ ତୋର କାଳାନଳ ଜ୍ୱାଳା ।
ନମାମି ନମାମି ବ୍ରହ୍ମ ତୁ ମହା ପିଙ୍ଗଳା ॥
ନମୋ ନମୋ ଆଦ୍ୟ ଦେବ ଈଶାନ ଶଙ୍କର ।
ନମୋ ନମୋ ଦିବାକର ତୁ ଦେବ ଭାସ୍କର ॥
ନମସ୍ତେ ନମସ୍ତେ ଦାବାନଳ ତୁ ବହ୍ନି ।
ନମୋ ବୈଶ୍ୱାନର ସର୍ବଭକ୍ଷ ଅଟୁ ପୁଣି ॥
ସ୍ୱାମି ତୁ ପରମାନନ୍ଦ ବ୍ରହ୍ମ ପରଂବ୍ରହ୍ମ ।
ଅନାଦି ଦେବତା ତୋର ଅଟେ ନିତ୍ୟକର୍ମ ॥
ସମୁଦ୍ର ବୃଦ୍ଧି ହୁଅଇ ବର୍ଷାଋତୁ ଯୋଗେ ।
କିନ୍ତୁ ତୋ ବଡ଼ବାନଳ ନାଶ ନୋହେ କେବେ ॥
ସ୍ୱାମି ଯେ କର୍ମ ଧର୍ମରେ ତୁ ଆଦ୍ୟ ଦେବତା ।
ସମସ୍ତ ଅସହଣି ତୁ ତୁ ସର୍ବ ଅହନ୍ତା ॥
ପ୍ରସନ୍ନ ଯୋଗେଶ୍ୱର ତୁ ଉଦାସୀନ ଦେହା ।
ଜାତ ଅନ୍ତକାଳେ ତୋର ଅନେକ ସ୍ନେହା ॥
ବ୍ରହ୍ମା ବିଷ୍ଣୁ ଶିବ ଯାକୁ କରୁଥାନ୍ତି ସ୍ତୁତି ।
ତାକୁ ସ୍ତୁତି କରିବାକୁ ମୋର କସ ଶକ୍ତି ॥
ଶ୍ରୀ ଅଗ୍ନି ଦେବତାର ମୁଁ ଜନ୍ମେ ଜନ୍ମେ ଦାସ ।
କାଳାନଳ ବହ୍ନିର ତେଜ ପରକାଶ ॥
ଶ୍ରୀ ଅଗ୍ନି ଦେବତାର ଯେ ଚରଣେ ଦକ୍ଷିଣା ।
ଭରୁଁ ନିସ୍ତରିବା ପାଇଁ ଭଳେ ମୁହିଁ ପୁଣି ॥
ଜୟ ଜୟ ଜୟ ଦେବ ତୁ ସେ ଆଦ୍ୟ ଅନ୍ତ ।
ଜୟ ଜୟ ଦେବଜନେ ତୋହରେ ମୁକତ ॥
ଜୟ ଜୟ ଜୟ ଦେବ ତୁ ସେ ବୈଶ୍ୱାନର ।
ତୋହରେ ଉଲ୍ଲାସ ହେବ ଏହି ମହୀଭର ॥

ଦେବତାଙ୍କ କଷ୍ଟ ଫେଡ଼ ଅହୋ ମହାବହ୍ନି ।
ଜଗଜ୍ଜନ ହିତେ ଅଛୁ ନିଜରୂପ ଘେନି ॥
ହେ ଅଗ୍ନିଦେବତା ତୋତେ ନମସ୍ତେ ନମସ୍ତେ ।
ହୃଦୟ ବ୍ୟାକୁଳ ଦେବ ଫେଡ଼ସି ତ୍ୱରିତେ ॥
ବ୍ରହ୍ମା ବ୍ୟାପିତ ରୁଦ୍ର ଯେ ଦେବ ସାରସ୍ୱତେ ।
ମାନବ ଜନ୍ମରେ ମୁହିଁ ବର୍ଣ୍ଣିବ ବା କେତେ ॥
ଏମନ୍ତେ ଦେବତାମାନେ ବହୁ ସ୍ତୁତି କଲେ ।
ପାଦପଦ୍ମରେ ସେ ଶିରପାଲିଣ ଶୁତିଲେ ॥
ସମସ୍ତ ଦେବତାଗଣ କଲେ ନମସ୍କାର ।
ଇନ୍ଦ୍ର କୁବେର ନୈରୃତ ଆଦି ଦିବାକର ॥
ସମସ୍ତେ ଶୁତିଲେ ଅଗ୍ନି ଦେବତାର ପାଦେ ।
ଏ କଷ୍ଟରୁ ତରୁଁ ଦେବ ତୋହର ପ୍ରସାଦେ ॥
ଶ୍ରୀ ଅଗ୍ନି ଦେବତାଙ୍କର ଚରଣେ ସନ୍ତତ ।
ଶ୍ରୀ ସିଦ୍ଧ ଶାରଳା ଦାସ କରେ ପ୍ରଣିପାତ ॥



## ଦୁର୍ଗାଙ୍କର ଆବିର୍ଭାବ ଓ ଦେବଗଣଙ୍କର ଶସ୍ତ୍ର ପ୍ରଦାନ ।

ଶୁଣ ହୋ ପରୀକ୍ଷ ରାଜା କହେ ଶୁକ ମୁନି ।
ଧାତାଙ୍କ ବଚନସ୍ତୁ ଦେବଗଣଙ୍କ ଦମ୍ଭିନୀ ॥
ଦେଖିଣ ଶାନ୍ତ ହୋଇଲେ ସେ ମହାବହ୍ନି ।
ଦେବତାମାନଙ୍କର ସେ ଭକ୍ତିଭାବ ଘେନି ॥
ଅମରେ ଏରୂପେ କରି ବ୍ୟାକୁଳରେ ସ୍ତୁତି ।
ଅଗ୍ନିଦେବତାଙ୍କୁ ସର୍ବେ ନିବେଦି ଗୃହାନ୍ତି ॥
ଅନଳ ଶାନ୍ତ୍ୟର୍ଥେ ବ୍ରହ୍ମା ଦେଲେ ଯେ ଆହୁତି ।
ମହା ଅନଳ ମଧ୍ୟରେ ବିକାଶିଲା ଜ୍ୟୋତି ॥
ଅଗ୍ନିର ତନୁଁ ବହୁତ ବିକାଶିଲା ତେଜ ।
ବେନିପାଦ ଏକଶିର ସହସ୍ରେକ ଭୁଜ ॥
ଅଭୟା କାତ୍ୟାୟନୀ ସେ ଅନାଦି ଶକତି ।
ମହା ବଇଷ୍ଣବୀ ଦେବୀ ହେଲେ ଉତପତ୍ତି ॥
ପ୍ରସନ୍ନ ଅନ୍ନପୂର୍ଣ୍ଣାର ଦିବ୍ୟରୂପ ଦେଖି ।
ଉଦ୍ୟେ ବୃନ୍ଦାରକେ ଯାନ ବାହନ ଉପେକ୍ଷି ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ମହାବିଷ୍ଣୁ ସ୍ୱାମୀ ।
ଅଗ୍ନିକୁ ସେ ସ୍ତୁହିଁ କରି ସକଳେ ପ୍ରଣମି ॥
ତେତିଶକୋଟି ଦେବେ ଯେ କରିଲେ ଭକତି ।
ପୁଣ ପୁଣ ପ୍ରଣିପାତ ଚରଣେ ହୁଅନ୍ତି ॥
କରିଣ ଚରଣ ଦତନ୍ତ ଧରିଣ ଅଙ୍ଗୁଷ୍ଠ ।
ସବିନୟେ ଭକ୍ତି ହେବ ସେ ତେତିଶକୋଟି ॥
ମହା ବଇଷ୍ଣବୀ ରୂପ ଦେଖି ଦେବତାଏ ।
ବହୁତ ସ୍ତୁତି କରି ସେ କହନ୍ତି ବିନୟେ ॥
ତେତିଶକୋଟି ଦେବଙ୍କ ମହାତେଜ ଘେନି ।
ଆଦି ଅନ୍ନପୂର୍ଣ୍ଣା ଜନ୍ମ ହୋଇଲେ ମେଦିନୀ ॥
ଦୁର୍ଗତି କାଳରେ ଯେଣୁ ହେଲେ ଉତପନ୍ନ ।
ହୃଦୟ ବ୍ୟାକୁଳ ଗୁଡ଼ ଦେଲେ ସର୍ବଜନ ॥
ମହା ଶଙ୍ଖ ଧ୍ୱନି କଲେ ପୁରୁଷ ଉତ୍ତମ ।
ବ୍ରହ୍ମା ବଗ୍ୱରଣ ଦେଲେ ତାଙ୍କ ଦୁର୍ଗାନାମ ॥
ବ୍ରହ୍ମ ତେଜୁଁ ଅନଳ ଯେ ହୋଇଲା ସଞ୍ଜାତ ।
ସେ ଅନଳ ମଧ୍ୟୁଁ ତାଙ୍କ କଳେବର ଜାତ ॥
ବିଷ୍ଣୁର ଅଗ୍ନିରୁ ତାଙ୍କ ମୁଖ ବିକାଶିଲା ।
ଈଶ୍ୱର ଅଗ୍ନିରୁ ଜାତ ଦନ୍ତପନ୍ତି ହେଲା ॥
ଚନ୍ଦ୍ରତେଜ ଅନଳରୁଁ ନୟନ ପ୍ରକାଶ ।
ସୂର୍ଯ୍ୟ ତେଜ ଅଗ୍ନିରୁ ଯେ ନାସିକା ବିକାଶ ॥
ଅଗ୍ନିର ତେଜରୁ ଜିହ୍ୱା ହେଲା ଉତପନ୍ନ ।
ଇନ୍ଦ୍ର ତେଜ ଅଗ୍ନିରୁ ଯେ ଶିର ଶୋଭାବନ ॥
ଶମନ ଅଗ୍ନି ତେଜରୁ କେଶ ବିଦ୍ୟମାନ ।
ଜୀମୂତ କଜ୍ଜ୍ୱଳ ତାଙ୍କୁ ନୋହିବେ ସମାନ ॥
ଯମର ଅଗ୍ନିରୁ ପୁଣି ହେଲା ଗଣ୍ଡସ୍ଥଳ ।
କୁବେର ଅଗ୍ନି ତେଜରୁ ଜାତ ବକ୍ଷସ୍ଥଳ ॥
ବିଶ୍ୱଦେବଙ୍କ ଅଗ୍ନିରୁ ହୋଇଲାକ କୁକ୍ଷି ।
ସକଳ ଦେବଙ୍କ ତେଜ ନାଭିପଦ୍ମେ ଅଛି ॥
ମନ୍ମଥ ଜିଣି କଟୀ ସ୍ତୁରୁ ବାହୁବେନି ।
ସେଠାରେ ତେଜ ଦେଇଛି କୁମାର ଅଶ୍ୱିନୀ ॥
ବେନି ନିତମ୍ବର ଦିଶେ ମହାତେଜ କାନ୍ତି ।
ବୃହସ୍ପତି ଅଗ୍ନିତେଜୁଁ ହୋଇଛି ଉତ୍ପତ୍ତି ॥
ରମ୍ଭାତରୁ ସମ ବେନି ଜାନୁ ସୁସଜ୍ଜିତ ।
ପ୍ରଜାପତି ତେଜରୁ ସେ ହୋଇଛି ସମ୍ଭୂତ ॥
ଅନନ୍ତ ବାସୁକି ଅଷ୍ଟକୁଳା ନାଗଙ୍କର ।
ତେଜ ଘେନି ପାଦତଳ ଦିଶଇ ସୁନ୍ଦର ॥
ନବ ସହସ୍ର ଦେବତା ସ୍ତ୍ରୀ ପୁରୁଷ ମିଶି ।
ବେନି ଚରଣ ଅଙ୍ଗୁଷ୍ଠମାନ ପରକାଶି ॥
ଅଙ୍ଗୁଷ୍ଠିର ନଖ ରବିତେଜରେ ବିକାଶ ।
ହେମବନ୍ତ ତେଜ ପିଠି ହେଲା ପରକାଶ ॥

ବିଷ୍ଣୁ ନନ୍ଦନ ଯେ କାମଦେବର ବଦନ ।
ଏହାଙ୍କ ତେଜରୁ ଜାତ ହେଲେ ସ୍ତନ ବେନି ॥
ଏମନ୍ତ ପ୍ରତିମା ସେହି ଅଟେ ଶୁଭଶାଳୀ ।
ଦକ୍ଷଙ୍କ ତେଜରୁ ଯେ ହେଲେ ରୋମାଦଳୀ ॥
ବରୁଣ ତେଜରୁ ଜାତ ହୋଇଲା ଗଉଭ ।
ମେଦଙ୍କ ତେଜରୁ ଜନମିଲା କଟୀଭାର ॥
ଅଂଶୁଣ ପବନରୁ ଯେତେ ଅଗ୍ନି ତେଜ ।
ଏଥୁଁ ଜାତ ହୋଇଲା ଯେ ସହସ୍ରେକ ଭୁଜ ॥
ଗଣନାୟକମାନେ ଯେ ଚତୁର୍ଦ୍ଦଶ କୋଟି ।
ଏହାଙ୍କ ତେଜୁ ହୋଇଲେ ଭୁଜଙ୍କ ଅଙ୍ଗୁଷ୍ଠି ॥
ପର୍ବତଙ୍କ ତେଜ ଆଉ ଅନଳଙ୍କ ଶିଖା ।
ଏହାଙ୍କ ତେଜୁଁ ହୋଇଲା ଅଙ୍ଗୁଷ୍ଠିର ନଖ ॥
ପଞ୍ଚବଂଶ ଅଗ୍ନି ସମାନରେ ମହାତେଜ ।
ନିର୍ଧୂମ ଅଗ୍ନିର ପ୍ରାୟେ ଶରୀର ବିରାଜ ॥
କୃତାନ୍ତକ ସମାନରେ ବଦନ ପ୍ରକାଶି ।
ବଇଷ୍ଣବୀପଣକୁ ସେ ଅଟେ ଦେବ କାଶୀ ॥
ତପିପଣକୁ ଯେ ସେହୁ ଦୁର୍ବାସା ମହର୍ଷି ।
ବାକ୍ୟକଥନରେ ସେହୁ ପରାଶର ଋଷି ॥
ବ୍ରହ୍ମାର ସମାନେ ସେହୁ ଅଟେ ମହାଜ୍ଞାନୀ ।
କାମଦେବ ସମାନେ ସେ ନୟନମୋହିନୀ ॥
ବିଷ୍ଣୁର ସମାନେ ସେ ଯେ ଶେଷ ବାସଂନଧି ।
ବୃହସ୍ପତି ସମାନରେ ଅତିଶୟ ବୁଦ୍ଧି ॥
ଇନ୍ଦ୍ର ସମାନେ ତାଙ୍କର ଅଛଇ ବଡିମା ।
ଚନ୍ଦ୍ର ଦେବତା ସମାନେ ଅନେକ ମହିମା ॥
ଆଦିତ୍ୟର ସମାନରେ ଅଟେ ତେଜକାନ୍ତି ।
ସପତ ସମୁଦ୍ରତେଜ ଗର୍ଭରେ ବହନ୍ତି ॥
ସେ ଅନନ୍ତ କାତ୍ୟାୟିନୀ ସହ୍ୟ ଗୁଣ ଯେନ ।
ବସୁନ୍ଧରା ସମାନରେ ସକଳ ସହଣୀ ॥
ପବନର ସମାନେ ସେ ଅଟନ୍ତି ଚଞ୍ଚଳ ।
ମେରୁର ସମାନେ ସେହୁ ଅଟନ୍ତି ଅଚଳ ॥
ମେଘର ସମାନେ ସେହି ଅଟେ କାମରୂପୀ ।
ବରୁଣର ସମାନରେ ତ୍ରୈଲୋକ୍ୟରେ ବ୍ୟାପି ॥
ମୋହିନୀ ପଣକୁ ସେହୁ ପ୍ରତ୍ୟକ୍ଷେ ପାର୍ବତୀ ।
କୁମାର ସମାନେ ତାଙ୍କ ପ୍ରତିଜ୍ଞା ଶକତି ॥
ଦେବଙ୍କ ତେଜରୁ ଯେଣୁ ହେଲେ ଉତପତ୍ତି ।
ତେଣୁକରି ବନ୍ଦିଲେ ସେ ସବୁଙ୍କ ପ୍ରକୃତି ॥

ତ୍ରୈଲୋକ୍ୟମଣ୍ଡଳେ ଦେବ ଯେ ତେତିଶକୋଟି ।
ସର୍ବତେଜ ବଳ ସହି ହେଲା କାୟା ଗୋଟି ॥
ଦୁର୍ଗତିରୁ ଯେଣୁ କରି ପାରନ୍ତି ସେ ଦୂର ।
ତେଣୁକରି ଦୁର୍ଗାନାମ ଅଛଇ ତାଙ୍କର ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଏ ତିନି ମୂରତି ।
ଦେବଙ୍କୁ ଘେନି କରନ୍ତି କରଯୋଡ଼ି ସ୍ତୁତି ॥
ଜୟ ତୁ ଦୁର୍ଗା ଦୁର୍ଗତି କାଳେ ଉତପତ୍ତି ।
ଜୟ ତୁ ମଙ୍ଗଳା ମାଗୋ କରତା ପାର୍ବତୀ ॥
ଜୟ ତୁ ମଙ୍ଗଳା ମାଗୋ ଶୁଭ ଅବଧାସି ।
ଜୟ ମଙ୍ଗଳେ ଦୁସ୍ତରୁ କରୁ ତୁହି ପାର ॥
ଜୟ ତୁ ଜୟ ମଙ୍ଗଳେ ଅଭୟା ମା ଦୁର୍ଗେ ।
ପ୍ରସନ୍ନ ହୋଇ ଆମ୍ଭଙ୍କୁ ସ୍ଥାପ ତୁମ୍ଭେ ସ୍ୱର୍ଗେ ॥
ତେତିଶକୋଟି ଦେବେ ଯେ କଲେ ଏତେ ସ୍ତୁତି ।
ମନେ ଅନେକ ସାନନ୍ଦ ସମସ୍ତେ ହୁଅନ୍ତି ॥
ଶ୍ରୀ ଦୁର୍ଗାଦେବୀ ଚରିତ ଶୁଣ ସଜ୍ଜନେ ।
ଧର୍ମାର୍ଥ କାମ ମିଳିବ ଦୁର୍ଗାଙ୍କ ପ୍ରସନ୍ନେ ॥
ଦୁର୍ଗା ସ୍ମରନ୍ତେ ଦୁର୍ଗତିମାନ ବେଗେ ଛାଡ଼ୁ ।
ଦୁର୍ଗା ସୁମର ହୋ ଜନେ ଆପଦ ନ ପଡ଼ୁ ॥
ଦୁର୍ଗା ସୁମର ହୋ ବିଘ୍ନମାନ ଯାଉ ନାଶ ।
ଦୁର୍ଗା ସୁମର ହୋ ଜନେ ଫିଟୁ କାଳପାଶ ॥
ଦୁର୍ଗା ସୁମରଣେ ନରେ ଜ୍ୱରରୋଗ ଖଣ୍ଡ ।
ଦୁର୍ଗା ସୁମର ନରେ ନ ଲାଗୁ ଯମଦଣ୍ଡ ॥
ଦୁର୍ଗା ସୁମର ମନରେ ସନ୍ତାପକୁ ତେଜ ।
ଧନ ପୁତ୍ର ପ୍ରାପ୍ତ ହେବେ ଦୁର୍ଗା ନାମ ଭଜ ॥
ଦୁର୍ଗା ସୁମର ହେ ନରେ ବାସ ହେଉ ସୁସ୍ଥ ।
ଦୁର୍ଗା ସୁମର ହେ ନରେ ପୁତ୍ର ହେଉ ଜାତ ॥
ଦୁର୍ଗା ସୁମର ହେ ନରେ ଚିତ୍ତ ହେଉ ସ୍ଥିର ।
ଦୁର୍ଗା ସୁମରନ୍ତେ ଆୟୁ ହୋଇବଟି ଚିର ॥
କନ୍ୟାମାସ ଶୁକ୍ଳପକ୍ଷ ତିଥି ଯେ ଅଷ୍ଟମୀ ।
ସେ ଦିନ ଜାତ ହୋଇଲେ ଦେବୀ କାତ୍ୟାୟନୀ ॥
କୃଷ୍ଣାଷ୍ଟମୀରୁ ଯେ ଶୁକ୍ଳାଷ୍ଟମୀ ପରଯନ୍ତେ ।
ସର୍ବରାଜା ଆରାଧନା କରନ୍ତି ଗୋ ତୋତେ ॥
ଅସୁଖ ସମ୍ପଦ ପ୍ରଜ ଯାର ଯେଉଁ ଇଚ୍ଛା ।
ଜଗତତାରିଣୀ ମାଗୋ ପୂରା ମନୋବାଞ୍ଛା ॥
ଲୋଭଭୟ ମୋହ କାମ ସଂସାରପବାହୁଁ ।
ଏଥୁଁ ତରିବେ ମାତା ଗୋ ତୋହର ପ୍ରସାଦୁଁ ॥

ଜୟ ମା ଦୁର୍ଗେ ଥାଅ ଗୋ ସଦା ମମ ହୃଦେ ।
ଶାରଳାଦାସ ସେବଇ ଦୁର୍ଗାଦେବୀ ପାଦେ ॥
ଶୁଣିଣ ଦେବତାଙ୍କର ବିନୟ ଭକତ ।
ସମାଶ୍ୱା ଦିଅନ୍ତି ତାଙ୍କୁ ଅଭୟ ପାର୍ବତୀ ॥
ହେ ଦେବତାଏ ବହୁତ ସ୍ତୁତି ମୋତେ କର ।
କମୁତ କାରଣେ ଏତେ ଅକୁଳ ହୋଇଲ ॥
ବ୍ରହ୍ମାଙ୍କୁ କହିଲେ ଧୀରେ ଦେବ ଚକ୍ରଧର ।
ବୁଝାଇ କହ ହେ ଧାତା ଦେବୀଙ୍କ ଆଗର ॥
ଶ୍ରୀ ବିଷ୍ଣୁ ବଚନେ ପିତା ତହୁଁ ଅଗସର ।
ସ୍ତୁତିରେ କହନ୍ତି ଅଷ୍ଟଭୁଜ ଯୋଡ଼ି କର ॥
ଶୁଣ ସାବଧାନେ ମାଗୋ ଜଗତଜନନୀ ।
ଯହିଁପାଇଁ ଅମ୍ଭେ ତୋତେ ହେଉଛୁଁ ଦୟିନୀ ॥
ଦକ୍ଷ ପ୍ରଜାପତିଙ୍କର ଷାଠିଏ ଦୁହିତା ।
ଦଶ କନ୍ୟା ବିଭା ହେଲେ ସେ ଧର୍ମଦେବତା ॥
ତନ୍ ଭ୍ରନ୍ ମେଧା ଆଉ ଶ୍ରଦ୍ଧା ଧୃତି ମୂର୍ତ୍ତି ।
ଶାନ୍ତି ବୁଦ୍ଧା ସୁମେଧା ଯେ ତୁଷ୍ଟାନାମ ଖ୍ୟାତ ॥
କି କହିବ ଏହାଙ୍କର ରୂପ ଗୁଣମାନ ।
ଏ ଦଶ କୁମାରୀ ଧର୍ମେ କଲେ ସେ ପ୍ରଦାନ ॥
ଉମା ନାମେ କନ୍ୟାକୁ ସେ କାଶ୍ୟପଙ୍କୁ ଦେଲ ।
ସାବିତ୍ରୀ କନ୍ୟାକୁ ମୋତେ ପ୍ରଦାନ କରିଲ ॥
ବରୁଣଙ୍କୁ ପ୍ରଦାନ ସେ କଲ ଲୀଳାବତୀ ।
ଅଗ୍ନିକି ଦେଲ ସେ ସ୍ୱାହା ସ୍ୱଧା ଯେ ଦୁହିନ୍ତି ॥
ବୃହସ୍ପତିଙ୍କି ପ୍ରଦାନ କଲ କନ୍ୟା ହାସ ।
କୁବେରଙ୍କୁ ପ୍ରଦାନ ସେ କରି ଦେଲ ସାସ ॥
ଅଦିତ୍ୟଙ୍କୁ ଦେଲ ଛାୟା ମାୟା ନାମେ ବାଳୀ ।
ଚନ୍ଦ୍ରଙ୍କୁ ଦେଲ ସପତ ବିଂଶତି ଦୁଲାଳୀ ॥
ଅଶ୍ୱିନୀ ଦ୍ୱିଜା କୃତ୍ତିକା ରୋହିଣୀ ସୁନୟ ।
ମୃଗଶିର ଅଦ୍ରା ପୁନର୍ବସୁ ଅଦିକର ॥
ପୁଷ୍ୟା ଅଶ୍ଳେଷା ଯେ ମଘା ପୂର୍ବାଫାଲ୍‌ଗୁନୀ ।
ଉତ୍ତରଫାଲ୍‌ଗୁନୀ ହସ୍ତା ଚିତ୍ରା ସୁଲକ୍ଷଣୀ ॥
ସ୍ୱାତୀ ବିଶାଖା ଯେ ଅନୁରାଧା ଜ୍ୟେଷ୍ଠା ମୂଳା ।
ପୂର୍ବା ଉତ୍ତରଷାଢ଼ା ଯେ ଶ୍ରବଣା ସୁଶୀଳା ॥
ଧନିଷ୍ଠା ଯେ ଶତଭିଷା ପୂର୍ବଭାଦ୍ର ବାଳୀ ।
ଉତ୍ତରଭାଦ୍ରବ ରେବତୀ ଯେ ଶୁଦ୍ଧଶାଳୀ ॥
ଦକ୍ଷପ୍ରଜାପତି ଗୃହେଁ ଏହାଙ୍କର ଶୋଭା ।
ଚନ୍ଦ୍ରଦେବତାଙ୍କୁ ଏତେ କନ୍ୟା କଲ ବିଭା ॥

ହେମାନାମେ କୁମାରୀ ଯେ ପରଂଯୋଗୀ ହେଲା ।
ବିଭା ନୋହିଲା ତାହାଙ୍କୁ ଭର୍ତ୍ତା ନ ଗଢ଼ିଲା ॥
ତେଣୁକରି ସେହି କନ୍ୟା ପରଂଯୋଗୀ ହେଲା ।
ପୁଣିହିଁ କଶ୍ୟପଙ୍କୁ ସେ ତେର ସୁତା ଦେଲା ॥
ଦିତି ଅଦିତି କୁନସ୍ୱ ବିନତା ଗନ୍ଧର୍ବୀ ।
ବସୁ ବୃଷା ବାଳୀ ଗୃଧ୍ୟା ଅରିଷ୍ଟା ସୁରଭି ॥
ସିଂହିକା ଯକ୍ଷା କନ୍ୟକା ଏ ତେର କୁମାରୀ ।
ସ୍ୱୟମ୍ବର କରି ସେହି ଯାଙ୍କୁ ବିଭା କରି ॥
ମାଗୋ ଅଦିତିର ତହୁଁ ଦେବେ ଉତପତ୍ତି ।
ଦିତିତହୁଁ ଜାତ ହେଲେ ପବନ ସମ୍ଭୂତି ॥
ନାଗେ ଜାତ ହୋଇଲେ ଯେ କୁନସ୍ୱରତହୁଁ ।
ବିନତା ତହୁଁ ଗରୁଡ଼ ହେଲେ ମହାବାହୁ ॥
ଗନ୍ଧର୍ବୀ ଉପୁଜାଇଲା ଏ ଗନ୍ଧର୍ବ ଲୋକ ।
ସୁଖେ ଥାନ୍ତି କରି ନୃତ୍ୟ ଗୀତ କଉତୁକ ॥
ଯକ୍ଷାଠାରୁ ଜନ୍ମ ହେଲେ ଯକ୍ଷ ସେ କିନ୍ନର ।
ବୃଷା ଜାତ କଲା ଚତୁଷ୍ପଦ ଜୀବସାର ॥
ସିଂହ ବ୍ୟାଘ୍ର ଭାଲୁ ହସ୍ତୀ ଘୋଡ଼ାଆଦି କରି ।
ବୃଷାବାଳୀ ତହୁଁ ଏହିମାନେ ଅବତରି ॥
ଅରିଷ୍ଟା ଜାତ କଲା ଅରିଷ୍ଟ ଲୋକମାନ ।
ବିଶୁଅଳ ଖଣ୍ଡୁଅଳ ଆଦି ଏତେ ଜନ ॥
କାଳାନ୍ତରୀ ତହୁଁ କାଳ ପୁରୁଷେ ଜନମି ।
ପୂରି ଅଛନ୍ତି ଏମାନେ ନବଦ୍ୱୀପା ଭୂମି ॥
ଅତି କାକୁସ୍ଥ ହୋଇଣ ବ୍ରହ୍ମା କହୁଛନ୍ତି ।
ଜଗତଜନନୀ ଏକ ମନରେ ଶୁଣନ୍ତି ॥
କରପଦ୍ମ ଯୋଡ଼ି ଗୃହପାଟଣ ଦେବଗଣ ।
ଉଭା ହୋଇ କରି ସର୍ବେ କରନ୍ତି କାରୁଣ୍ୟ ॥
ଅଣାକାର ଆଦି ହେମବନ୍ତ ଆଦିକରି ।
ଜନମ ହୋଇଲେ ଅଠଲକ୍ଷ ମହାଗିରି ॥
ସୁରଭିର ତହୁଁ ଉପୁଜିଲା ଯେ ଗୋ ଜୀବ ।
ଗୃଧ୍ୟାତହୁଁ ହେଲେ ଗୃଧ୍ୟଲୋକ ଯେ ସମ୍ଭବ ॥
ଛୁଇଁଲେ ଯେଉଁ ଲୋକଙ୍କୁ ଯାଇଁ ସ୍ନାନ କରି ।
ସେହି ଲୋକମାନେ ଗୃଧ୍ୟାଠାରୁ ଅବତରି ॥
ସିଂହିକା ବୋଲି କହିଣ ଯେବଣ କୁମାରୀ ।
ତାହାର ଗର୍ଭରୁ ମାଗୋ ରାହୁ ଅବତରି ॥
କହନ୍ତି ବ୍ରହ୍ମାଏ ମାଗୋ ଶୁଣ ଗୋସାମଣି ।
କହୁଅଛି ଅସୁରଙ୍କ ଆଦିଜନ୍ମ ପୁଣି ॥

ଆଦିତ୍ୟର ବିବାଦରେ ସ୍କନ୍ଦ ନାଶ ଗଲା ।
ସ୍କନ୍ଦ ଅଙ୍ଗଅଙ୍ଗ କେତୁ ନାମ ଗୋ ହୋଇଲା ॥
କେତୁର କୁମର ମାଗୋ ହେଲା ଜମ୍ଭଦୈତ୍ୟ ।
ଅଜ ବିବାଦେ ତା ନାଶ କଲେ ପୁରୁହୂତ ॥
ଜମ୍ଭଦୈତ୍ୟର ତନୟ ହେଲା ହିରଣ୍ୟାକ୍ଷ ।
ହିରଣ୍ୟାକ୍ଷ ପୁତ୍ର ପୁଣି ହେଲେ ରଷ ଭଷ ॥
ଯହିଁ ଉପଦ୍ରବ କଲେ ସେ ବେନ ରାକ୍ଷସ ।
ତେବେ ସତ୍ୟଯୁଗେ ତାଙ୍କୁ ବିଷ୍ଣୁ କଲେ ନାଶ ॥
ରଷ ଭଷଙ୍କର ପୁତ୍ର ହେତ ଯେ ପ୍ରହେତ ।
ତାହାଙ୍କ ବଧ କଲେ ଶ୍ରୀ ଦାମୋଦର ମୂର୍ତ୍ତି ॥
ହେତ ପ୍ରହେତ ପୁତ୍ର ବଜ୍ରାଙ୍ଗ କାଳାନଳ ।
ଶ୍ରୀକୃଷ୍ଣ ଛେଦିଲେ ତାଙ୍କ ମସ୍ତକ କମଳ ॥
ବଜ୍ରାଙ୍ଗ ସୁତ ହିରଣ୍ୟକବଚ ଯେ ବୀର ।
ଜନାର୍ଦ୍ଦନ ରୂପେ ହରି ନାଶିଲେ ଅସୁର ।
ହିରଣ୍ୟକବଚ ପୁତ୍ର ଯେ ବଜ୍ରକବଚ ।
ଦୁଃସହ ସମରେ ତାଙ୍କୁ ମାରି ସବ୍ୟସାଚୀ ॥
ହିରଣ୍ୟକବଚ ପୁତ୍ର ଅନ୍ଧକ ଦଇତ୍ୟ ।
ବହୁ ସମରେ ମାରିଲେ ତାଙ୍କୁ ବିଶ୍ୱନାଥ ॥
ଅନ୍ଧକର ପୁତ୍ର ହେଲା ତ୍ରିପୁର ରାକ୍ଷସ ।
ଷଷ୍ଟିସହସ୍ର ବର୍ଷେ ତାଙ୍କୁ ନାଶ କଲେ ଈଶ ॥
ତ୍ରିପୁର ପୁତ୍ର ଯେ ଶୁମ୍ଭ ନିଶୁମ୍ଭ ହୋଇଲେ ।
ବେଦବକ୍ଷ ହରଣେ ତା କାମ ନାଶ କଲେ ॥
ଶୁମ୍ଭ ଦୈତ୍ୟ ପୁତ୍ର ଜଳତରଙ୍ଗ ହୁଅଇ ।
କେଶବ କଳ୍ପିତ ଯୁଦ୍ଧେ ମାରି ତାହାଙ୍କୁହିଁ ॥
ଜଳତରଙ୍ଗ ନନ୍ଦନ ହେଲା ଶଙ୍ଖାସୁର ।
ସନ୍ଧ୍ୟାଠାରୁ ବେଦପୋଥି ହରିଲା ମୋହର ॥
ସମୁଦ୍ର ଭିତରେ ଯାଇଁ ପଶିଲା ଲୁଚଣ ।
ମୀନରୂପେ ତାହାଙ୍କୁ ଯେ ମାରି ନାରାୟଣ ॥
ଶଙ୍ଖାସୁର ସୁତ ଯେ ଅବନି ନାମେ ଦୈତ୍ୟ ।
କୂର୍ମରୂପେ ବିନାଶିଲେ ତାହାଙ୍କୁ ଅନନ୍ତ ॥
ଅବନିଦୈତ୍ୟର ପୁତ୍ର ହିରଣ୍ୟାକ୍ଷ ହୋଇ ।
ବରାହ ରୂପେଣ ହରି ଦନ୍ତେ ବିଦାରଇ ॥
ହିରଣ୍ୟାକ୍ଷର ପୁତ୍ର ଯେ ହେଲା ଦୈତ୍ୟକେଶି ।
ଗୋମୁଖ କେଶବ ତାଙ୍କୁ ଯମଘରେ ପେଷି ॥
କେଶିଦୈତ୍ୟର ତନୟ ଅମାତ୍ୟା ଦାନବ ।
ହଗ୍ରୀବରୂପେ ତାହାଙ୍କୁ ନାଶି ବାସୁଦେବ ॥

ଅମାତ୍ୟାର ନନ୍ଦନ ଯେ ହିରଣ୍ୟ ଦନୁଜ ।
ନୃସିଂହ ରୂପେ ତାଙ୍କୁ ମାରିଲେ ଦେବରାଜ ॥
ହିରଣ୍ୟର ପୁତ୍ର ବୈରୋଚନ ଉତପତ୍ତି ।
କପଟେ ହରି ସ୍ତ୍ରୀରୂପେ କଲେ ବିନଶ୍ୟତି ॥
ଭାର୍ଯ୍ୟାରୂପେ ବୈରୋଚନଠାରେ ବଷ୍ଟଥିଲେ ।
କେଶ ଉପାଡଣ ନାଶ ତା ଜୀବନ କଲେ ॥
ବୈରୋଚନର ତନୟ ଉପୁଜିଲା ବଳି ।
ବାମନରୂପେ ଗୃପିଲେ ତାଙ୍କୁ ବନମାଳୀ ॥
ବଳିର ନନ୍ଦନ ପୁଣି ହେଲା ବାଣାସୁର ।
ତାହା ଭୁଲେ ସମର ଯେ କଲେ ଚକ୍ରଧର ॥
ନବଶତ ଅଠାଶୋଇ ଭୁଜ ଛେଦି ତାର ।
ନ କାଟିଲେ ସଦାଶିବ ବୋଲେ ମାତ୍ର ଶିର ॥
ବାଣାସୁର ନନ୍ଦନ ଯେ ନାମ ମାୟାସୁର ।
ତାହାଙ୍କୁ ବିନାଶ କଲେ ଦେବ ଚକ୍ରଧର ॥
ମୟଦୈତ୍ୟ ପୁତ୍ର ଯେ ଅମୟ ହେଲା ଜାତ ।
ସତ୍ୟଯୁଗେ ମାଡ଼ ବସିଲେ ଯେ ହନୁମନ୍ତ ॥
ଅମାତ୍ୟା ନନ୍ଦନ ହେଲା ତାରକା ଅସୁର ।
କାର୍ତ୍ତିକେଶ୍ୱର ହାତରେ ଗଲା ଯମପୁର ॥
ତାହାର ନନ୍ଦନ ଲୌହାସୁର ଉପୁଜଇ ।
ବଜ୍ରସିଂହ ବୋଲିକରି ତାର ପୁତ୍ର ହୋଇ ॥
ବଜ୍ରସିଂହ ପୁତ୍ର ଯେ କପିଳସିଂହ ବୀର ।
କପିଳସିଂହ ପୁତ୍ର ଯେ ମହିଷା ଅସୁର ॥
ମୈଷାସୁର ଦାନବ ଗୋ ଅରାଧିଲା ମୋତେ ।
ନିରାହାରେ ଅଶୀସହସ୍ର ବର୍ଷ ପର୍ଯ୍ୟନ୍ତେ ॥
ମାଗୋ ଭୋଳ ହୋଇଣ ମୁଁ ତାଙ୍କୁ ଦେଲି ବର ।
ବୋଇଲି ଯେ ଇଚ୍ଛା ତୋର ମାଗ ରେ କୁମର ॥
ମାଗିଲା ସେ ପୁରୁଷର ହସ୍ତେ ନ ମରିବ ।
ଅମର ହୋଇଣ ମୁହିଁ ଯୁଗେ ଯୁଗେ ଥିବ ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ରଚନ୍ଦ୍ର ସୂର୍ଯ୍ୟ ।
ଏହାଙ୍କୁ ଜିଣିବ ବରଦେବ ଦେବରାଜ ॥
ସେ ଯାହା ମାଗଇ ଭୋଳେ ମୁଁ ସତ୍ୟ କରଇ ।
ତେଣୁ ଅମର ହୋଇଲା ମୈଷାସୁର ଦେହ ॥
ମୈଷାସୁର ଦୈତ୍ୟର ଗୋ ନୌସହସ୍ର ସେନା ।
ଦେବ ଦାନବରେ ସେ ଯେ ନ ଯାନ୍ତି ଗଣନା ॥
ମହା ପ୍ରତାପୀ ଅଷ୍ଟେନ୍ଦ୍ର ଅସୁର ସଇନ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଘୋଟିଗଲେ ପୁଣି ॥

ବକ୍ରସିଂହ ଦୈତ୍ୟ ମାଗୋ ପଦ୍ମଦ୍ୱୀପେ ରାଜା ।
ସିଂହଳ ଦ୍ୱୀପରେ ମହିଷାସୁର ମହାରାଜା ॥
ଚଣ୍ଡ ମୁଣ୍ଡ ପାତାଳରେ ପାଳନ୍ତି ପରଜା ।
ଉତ୍ତର ଦକ୍ଷିଣେ ଶୂନ୍ୟ ଉପଶୂନ୍ୟ ରାଜା ॥
ପୂର୍ବ ପଶ୍ଚିମରେ କାଳ ବିକାଳ ନୃପତି ।
ବାରଘଣ୍ଟ ବନସ୍ତର ମାଗୋ ଅଧିପତି ॥
ପର୍ବତ ଉପରେ ମାଗୋ ଅଙ୍କାସୁର ରାଜା ।
ଅମର ପୁରେ ଗୋ ଶୁମ୍ଭ ନିଶୁମ୍ଭ ତରଯା ॥
ଅଳକାପୁରରେ ଭ୍ରମର ବେମାଳ ରାଜନ ।
ସପ୍ତମଣୀ ପୁରେ କାଳଦଣ୍ଡ ରାଜା ଜାଣ ॥
ହିରଣ୍ୟଗର୍ଭପୁରରେ ଗୋ ରକ୍ତବୀର୍ଯ୍ୟ ରାଜା ।
ଏ ପ୍ରାୟ ସମସ୍ତ ପୁରେ ଅଧିପ ଦନୁଜା ॥
ନବଦ୍ୱୀପ ସପ୍ତସିନ୍ଧୁ ଦୈତ୍ୟଙ୍କର ବାସ ।
ବୃନ୍ଦାରକେ ମାନ ତୋତେ କରନ୍ତି ଆଶ ॥
ମାତେ ମୋ ଭୁବନ ଅଟେ ଯତଶୀବନ୍ତୀ ଖଣ୍ଡ ।
ତାହାଙ୍କୁ ନାଶିଲେ ପଣି ପାପିଷ୍ଠ ଦୁର୍ଦ୍ଦଣ୍ଡ ॥
ବନ୍ଧୁ ବଚନେ କହିଲେ ଦେବ ବେଦପତି ।
ମାଗୋ ତିନିପୁର ମଧ୍ୟେ ଦୈତ୍ୟ ରହିଛନ୍ତି ॥
ଅତି ଉନମତ୍ତ ହୋଇ ମହିଷା ଚଣ୍ଡାଳ ।
ଦେହଦେନ ରହିଥିବ କସେ ଚିରକାଳ ॥
ଦେବତାଙ୍କ ବିକଳକୁ ଜାଣି ମହାମୂର୍ତ୍ତି ।
ଅଗ୍ନିରୁ ପ୍ରକାଶିଲୁ ଗୋ ଅନାଦି ଶକତି ॥
ମାଗୋ ବ୍ରହ୍ମାୟଣୀ ତୁହି ରୁଦ୍ରାୟଣୀ ତୁହି ।
ପ୍ରସନ୍ନ ନାରାୟଣୀ ତୁ ନାମ ଗୋଟି ବହି ॥
ଇନ୍ଦ୍ରାୟଣୀ ତୁହି ମାଗୋ କର ଏବେ ଦୟା ।
କନ୍ୟାୟଣୀ ତୁହି ମାହେଶ୍ୱରୀ ମହାମାୟା ॥
ଅତୁଷ୍ଟାୟୀ ଅଭୟା ବାସେଳୀ ଉଗ୍ରତାରା ।
ମହା କାତ୍ୟାୟନୀ ମାଗୋ ଭୈରବୀ ତ୍ରିପୁରା ॥
ଅନନ୍ତା ଛାୟା ବିଜୟା ମାୟା ଗୋ ସାଧବ ।
କଙ୍କାଳୀ ବେତାଳୀ କାଳୀ କାଳରାତ୍ରୀ ଦେବୀ ॥
ମହାଦେବୀ ଅମ୍ବିକା ତୁ ଚଣ୍ଡୀ ଯେ ପ୍ରଚଣ୍ଡା ।
ବିକରାଳୀ କାମଦେଣୀ ଚଣ୍ଡୀ ତୁ ଚାମୁଣ୍ଡା ॥
କୃତାନ୍ତକୀ ନାରାନ୍ତକୀ ଦେବୀ ପିଙ୍ଗଳାକ୍ଷୀ ।
ସିଦ୍ଧି ସାଧବୀ ଶ୍ୟାମଳଅକ୍ଷୀ ତୁ କାମାକ୍ଷୀ ॥
କାମରୂପା ଘୋରରୂପା ଅନ୍ନ ତୁ ବାରସ୍ଥା ।
ବିକଟାକ୍ଷୀ ମହାମାୟା ଅନ୍ନପୂର୍ଣ୍ଣା ତୁହି ॥
ମାତଙ୍ଗୀ ମାହେଶ୍ୱରୀ ତୁ ଅଦିତ୍ୟା କୁମାରୀ ।
କଉଶିକୀ ତୁହି କାତ୍ୟାୟନୀ କାଳିକାରୀ ।
ମାତଗୋ ଏକାମ୍ବିକା ତୋର ସହସ୍ରେକ ଭୁଜ ।
ଏତେ ବୋଲି ପ୍ରଣିପତ୍ୟ ଅମର ସମାଜ ॥
ଭକତି ଦେଖି ପ୍ରସନ୍ନ ହେଲେ ମହାଦେବୀ ।
ଶ୍ରୀ ଦୁର୍ଗା ଶ୍ରୀ ଚରଣକୁ ସର୍ବଦେବେ ସେବି ॥
ଅହୋ ପରୀକ୍ଷିତ ରାଜା ଦେବଙ୍କ ବିନ୍ତୀ ।
ବହୁତ ଶୁଣି ପ୍ରସନ୍ନ ହେଲେ କାତ୍ୟାୟନୀ ॥
ଅମୃତ ଦୃଷ୍ଟିରେ ପରମେଶ୍ୱରୀଙ୍କି ଚାହିଁଲେ ।
ବର ମାଗ ପଦ୍ମଯୋନି ଏମନ୍ତ ବୋଇଲେ ॥
ନମସ୍କାର କରି ପାଦେ ବୋଲନ୍ତି ଯେ ବ୍ରହ୍ମା ।
ମାଗିବଇଁ ବର ମାଗୋ ଦୋଷକର କ୍ଷମା ॥
ତେତିଶକୋଟି ଦେବେ ତୋ ଚରଣରେ ଲାଗି ।
ମହିଷାସୁର ବଧକର ଏହି ବର ମାଗୁଁ ॥
ଶ୍ରୀ ଦୁର୍ଗାଦେବୀ ବୋଇଲେ ବ୍ରହ୍ମାର ଅଗର ।
ଶସ୍ତ୍ରମାନ କିଛି ନାହିଁ ମୋହର ହସ୍ତର ॥
ଏମନ୍ତ ବଚନ ଶୁଣି ସବୁ ଦେବମାନେ ।
ଯେ ଯାହାର ଶସ୍ତ୍ରମାନ ଦିଅନ୍ତି ବହନେ ॥
ତ୍ରିଶୂଳ ଡମରୁ ଆଉ ପିନାକ ସାୟକ ।
ଶ୍ରୀ ଦୁର୍ଗାର କରେ ଦେଲେ ନେଇ ତ୍ରିଅମ୍ବକ ॥
ଅଜଗବ ଧନୁ ଆଉ ଯେ ବଜ୍ର ଶକତି ।
ଦୁର୍ଗାର ଶ୍ରୀହସ୍ତେ ଦେଲେ ନେଇ ଶଚୀପତି ॥
ସୂର୍ଯ୍ୟାବର୍ତ୍ତିକ ଚକ୍ର ଯେ ଅମୃତ କୁଣ୍ଡଳ ।
ଅଦିତ୍ୟଦେବତା ନେଇ ଦେଲେ ଜୟମାଳ ॥
ଭରଦ୍ୱାଜ ଦେଲେ ମଣି ଚର୍ମଖଡ଼ଗଧାର ।
ବଣ୍ଡଦେବା ଖଡ୍ଗ ଦେଲେ ଦୁର୍ଗାଙ୍କର କର ॥
ଅମୃତାଖ୍ୟା ନାମେ ଶର ହେମ ଚକ୍ରପାଶ ।
ଚନ୍ଦ୍ରଦେବତାଏ ଦେଲେ ଦୁର୍ଗାଙ୍କର ପାଶ ॥
ଅନଳ ନେଇଣ କରେ ନୀଳଚକ୍ର ଦେଲା ।
କାଳଦଣ୍ଡ ପାଶ ନେଇ ଯମ ସମର୍ପିଲା ॥
ସ୍ତମ୍ଭନ ମୋହନ ବଶ୍ୟ ଆଦି ଉଚ୍ଚାଟନ ।
ଦୁର୍ଗା ଆଗେ ଦେଲେ କାମଦେବ ପଞ୍ଚବାଣ ॥
ମୋହିନୀରେ କାମ୍ୟକ ଶର ଅଦ୍ୱାବଳ ।
ବସୁଧା ଆଣି ଦୁର୍ଗାଙ୍କ କରେ ଦେଲେ ତୋଳ ॥
ଦେଲେ ଶଙ୍ଖଚକ୍ର ଗଦା ମୁଦ୍ଗର ମାଧବ ।
ବିହନ୍ତା ପୁରୁଷେ ଶସ୍ତ୍ର ଆଣିଦେଲେ ଜିବ ॥

ଧନଞ୍ଜୟ ନାମେ ରଥ ପୁଣି ଆଣି ଦେଲେ ।
ଶୁଣ ଦୈତ୍ୟେଶ୍ୱର ଦେବ ଗୁରୁ ଯେ ବୋଇଲେ
ଅଶ୍ୱତ୍ଥାମ ରଥ ଆଣି ଦେଲେକ ମରୁତ ।
ପର୍ବତା ଶସ୍ତ୍ରକୁ ପୁଣି ଦେଲେ ହେମବନ୍ତ ॥
ବରୁଣ ଦେବତା ନେଇ ଦେଲେ ଜଳପାଶି ।
ମନଭେଦ ନାରଚକୁ ଦେଲେ ବ୍ରହ୍ମଋଷି ॥
ନାଗପାଶ ବାଣ ନେଇ ଦେଲେ ଗଣପତି ।
ସୁଧା ଲଡ଼ୁ ଦେଲେ କାର୍ତ୍ତିକେୟ ମହାମତି ॥
ବଜ୍ରବାଣ ନିର୍ଘାତ ଯେ ଅର୍ଦ୍ଧଚନ୍ଦ୍ର ବାଣ ।
ମେଘାସ୍ତ୍ର ଅଗ୍ନିବାଣ ଯେ ଦେଲେ ସୁରଗଣ ॥
ନିଦ୍ରାଣର ମୋହବାଣ ଅଷ୍ଟାଦଶ ବାଣ ।
ମହାବୁଦ୍ଧି ପ୍ରବୁଦ୍ଧ ଯେ ଦେଲେ ତତକ୍ଷଣ ॥
ଇନ୍ଦ୍ର ଯେ ଅକ୍ଷୟ ତୋଣ ମହାକାଳ ବାଣ ।
ବଜ୍ରଶକ୍ତି ବଜ୍ରକାଟି ଦେଲେ ନେଇ ପୁଣ ॥
ପୁଣ ସମର୍ପିଲେ ରତ୍ନମଣି ଯେ ସରଳ ।
ଶତମନ୍ୟୁ ଦେଲେ ନେଇ ଅଜପା ଯେ ମାଳ ॥
ରସ ରସାୟନ ଆଉ କାଞ୍ଚନ ମୌକ୍ତିକ ।
ଅଶ୍ୱିନୀକୁମାର ଦେଲେ ସେନ ଋଦ୍ଧି ସିଦ୍ଧି ॥
ଅନନ୍ତ ବାସୁକୀ ଆଦ ଅଷ୍ଟକୁଳୀ ନାଗେ ।
ନାଗପାଶ ବାଣ ନେଇ ଦେଲେ ଦୁର୍ଗା ଅଗେ ॥
ସୋମ ଅଚଳ ମଦନ ମାଦକ ମୋହନ ।
ଅନାଦ ଦେବତା ଦେଲେ ଏତେ ବାଣଗଣ ॥
ଋକ ଯଜୁ ସାମ ଯେ ଅଥର୍ବ ବେଦମନ୍ତ୍ର ।
ବ୍ରହ୍ମାଏ ଦେଲେ ନେଇଣ ଦୁର୍ଗାର ଅଗ୍ରତ ॥
ଗଜସ୍ୱ ଶଜସ୍ୱ ପ୍ରସନ୍ନ ଯେ ନଳବସ୍ତ୍ର ।
ଅର୍ଦ୍ଧପାକ ପୂର୍ଣ୍ଣପାକ ଦେଲେ ଋଦ୍ଧି ସିଦ୍ଧି ॥
ସ୍ୟମନ୍ତକ ମଣି ପୁଣ ବଇଡୂର୍ଯ୍ୟ ମଣି ।
ତମିରହରଦାଉଣାଦ ରଥ ଦେଲେ ଆଣି ॥
ଅନଳ ନାରଚ ପୁଣ ମହାମନ୍ତ୍ର ଶର ।
ଦୁର୍ଗାର ହସ୍ତରେ ନେଇ ଦେଲେ ବୈଶ୍ୱାନର ॥
ବିପୁଳୀ ଅବଳୀ ଅମର ନଯ କୋଷଧନୁ ।
ଦୁର୍ଗାଦେବୀ କରେ ନେଇ ଦେଲେ ଶତମନ୍ୟୁ ।
ଅମ୍ଳାନ ପାଟ ଲଗିଦେଲେ ଦେବୀ ଅଙ୍ଗେ ।
ତେତିଶକୋଟି ଦେବତା ଶସ୍ତ୍ର ଦେଲେ ଅଗେ ॥
ଶସ୍ତ୍ର ଶାସ୍ତ୍ର ପାଇ ବୋଇଲେକ ଗୋସାମଣି ।
ବାହାନ ବିନୁ ଦୈତ୍ୟକୁ ପାରିବି କି ଜିଣି ॥

ଏ ବାଣୀ କହନ୍ତେ ଯହୁଁ ଦୁର୍ଗତିତାରଣୀ ।
ଯେ ଯାହା ବାହନ ଦେଲେ ଦେବତାଏ ଆଣି ॥
ଶ୍ରୀ ଦୁର୍ଗାର ବଚନରେ ଦେବେ ଉଦବେଗ ।
ସିଂହ ନେଇଣ ଦୁର୍ଗାଙ୍କୁ ସମର୍ପିଲେ ବେଗ ॥
ମନପବନ ଦଣ୍ଡକୁ ନାରଦ ଯେ ଦେଲେ ।
ଖେଚରସ୍ୱ ଯାନ ଅନନ୍ତଦେବ ସମର୍ପିଲେ ॥
ମରାଳ ବାହନ ନେଇ ସମର୍ପିଲେ ଧାତା ।
ଗରୁଡ଼କୁ ଦେଲେ ନେଇ ଜଗତକରତା ॥
ଅତ୍ୟନ୍ତ ସନ୍ତୁଷ୍ଟ ସେହୁ ହୋଇଣ ଈଶାନ ।
ଦୁର୍ଗାର ଛାମୁରେ ଦେଲେ ବୃଷଭବାହନ ॥
ଦେବତାମାନଙ୍କର ଯେ ରାଜା ପୁରୁହୂତ ।
ଆଣିସମର୍ପିଲେ ଯାନ ନାମ ଐରାବତ ॥
ଶାର୍ଦ୍ଦୂଳ ବାହନ ସମର୍ପିଲେ ଯେ ଅନଙ୍ଗ ।
ପବନଦେବତା ଆଣି ଦେଲେ ବେଗେ ମୃଗ ॥
କାଳାନଳ ଦେବ ଅନନ୍ତ ଯେ ବୈଶ୍ୱାନର ।
ମେଷ ବାହନ ସେ ଦେଲେ ଦୁର୍ଗାର ଅଗର ॥
ଭୈରବ ଶକ୍ତି ଅଭୟ ଆନ କାଳପାଶି ।
ଯମଦେବତା ନେଇଣ ଦେଲେକ ମହିଷି ॥
ତାରକା ନିସୂଦନ ଯେ ହରର କୁମାର ।
କାର୍ତ୍ତିକେଶ୍ୱର ଅର୍ପିଲେ ନେଇଣ ମୟୂର ॥
ମକର ବାହନ ନେଇ ଦେଲେକ ବରୁଣ ।
ଦେଇଥିଲେ ପୂର୍ବହୁଁ ସେ ବହୁ ବାଣଗଣ ॥
ଅନେକ ହରଷ ହୋଇ ମନେ ଯେ ଭାସ୍କର ।
ସପ୍ତଅଶ୍ୱ ଯାଚିଦେଲେ ଦୁର୍ଗାର ଛାମୁର ॥
ଅମ୍ବୁଦେବ ବ୍ୟାଘ୍ର ଦେଲେ ଦୁର୍ଗାର ଛାମୁର ।
ରତ୍ନାବଳ ଯାନ ନେଇ ଦେଲେକ କୁବେର ॥
ଧାରଧାନେ ଶୁଣ ଅହୋ ଦୈତ୍ୟେଶ୍ୱର ରାଜେ ।
ଯେ ଯାହା ଭୂଷଣ ଯାନ ନେଇ ଦେବତାଏ ॥
ବୋଇଲେ ତୋତେ ସମସ୍ତେ ଦେଲୁଁ ଅସ୍ତ୍ରକାଟି
ପାପଅସୁରା ହେନ ଅମ୍ଭେ ଜଳେ ଅଛୁଁ ବୁଡ଼ ॥
ହେ ମାତ ତୋ ପାଦେ ଆମ୍ଭ ଜନ୍ମେ ଜନ୍ମେ ସେବା ।
ମହିଷା ମାରି ଅକ୍ଷୟ ସ୍ୱର୍ଗପୁର ଦେବା ॥
ଦୁର୍ଗା ବୋଇଲେ ତୁମ୍ଭଙ୍କୁ ହେଲି ମୁଁ ପ୍ରସନ୍ନ ।
ଅଙ୍ଗେ ଥାଅ ତୁମ୍ଭେ ଯେ ଯାହାର ସ୍ଥାନ ।
ଅମର ହୋଇ ପ୍ରମାଦେ ଡାକିଲ ଯେ ମୋତେ ।
ଆଜହୁଁ ଦୈତ୍ୟଙ୍କୁ ମାରିବଇଁ ତୁମ୍ଭ ଅର୍ଥେ ॥

ଅଗ୍ନି ଉଦ୍ଧାରଣ ମୂର୍ତ୍ତିମନ୍ତ ସେ ହୋଇଲେ ।
ଦେବଙ୍କୁ ଅଭୟ ବର ପ୍ରସନ୍ନରେ ଦେଲେ ॥
ଶୁଣ ହୋ ପରୀକ୍ଷରାଜା କହେ ଶୁକମୁନି ।
ଦୁର୍ଗାଙ୍କୁ ଦେଖିଣ ବ୍ୟଥା ଛାଡିଲେ ଅବନୀ ॥
ଅନନ୍ତକୋଟି ବ୍ରହ୍ମାଣ୍ଡ ଏକଦୃଷ୍ଟି ଯୋଗି ।
ବିଜେ ମାହେଶ୍ୱରୀ ଯାଇଁ ଗଜଇନ୍ଦ୍ର ପିଠି ॥
ସହସ୍ର ଭୁଜେ ସହସ୍ର ଶସ୍ତ୍ର ଅଙ୍ଗେ ଘେନା ।
ବ୍ରହ୍ମାଣ୍ଡେ ଲାଗିଲା ଉଗ୍ରମୂର୍ତ୍ତିର ମୂର୍ଚ୍ଛନା ॥
ସମସ୍ତ ଦେବତା ଦେଖି କଲେ ବଡ଼ ଭୟେ ।
ବୋଇଲେ ଏ ସଙ୍କଟରୁ ରଖ ମହାମାୟେ ॥
ଦୁର୍ଗା ବୋଇଲେ ହେ ଦେବେ ଭୟ ନାହିଁ କର ।
ଅସୁର ଭୁବନକୁ ମୁଁ ଏବେ ଯାଉଅଛ ॥
ବାହାନ ଶହସ୍ରମାନ ଥାଉଁ ଶୂନ୍ୟମାର୍ଗେ ।
ସ୍ମରଣା କଲେ ପ୍ରାପତ ହେବ ମୋତେ ବେଗେ ॥
ସେ ଦୁର୍ଗାଚରଣତଳେ ରହୁ ମୋର ମତି ।
ଶାରଳାଦାସ ଯେ ଏହା ଭଣିଲେ ଦବାବତି ॥



## ଦୁର୍ଗାଙ୍କର ରତ୍ନଗିରିରେ ଅବସ୍ଥିତି ଓ ଚଣ୍ଡାଳପୁର ବିବରଣ ।

ବଦନ୍ତି ଶୁକ ଶୁଣ ହେ ପରୀକ୍ଷ ରାୟେ ।
ମେରୁ ଐଶାନ୍ୟ ମୂରତି ହେଲେ ମହାମାୟେ ॥
ବହଇ ମେଖଳାରୂପେ ଐଶାନ୍ୟ ବାହିନୀ ।
ଗଙ୍ଗା ଯମୁନା ଯେ ସରସ୍ୱତି ଧାର ତିନି ।
ମେରୁ ଦୂରେ ପଞ୍ଚଷଷ୍ଠି ସହସ୍ର ଯୋଜନ ।
ଉଦ୍ୟାନ ନାମରେ ସରସ୍ୱତୀ ତୀରେ ବନ ॥
ଧବଳାଙ୍ଗୀ ଗିରିର ଯେ ଐଶାନ୍ୟ ଭାଗରେ ।
ତହିଁ ପାଶେ ଅଛି ଗିରି କଣ୍ଟୁ ନାମରେ ॥
ସେହି ପର୍ବତ ଉପରେ ବିଜେ ଶାକମ୍ଭରୀ ।
ଦେବତାଙ୍କ ହିତରେ ସେ ଯେଣୁ ଅବତରି ॥
ସେ ଗିରିକି ଛଡ଼ା ଜେନାବଳ ଯେ ନଗରୀ ।
ପଞ୍ଚଦଶ ଯୋଜନ ତ ମୈଷାପୁରପୁରୀ ॥
ସେ ଗିରି ଉତ୍ତରପାଶେ ଜଟୀନାମେ ବଟ ।
କୁଳବତୀ ପାଟଣା ଯେ ତା ଉପର ତଟ ॥
ଲବଣ ସମୁଦ୍ର ଅଛି ତହିଁର ସନ୍ନିଧେ ।
ଦେଖି ଗୋସାମଣୀ ଆନନ୍ଦିତ ହେଲେ ହୃଦେ ॥

ସହସ୍ରେକ ଭୁଜ ଦେବୀ ହୃଦେ ଗୋପ୍ୟକଲେ ।
ଆକାଶପଥରେ ଶସ୍ତ୍ରମାନହିଁ ଥୋଇଲେ ॥
ସମସ୍ତ ସେ ଅନ୍ତରୀକ୍ଷେ ରଖିଲେ ଭବାନୀ ।
ବସିଲେ ସେହି ମୋହନୀସ୍ୱରୂପକୁ ଘେନି ॥
ଅନେକ ଧନ ରତନ ଆଭରଣ କାୟେ ।
ଦିବ୍ୟ ଚୀନବାସ ଉପରୀଣି ମହାମାୟେ ॥
ଏକାଇ ଶରୀର ତାଙ୍କ ରୌଦ୍ରପୂର ଯୋଗି ।
ବିଜୟ ମାହେଶ୍ୱରୀ ଯେ ରତ୍ନଗିରି ପିଠି ॥
ଅସୁର ଭୁବନକୁ ସେ ଦେଲେ ଦେବୀ ଦୃଷ୍ଟି ।
ବନକନ୍ଦରକୁ ପୁଣି କରନ୍ତି ପିଠି ॥
ଅମରଭୁବନ ପ୍ରାୟେ ଅସୁରଙ୍କ ପୁରୀ ।
ପ୍ରକାଶିଲେ କାଳରୁଦ୍ର ରୂପ ଶାକମ୍ଭରୀ ॥
ବାରଂବାର ପକାଇଲେ ଯହିଁ କୋପ ଦୃଷ୍ଟି ।
ଜେନାବଳ ନଗ୍ରେ ଉପୁଜିଲାକ ଅରିଷ୍ଟି ॥
ଶୁଣ ହେ ପରୀକ୍ଷ ରଜା କହେ ଶୁକମୁନି ।
ନିଶ୍ଚଳ ଆସନେ ବିଜେ ଦେବୀ କାତ୍ୟାୟନୀ ॥
ସିଂହଳ ବୋଲି କରଣ ଯେବଣହିଁ ଦ୍ୱୀପ ।
ରତନେ ନିର୍ମିତ ସେହି ହୋଇଛି ସ୍ୱରୂପ ॥
ମେରୁବାହିନୀ ଯେ ଲକ୍ଷ୍ମୀ ଭଦ୍ରା ସରସ୍ୱତୀ ।
ସିଂହଳଦ୍ୱୀପର ସେ ଯେ ଐଶାନ୍ୟେ ବହନ୍ତି ॥
ସେ ତେନି ନଦୀଙ୍କ ମଧ୍ୟେ ସ୍ଥଳ ସୁଶୋଭନ ।
ବସଇ ସୁରେଶ ନଗ୍ର ଅତି ସ୍ୱଚ୍ଛପନ ॥
ଜେନାବଳ ନଗ୍ର ଯେ ଚଣ୍ଡାଳ ପୁର ନଗ୍ର ।
ଜମ୍ବୁପୁର ନଗ୍ର ଚଣ୍ଡପୁର ନାମେ ନଗ୍ର ॥
ସେ ନଗ୍ରକୁ ବେଢ଼ି ସରସ୍ୱତୀ ଲକ୍ଷ୍ମୀ ଭଦ୍ରା ।
ବହିଲେକ ଯୋଗେଶ୍ୱରୀ ନେଲେ ନାହିଁ ନିଦ୍ରା ॥
ତହିଁ ମଧ୍ୟେ ହର ବ୍ରହ୍ମା ନାମେ ଏକ ବନ ।
ଦେବ ଯୁଣେ ନବସହସ୍ର ଯୋଜନ ବିସ୍ତୀର୍ଣ୍ଣ ॥
ସେ ବନଭିତରେ ଯେତେ ବୃକ୍ଷଗଣ ଛନ୍ତି ।
ସୁସ୍ୱାଦୁ ପଦାର୍ଥ ସୁଧାରସ ସେ ଦିଅନ୍ତି ॥
ଆମ୍ବ ଜାମ୍ବୁ ନଡ଼ିକାଳ ଗୁଆ ଦ୍ରାକ୍ଷା ଫଳ ।
ପନସ ମିରିଚା ଚମ୍ପା ବରକୋଳି ତାଳ ॥
କରଞ୍ଜା ବଉଳ ରମ୍ଭା ଲବଙ୍ଗର ଲଟି ।
ଅଁଳା ଭଲିଆ ବେଲ ବୃକ୍ଷ କୋଟି କୋଟି ॥
ଖଜୁରି ଲେମ୍ବୁଉ ଟଭା ଦିବ୍ୟ ନାଗରଙ୍ଗ ।
କରମଙ୍ଗା ଜମ୍ବିଳ ଯେ ବୃକ୍ଷ ମାତୁଲିଙ୍ଗ ॥

କାଞ୍ଚନ କଳଶ କେମ୍ବୁ ବୃକ୍ଷ ବଦ୍ୟମାନ ।
ଏସନେକ କର ଯାତା ଭିଅଛନ୍ତି ବନ ॥
ଫଳ ବୃକ୍ଷ ବ୍ୟତିରେକେ ଅନ୍ୟ ବୃକ୍ଷ ନାହିଁ ।
ବହୁବିଧ ସେ ବନ ବେଢ଼ିଅଛି ରହି ॥
କୁଣ୍ଡଳ ପର୍ବତ ରମ୍ୟ ଗିରି ପରବତ ।
ଟସର ଅସ୍ଥାନ ଯହିଁ ବହୁଧା ନିର୍ମିତ ॥
ଏ ସ୍ଥିର ପର୍ବତ ମଧ୍ୟେ ଅଛି ବହୁଚିର ।
ସେ ଗିରି ଉପରେ ବଜେ ଦେବୀ ମାହେଶ୍ୱରୀ ॥
ଏହା ଶୁଣି ନୃପ ପରୀକ୍ଷିତ ଯେ ବୋଇଲା ।
ଅହେ ଶୁକ ବ୍ରହ୍ମା ଏତ ସନ୍ଦେହ ଲାଗିଲା ॥
ନରେକ କହିଲ ଯେ ଚଣ୍ଡାଳ ପୁର ବୋଲି ।
ତାହା ଶୁଣି ମୁହିଁ ବଡ଼ ଆଶ୍ଚର୍ଯ୍ୟ ହୋଇଲି ॥
କପାଇଁ ଚଣ୍ଡାଳ ନଗ୍ର ତାହାର ଯେ ନାମ ।
ଏହା ବିସ୍ତାରଣ କହ ହେ ମୁନି ଉତ୍ତମ ॥
ଶୁକମୁନି ବୋଲନ୍ତି ଯେ ଅହୋ କୁରୁନାହା ।
ଏକ ମନ ହୋଇ ଶୁଣ କହଇ ମୁଁ ତାହା ॥
ସତ୍ୟଯୁଗରେ ନହୁଷ ନାମେ ନରପତି ।
ତାହାର ରାଜ୍ୟରେ ମେଘ କଲାକ ଅଗତି ॥
ସାର ଦ୍ୱୀପ ମଧ୍ୟରେ ଯେ ଅପାଳକ କଲା ।
ପାଞ୍ଚବର୍ଷ ପରଯନ୍ତେ ମେଘ ନ ବର୍ଷିଲା ॥
ବୁଦ୍ଧିମନ୍ତ ଅଟଇ ସେ ନହୁଷ ରାଜନ ।
ବେନି ବର୍ଷ ପ୍ରଜାଙ୍କୁ ସେ ପୋଷେ ଦେଇ ଅନ୍ନ ॥
ରାଜାର ଭଣ୍ଡାରେ ଥିଲା ଯେତେ ଧନ ଦ୍ରବ୍ୟ ।
ପ୍ରଜାମାନଙ୍କୁ ସେ ସବୁ ବାଣ୍ଟିଦେଲା ସର୍ବ ॥
ଏହିରୂପେ ଚାରିବର୍ଷ ଗଲା ଗତ ହୋଇ ।
ପୁଣିହିଁ ସେ ମେଘମାନ ନ ପାଳିଲେ ତହିଁ ॥
ପ୍ରଜାଙ୍କର କଷ୍ଟଦେଖି ନହୁଷ ନୃପତି ।
ଦେବତା ବ୍ରାହ୍ମଣ ସେବା କରିଲା ଦିନରାତି ॥
ହୋମଯାଗ ଜପତପ ମେଘ ନୋହିଲେ ଯେ ଶାନ୍ତ ।
ବରଷା ନ କଲେ ଯହୁଁ ନହୁଷର ପୃଥ୍ୱୀ ॥
ଦେବ ବ୍ରାହ୍ମଣଙ୍କ ବୋଲ ଯହିଁ ନ ରହିଲା ।
ବଳେ ସେ ରାଜା ସବୁର ଅଖେଦ ହରିଲା ॥
ବ୍ରାହ୍ମଣମାନେ କହିଲେ ତେଣୁ ବଶିଷ୍ଠଙ୍କୁ ।
ସତ୍ୟଯୁଗେ ନ ପୂଜିଲେ ବ୍ରାହ୍ମଣମାନଙ୍କୁ ॥
ଅନ୍ୟ ଯୁଗମାନେ ଏବେ ହୋଇଯିବେ ଭ୍ରଷ୍ଟ ।
ପିତାମହ ଆଗରେ ତୁ କହ ହୋ ବଶିଷ୍ଠ ॥

ବଶିଷ୍ଠ କହିଲେ ପିତାମହର ଅଗ୍ରତେ ।
ଇନ୍ଦ୍ର ନ ବର୍ଷିଲା ପାଞ୍ଚବରଷ ପର୍ଯ୍ୟନ୍ତେ ॥
ରାଜାଙ୍କ ପୁରୁଣା ଧନ ଦ୍ରବ୍ୟ ଥିଲା ଯେଣୁ ।
ବେନିବର୍ଷ ବଞ୍ଚିଲେକ ଲୋକମାନେ ତେଣୁ ॥
ଅରବର୍ଷ ତହିଁ ମେଘ ନ କଲାକ ବୃଷ୍ଟି ।
ରାଜ୍ୟ ଧନ ପ୍ରଜାଙ୍କୁ ସେ ଦେଲା ନେଇ ବାଣ୍ଟି ॥
ଅଦର ବର୍ଷାହିଁ ମେଘ ନ ପାଳିଲା ପୁଣ ।
ରାଜା ବୋଲେ ଧନ ଦେଇ ଧାନ ଏବେ କିଣ ॥
ଚାରି ବର୍ଷ ପ୍ରଜାଗଣ ବଞ୍ଚିଲେ ଏମନ୍ତେ ।
ପୁଣିହିଁ ମେଘ ଯେ ନ ବର୍ଷିଲା କଦାଚିତେ ॥
ବଶିଷ୍ଠ କହିଲେ ଏହେ ସେ ପିତାମହଙ୍କୁ ।
ଅପାଳକ ହେଲା ପ୍ରଭୁ ମଧ୍ୟ ଭୁବନକୁ ॥
ମେଘେ ନ ପାଳିଲେ ଦେବ ନହୁଷର ରାଜ୍ୟ ।
ଏଥକୁହିଁ କସ ଅଜ୍ଞା ଦଅ ବ୍ରହ୍ମରାଜ ॥
ପିତାମହ ଶୁଣିଣ ଯେ ହୋଇଲେ ବିଷାଦ ।
ନଷ୍ଟପ୍ରୁ ନହୁଷ ରାଜ୍ୟେ ପଡ଼ିଲା ପ୍ରମାଦ ॥
ନ ଜୀଇବେ ସେ ଭୁବନେ ଅନ୍ୟ ଜୀବଜନ୍ତୁ ।
ପିତାମହ ଅଜ୍ଞା ଦେଲେ ନାରଦେ ଯାଅନ୍ତୁ ॥
ଏବେ ଠାବ କର ଅସ ଧାନ ଅଛି କାହିଁ ।
ଅମ୍ଭକୁ କହିଲେ ଅମ୍ଭେ ଦେବା ତାଙ୍କୁ ନେଇ ॥
ତୁ ଯେ ତ୍ରିଭୁବନରେ ବୁଲୁ ଜାଣୁ ହୋ ସମସ୍ତ ।
ନାରଦ ବୋଇଲେ ଖୋଜିବି ମୁଁ ପୁର ସାତ ॥
ପିତାମହ ବଚନରେ ଗଲେକ ନାରଦେ ।
ଶ୍ୱେତଦ୍ୱୀପ ମଧ୍ୟରେ ଯେ ପଶିଲେ ସାନନ୍ଦେ ॥
ସିଂହଳଦ୍ୱୀପରେ ପୁଣ୍ୟତୋୟା ନଦୀତୀରେ ।
ମହାସମୃଦ୍ଧେ ଚଣ୍ଡାଳ ନଗରମଧ୍ୟରେ ॥
ଘୋଷଣା କରି ଅମ୍ବିକା ନାମରେ ଚଣ୍ଡାଳ ।
ମହାସ୍ଥାନେ ଥାଇ ପୁଣ୍ୟତୋୟା ନଦୀତୀର ॥
ଚଣ୍ଡାଳର ପାଞ୍ଚପଦ୍ମ ଧାନ ଗଦା ଅଛି ।
ତାହା ଠାବ କଲେ ଯାଇ ବିଧାତାର ବଛି ॥
ନାରଦ ବସିଲେ ପୁଣ୍ୟତୋୟା ନଦୀକୂଳ ।
ବାରତା ପାଇଣ ମିଳେ ଅମ୍ବିକା ଚଣ୍ଡାଳ ॥
ନାରଦ ବୋଇଲେ ତୋର କହ ଅଧୃତନ ।
ଚଣ୍ଡାଳ ବୋଇଲା ମୁନି ସବୁ ଏହୁ ଧାନ ॥
ତିନଯୋଜନ ପର୍ଯ୍ୟନ୍ତେ କୁଢ଼ ହୋଇଅଛି ।
ତଳେ ଅଛି ପଟା ଉପରରେ ନାହିଁ କିଛି ॥

ମୋହର ଲେଖାରେ କୃଷ୍ଣ ପାଞ୍ଚପଦ୍ମ ବସି ।
ତହିଁର ଉପରେ ଖଗ୍ର କାକର ବରଷି ॥
ଖଗ୍ର ବରଷାର କାଳେ ଥାଇ ସେହୁ ଠାବେ ।
ଚଣ୍ଡାଳ କହନ୍ତି ଶୁଣିଲେକ ମୁନିଦେବେ ॥
ନାରଦ ବୋଇଲେ ଶୁଣ ହେ ଯୋଷଣି ନାର ।
ଏତେ ଧନ ଅରଜିଲୁ କେଉଁ ଏକାକାର ॥
ଅମ୍ବିକା କହିଲା ଶୁଣି ନାରଦଙ୍କ ଆଗେ ।
ସତ୍ରୁ ନାମେ ରାଜା ସତ୍ୟସମ୍ବତ୍ସର ଯୁଗେ ॥
ବଡ଼ ପ୍ରତାପୀ ରାଜନ ଶୈଳଧର ଛୋହୀ ।
ସିଂହଳଦ୍ୱୀପରେ ସେହୁ ଅଟେ ଚକ୍ରବର୍ତ୍ତୀ ॥
ସେ ରାଜାର ମୁହିଁ ବାଡ଼ତାଟ ଯେ ଖଞ୍ଜିଇ ।
ମଳ କାଢ଼ିଣ ମୁଂ ସତ୍ରୁରାଜା ଦେହେ ଠାଇଁ ॥
ତାହାର ମଳ କାଢ଼ିଣ ପକାନ୍ତେଣ ପୃଥ୍ୱୀ ।
ତହିଁ ଧାନ ମୁଣ୍ଡାଏକ ହେଲା ଉତପତ୍ତି ॥
ଶୁଣ ମୁନି ତହିଁରୁ ଧାନ ହେଲା ମାଣକେ ।
ତା ଆଣି କରି ବପନ କରିଲି ହେ ମୁନି ॥
ଯେ ଭରମାଣ ରୁଣିଲି ସେ ଭୂମିର କଚ ।
ତହିଁରୁ ହେଲା କନକ ପୌଷ୍ଟି ଉତପତ୍ତି ॥
ଅହେ ମୁନି ସେ ଧାନକୁ ମୁହିଁ କଲି ବୃଦ୍ଧି ।
କୋଡ଼କେ ପାଞ୍ଚପାହ ଯେ ଯେତେନ ଯଥାବିଧି ॥
ସେ ଭୂମିରେ ରୁଣେ ଯେତେ ତେତେ ଉପୁଜଇ ।
ସବୁ ସଂଯୋଗ କରିଣ ମୁହିଁ ଥୋଇ ଥାଇଁ ॥
ପାଞ୍ଚ ପାହ ପ୍ରମାଣରେ ରୁଣ ମୁଂ ଦଅଇଁ ।
ବଡ଼ନ ପରସ୍ପ କରି ସେ ଧାନ ଘେନଇଁ ।
ଜୀମୂତବାହନ ରାଜ୍ୟେ ଅପାଳକ କଲା ।
ମୋଠାରୁ ଲକ୍ଷେ ଭରଣ ଧାନ ରୁଣ ନେଲା ॥
ବରଷାନ୍ତେ ଦେବ ଲକ୍ଷ ଭରଣ ଯେ ଯାଚି ।
ମୁହିଁ ବୋଇଲି ଏମନ୍ତ ଧର୍ମ କାହିଁ ଅଛି ॥
ଅଟଇ ଜୀମୂତବାହନ ଏହି ବଧାନକୁ ।
କୋଡ଼କରେ ପାଞ୍ଚ ବୃଦ୍ଧି ମାଗଇଁ ଭୂମ୍ଭଙ୍କୁ ॥
ଲକ୍ଷେ ଭରଣକୁ ପାଞ୍ଚପାହ ଯେତେ ହୋଇ ।
ତହୁଁ ଅଧିକ ଗୋଟିଏ ମୁହିଁ ନ ଘେନଇଁ ॥
ଧାନ ଦେଇ ମୋତେ ସର୍ବେ କଲେ ଧନ୍ୟଧନ୍ୟ ।
ବୋଇଲେ ବଞ୍ଚିଥାଅ ତୁ ଅମ୍ଭ ଅସୁ ଘେନ ॥
ଏଣୁ ସତ୍ୟଯୁଗ ନେଲି ବହୁତ କଲ୍ୟାଣେ ।
ଅସୁଖ ବଳିଲା ମୋର ଓଳକଙ୍କ ବଚନେ ॥

ନାରଦ ବୋଇଲେ ଶୁଣ ଅମ୍ବିକା ଚଣ୍ଡାଳ ।
ପାଞ୍ଚ ବର୍ଷ ଅପାଳକ ଦ୍ୱୀପ ଯେ ସିଂହଳ ॥
ନହୁଷ ନରପତିର ଅଟଇ ସେ ରାଜ୍ୟ ।
ତୋ ତହିଁକି ଅଇଲୁଁ ହେ ଅମ୍ଭେ ତେଣୁ ଅଦ୍ୟ ॥
ତୋପରି ବିବେକବନ୍ତ ନାହିଁ ତ୍ରିଭୁବନ ।
ଏ ସଂସାର ଗୋଟିକୁ ତୁ କର ଉଦ୍ଧାରଣ ॥
ଚଣ୍ଡାଳ ବୋଇଲା ମୁହିଁ ନ ଧରିଁ ଅବଧି ।
ଏକ କଥାଏ ମୋହର ଶୁଣ ତପୋନିଧି ॥
ଦିବ୍ୟ ଦୁହିତା ଗୋଟିଏ ଅଛି ଯେ ମୋହର ।
ତାହାର ସମାନେ ମୁହିଁ ନ ପାଇଲି ବର ॥
ସେ ଦୁହିତା ଗୋଟିକ ମୁଁ ପ୍ରଦାନ କରିବି ।
ଏ ଧାନସାକ ତାହାକୁ ଜଉତୁକ ଦେବି ॥
ଏହା ଶୁଣି ନାରଦ ଯେ କର୍ଣ୍ଣେ ହସ୍ତ ଦେଲେ ।
ପିତାମହ ଛାମୁରେ ସେ ଯାଇଣ କହିଲେ ॥
ଶୁଣ ଦେବ ସାବଧାନେ ଅହେ ଜଗତ୍ପିତା ।
ଚନ୍ଦ୍ରମଣି ନାଥ ତୁହି ଜଗତକରତା ॥
ସିଂହଳଦ୍ୱୀପରେ ପୁଣ୍ୟତୋୟା ନଗରରେ ।
ଅମ୍ବିକା ନାମେ ଚଣ୍ଡାଳ ଅଛଇ ତହିଁରେ ॥
ତାହାଠାରେ ଧାନ ଅଛି ପାଞ୍ଚପଦ୍ମ ବସି ।
ମୁଁ ବୋଇଲି ଏ ଧାନ ତୁ ନହୁଷକୁ ଦେସି ॥
ସେହି କଥାରେ ସମ୍ମତ କରିଲା ଚଣ୍ଡାଳ ।
ଧାନ ଦେଇ ନହୁଷକୁ ଦିଅ ତତକାଳ ॥
ନାରଦଙ୍କ ମୁଖୁଁ ଏହି ବଚନକୁ ଶୁଣି ।
ବଶିଷ୍ଠ ବୋଇଲେ ତ୍ରୈଲୋକ୍ୟ ଚନ୍ଦ୍ରମଣି ॥
ନାରଦ ଏବେ ଅଇଲେ ଧାନ ଠାବ କରି ।
ସେ ଧାନକୁ ଆଣୁ ବେଗେ ଯାଇ ଦଣ୍ଡଧାରୀ ॥
ବ୍ରହ୍ମାଙ୍କର ବଚନରେ ବଶିଷ୍ଠ ଯେ ଗଲେ ।
ନହୁଷ ରାଜାକୁ ବେଗେ ଯାଇଣ କହିଲେ ॥
ଅମ୍ବିକା ଚଣ୍ଡାଳଠାରୁଁ ଆଣ ଯାଇଁ ଧାନ ।
ଏହା ବୋଇଲେ ବଶିଷ୍ଠ ମହା ତପୋଧନ ॥
ଯେତେ ପୁରେ ତୋର ହୋଇଅଛି ଅନାବୃଷ୍ଟି ।
ପରଜାମାନଙ୍କୁ ଆଣି ଧାନ ଦିଅ ବାଣ୍ଟି ॥
ଋଷିର ବଚନ ଶୁଣି ରାଜନ ନହୁଷ ।
ପୁଣ୍ୟତୋୟା ନଗରରେ ହୋଇଲା ପ୍ରବେଶ ॥
ସନ୍ନିଧିକୁ ଡାକି ଆଣି ଅମ୍ବିକା ଚଣ୍ଡାଳ ।
ବୋଇଲେ ଏ ଧାନ ରୁଣ ଦିଅ ତତକାଳ ॥

ଚଣ୍ଡାଳ ବୋଇଲା ତୁ ମୋ ଅଟୁ ଚକ୍ରବର୍ତ୍ତୀ ।
ସୋମବଂଶେ ଜାତ ତୁ କି କରିବୁ ଅନୀତି ॥
ତୁମ୍ଭ ବାନ୍ଧବଙ୍କେ ସିନା ତପ ଧର୍ମ ସଙ୍ଗ ।
ନହୁଷ ବୋଲେ ତୋ ଦ୍ରବ୍ୟ ବଳେ କେହ୍ନେ ନେବ
ଚଣ୍ଡାଳ ବୋଇଲା ଯେବେ ଧାନ ନେବୁ ରାଜ୍ୟେ ।
ମୋର ଅଛି ଅବିବାହୀ ସୁନ୍ଦରୀ କନ୍ୟାଏ ॥
ତାହାକୁ ତୁ ବିଭା ଯେବେ ହୋଇବୁ ହେ ରାଜ୍ୟେ ।
ଧାନଯାକ ଜଉତୁକ ଦେବି ମୁଁ ନିଶ୍ଚୟେ ॥
ଏସନେକ ବ୍ରତ ମୁହିଁ କରିଛି ନୃବର ।
ତୁ ଦେବ ରାଜେଶ୍ୱର ହେ ବିଚାର ଯା କର ॥
ଶୁଣିଣ ନହୁଷ ରାଜା କର୍ଣ୍ଣେ ହସ୍ତ ଦେଲା ।
ଶିବ ଶିବ ସ୍ମରି ସେ ବାହୁଡ଼ି ଆଇଲା ॥
ବଶିଷ୍ଠଙ୍କ ଆଗେ ଆସି ନହୁଷ କହିଲା ।
ପ୍ରଥମରେ ହସ୍ତ ଯୋଡ଼ି ନମସ୍କାର କଲା ॥
ଅମ୍ଭର ଚଣ୍ଡାଳର ହେ ଧାନ ଅଛି ଯେତେ ।
ମୋ ଦେଶେ ଅଣ୍ଟିବ ସାତବରଷ ପର୍ଯ୍ୟନ୍ତେ ॥
ସେ ବୋଲେ ମୋହର ଅଛି ଦୁହିତା ଗୋଟିଏ ।
ତାହାକୁ ବିବାହ ଯେବେ ହେବୁ ଦେବରାଜ୍ୟେ ॥
ଏ ଧାନଗୁଡ଼ିକ ତୋତେ ଜଉତୁକ କରି ।
ଦେବି ଏ କଥାକୁ ଅଛି ମୁହିଁ ସତ୍ୟ କରି ॥
ବୁଦ୍ଧି କର ନ ଡରଇଁ ସତ୍ୟ ମୋର ବାକ୍ୟ ।
ଦୁହିତାକୁ ବିଭା କରି ଦେବ ଜଉତୁକ ॥
ମୁଁ କେମନ୍ତେ ବିଭା ହେବି ଚଣ୍ଡାଳ ଦୁହିତା ।
ତେଣୁ ମୁଁ କହି ଆଇଲି ତୋହର ଯେ କତି ॥
ମୁହିଁ ଯୁବତରେ ଅଟେଁ ପୁଣି ସୋମବଂଶୀ ।
ଏଡ଼େବଡ଼ ବଂଶେ ଜନ୍ମି ହୋଇବି କି ଦୋଷୀ ॥
ଏହା ଶୁଣିଣ ବଶିଷ୍ଠ ଶୀଘ୍ର ହୋଇଗଲେ ।
ପିତାମହ ଆଗେ କହି ଅନ୍ତର ହୋଇଲେ ॥
ଏସନ ବଚନ ଶୁଣି ବ୍ରହ୍ମା ହୋଇ ତୁନି ।
ସନ୍ନିଧିକୁ ଡକାଇଲେ ସେ ବଶିଷ୍ଠ ମୁନି ॥
ତୁ ବେଗେ ଯାଅ ବଶିଷ୍ଠ ଚଣ୍ଡାଳର କତି ।
ସେ ଧାନ ସମସ୍ତ ନେଉ ନହୁଷ ନୃପତି ॥
ଶୁଣ ହୋ ପରୀକ୍ଷ ପତି ଆଜ୍ଞା ଘେନି ଶିରେ ।
ଚଳିଲେ ବଶିଷ୍ଠ ପୁଣ୍ୟତୋୟା ନଦୀତୀର ॥
ସେ ଚଣ୍ଡାଳ ଦେଖିଲା ଯେ ବଶିଷ୍ଠ ମୁନିଙ୍କୁ ।
ପୂଜା କରି ବହୁ ବହୁ ଦେଲା ନେଇ ତାଙ୍କୁ ।
ବଶିଷ୍ଠ ଋଷି ବୋଇଲେ ଶୁଣ ହୋ ଚଣ୍ଡାଳ ।
ତୋହର ସଞ୍ଚିତ ହୋଇ ଅଛି ଧର୍ମ ବଳ ॥
ବୋଲନ୍ତି ସେ ପଣ୍ଡିତ ଆଗେ ଶୁକମୁନି ।
ଧର୍ମଶାସ୍ତ୍ର ବଶିଷ୍ଠ ଯେ ବଖାଣିଲେ ପୁଣି ।
ଭୋକିଲା ଜନକୁ ବେଳେ ଯେବେ ଦେବ ଅନ୍ନ ।
କୋଟି ସ୍ୱର୍ଣ୍ଣ ଦାନ ନୋହେ ତାହାର ସମାନ ।
ତୋହ ଘରେ ପାଞ୍ଚପଦ୍ମ ଧାନ ଅଛି ବସି ।
ଏ ଧାନ ଆମ୍ଭଙ୍କୁ ଦେଇ ବୈକୁଣ୍ଠେ ବସସି ॥
ଚଣ୍ଡାଳ ବୋଲେ ମୁଁ କିଛି ନ ଜାଣଇଁ ଧର୍ମ ।
ଏକା କଥା ଗୋଟିଏ ମୁଁ ଜାଣଇ ଉତ୍ତମ ॥
ଏ ମୋ ଦୁହିତା ଗୋଟିକ ବିଭା ଯେ ହୋଇବ ।
ସେହି ଲୋକ ଏହି ଧାନ ସବୁ ଘେନିଯିବ ॥
ଶୁଣିଣ ଏହା ବଶିଷ୍ଠ ବାହୁଡ଼ିଣ ଗଲେ ।
ପିତାମହ ଆଗେ ଯାଇଁ ସମସ୍ତ କହିଲେ ॥
ବଶିଷ୍ଠ କହିଲେ ପୁଣ ପିତାମହପାଶ ।
ନୋହିଲେ କପାଇଁ ଫେରି ଆସନ୍ତେ ନହୁଷ ॥
ସେ ବୋଲେ ଯାହାକୁ କନ୍ୟା ପ୍ରଦାନ କରିବ ।
ତାହାକୁ ଏ ଧାନଯାକ ଜଉତୁକ ଦେବ ॥
ଏମନ୍ତ ନିଶ୍ଚୟ କରିଅଛି ସେ ଚଣ୍ଡାଳ ।
କହିଲେ ନ ଶୁଣଇ ତ ଧର୍ମ ଶାସ୍ତ୍ର ବୋଲ ॥
ଯାଅ ତୁ ବଶିଷ୍ଠ ପୁଣି ବୋଇଲେ ବିଧାତା ।
ବିଭା ହୁଅ ଯାଇଁ ତୁ ସେ ଚଣ୍ଡାଳଦୁହିତା ॥
ସେ ଧାନକୁ ଜଉତୁକ ଆଣିଦେବ ଦିଅ ।
ସଚରାଚରର ଜନ୍ତୁ ବହନ ଫିଷ୍ଟାଅ ॥
ଏତେକ ବଚନ ଶୁଣିକରି ମହାମୁନି ।
ଚଣ୍ଡାଳ ପୁରକୁ ବିଜେ କଲେ ତପୋଧନି ॥
ପିତାଙ୍କ ବୋଲରେ ଗଲେ ସେ ବଶିଷ୍ଠ ଯତି ।
ସଙ୍ଗେ ତାହାଙ୍କର ଗଲେ ଋଷି ପଉଲସ୍ତି ॥
ମାର୍କଣ୍ଡେୟ ମୁନି ଯେ ବାଲ୍ମୀକି ଅଗସ୍ତି ।
ବିଶ୍ୱାମିତ୍ର ବିଭଣ୍ଡକ ବ୍ୟାସ ମହାଯତି ॥
ବଶିଷ୍ଠଙ୍କ ତୁଲେ ବ୍ରହ୍ମଋଷିମାନେ ଗଲେ ।
ଅମ୍ଭିକା ଚଣ୍ଡାଳ ପୁର ଦୁଆରେ ମିଳିଲେ ॥
ଋଷିମାନେ ବୋଇଲେ ହୋ ଶୁଣ ତୁ ଚଣ୍ଡାଳ ।
ନହୁଷ ନୃପତି ତ୍ରଇଲୋକ୍ୟ ମହୀପାଳ ॥
ଏ ଧାନଯାକ ମାଗିଲେ ସେ ଆସିଣ ତୋତେ ।
ତୁ ସେ ରାଜାର ବଚନ ଲଙ୍ଘିଲୁ କେମନ୍ତେ ॥

ଅମ୍ବିକା ଚଣ୍ଡାଳ ବୋଲେ ଶୁଣିମା ଗୋସାଇଁ ।
ମୁଁ ଧାନ ଯାଚିଲି ନଅ ସତ୍ୟ ଯେ ରଖାଇ ॥
ଦୁହିତାକୁ ପ୍ରଦାନ ମୁଁ କରିବି ଯାହାକୁ ।
ଧାନଯାକ ଜଉତୁକ ଦେବି ମୁଁ ତାହାକୁ ॥
ବଶିଷ୍ଠ ବୋଇଲେ ଏବେ ଆଣ ତୋର ଝିଅ ।
ଯେ ତୋର କାମନା ଆଣି ଆମ୍ଭଙ୍କୁ ହୋ ଦିଅ ॥
ଶୁଣିଣ ଚଣ୍ଡାଳ ହେଲା ଅନେକ ହରଷ ।
ମଣ୍ଡିଲା ଭୁବନ ସେହୁ ବସ୍ତ୍ରରତ୍ନ କୋଷ ॥
ଅରୁନ୍ଧତୀ ନାମରେ ଯେ ତାହାର କୁମାରୀ ।
ରୂପଗୁଣେ ତାହାକୁ କେ ନ ହୋଇବ ସରି ॥
କମଳନୟନୀ ମତ୍ତ ମରାଳଗମନୀ ।
ପିକଭାଷୀ ଚନ୍ଦ୍ରହାସୀ ମୃଗନୟନୀ ॥
ମଧ୍ୟା ସିଂହୀ ବକ୍ଷନିତମ୍ବ ତାର ଠାଣି ।
ବନ୍ଧୁଳୀ ଅଧର ସେ ଯେ ଧରଣୀଶୋଭିନୀ ॥
ଜାତି ପଦ୍ମିନୀ ତାହାକୁ ନାହିଁ ପଟାନ୍ତର ।
ବେଶ କରି ଆଣିଦେଲା ବଶିଷ୍ଠ ଆଗର ॥
ବଶିଷ୍ଠଙ୍କୁ ମାର୍କଣ୍ଡେୟ ଅଗସ୍ତି ଯେ ମୁନି ।
ବିଭା କରାଇଲେ ତହିଁ ବେଦକୁଳ ଘେନି ॥
ବୈଶାଖମାସ କୃଷ୍ଣପକ୍ଷ ପ୍ରତିପଦା ଦିନ ।
ରବିବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ ॥
ଚଣ୍ଡାଳର ଦୁହିତା ଯେ ଅଟେ ଅରୁନ୍ଧତୀ ।
ତାହାକୁ ବିବାହ ହେଲେ ସେ ବଶିଷ୍ଠ ଯତି ॥
ତାରା ବାର ଗ୍ରହ ଆଉ ଯେ ମାହେନ୍ଦ୍ର ଯୋଗ ।
ଶୁଭେ ବିଭା ବିଧି ଶେଷ କଲେ ଋଷିବର୍ଗ ॥
କୁଳଧର୍ମର ଗୋତ୍ରରେ ସେ ବଶିଷ୍ଠ ଯତି ।
ଅମ୍ବିକା ଗୋତ୍ରେ ବିବାହ ଚଣ୍ଡାଳ ଦୁହିତା ॥
ଅମ୍ବିକା ଗୋତ୍ରୀ ବୋଲି ସେ ଚଣ୍ଡାଳର ଋଷି ।
ବିଭା କରାଇଲେ ବୋଲି ଅଗସ୍ତି ମହର୍ଷି ॥
ବେଦକୁଳ ଶୋଭ ସେ ଯେ ବାଦ୍ୟବନ୍ତ୍ର ଚଉ ।
ହସ୍ତ ଗଣ୍ଠି ବନ୍ଧନାଦ କରନ୍ତି ସମସ୍ତ ॥
ଜୟ ଜୟ ମଙ୍ଗଳ ଯେ ଶୁଭେ ବେଦଧ୍ୱନି ।
ଶୁଭ କ୍ଷଣରେ ବିବାହ କରାନ୍ତି ସେ ବେନି ॥
ବଶିଷ୍ଠଙ୍କର କରରେ ଚଣ୍ଡାଳୀର କର ।
କୁଶ କାଣ୍ଡିଲେ ଅଗସ୍ତି ମହା ମୁନିବର ॥
ସତ୍ୟେ ଘଟେ ଜଳ ଢାଳ ଭରଣ ଅଗସ୍ତି ।
ଅମ୍ବିକା ଚଣ୍ଡାଳ କରେ ଦେଲେକ ଚକ୍ରତ ॥

ଅମ୍ବିକା ଚଣ୍ଡାଳ ବୋଲେ,ନାହିଁ ମୋର ଧନ ।
ପାଞ୍ଚଶ ଅର୍ବୁଦ ମୋର ମାତ୍ର ଅଛି ଧାନ ॥
ତାହା ମୁହିଁ ଜଉତୁକ ଦେଲି ଯଥାବିଧି ।
ବଶିଷ୍ଠ ବୋଲେ ଅମୃତ ଏତେ କାର୍ଯ୍ୟସିଦ୍ଧି ॥
ଜଉତୁକ ସରିଲା ଯେ କୁଶଗଣ୍ଠି ପିଷ୍ଟ ।
ସ୍ୱାହା ସ୍ୱଧା ତୋଷ କଲେ ଲାଜାହୋମ ଗୋଷ୍ଠ ॥
ଅନଳ ମୂର୍ତ୍ତି କାଷ୍ଠଣ ସେ ଅଗସ୍ତି ଦେବେ ।
ହୁତଭୋଗ ଦେଲେ ବୈଶ୍ୱାନରଙ୍କର ଜଭେ ॥
ଏହିରୂପେ ବିଭାଘର ହେଲା ସମାପତ ।
ମହା ସନ୍ତୋଷ ହୋଇଲା ଚଣ୍ଡାଳର ଚିତ୍ତ ॥
ତହୁଁ ବଶିଷ୍ଠ ମହର୍ଷି ନକ୍ଷତ୍ରଙ୍କୁ ରାଜା ।
ଧାନଯାକ ସମର୍ପିଲେ ନଅ ବୋଲି କହି
ତାହା ନେଇ ଗ୍ରାମେ ବାଣ୍ଟିଦେଲା ସେ ସ୍ୱଜନ ।
ସେ ଅନ୍ନ ଖାଇଣ ସର୍ବେ କଲେ ଧନ୍ୟ ଧନ୍ୟ ॥
ବୋଇଲେକ ଅରୁନ୍ଧତୀ ଅମ୍ଭ ଅସ୍ତୁ ଘେନ ।
କୋଟିକଳ୍ପ ବଞ୍ଚିଥାଉ ପତିସହ ପୁଣି ॥
ଶୁଣି ପଣ୍ଡିତ ରାଜା ସର୍ବ ଅନୁରାଗେ ।
ଅରୁନ୍ଧତୀ ବହିଲେକ ବଶିଷ୍ଠଙ୍କ ସଙ୍ଗେ ॥
ବହୁତ ବଚନେ ମହାପାପୁଁ ସେ ତରିଲା ।
ଚଣ୍ଡାଳକୁଳୁଁ ଦୁହିତା ପାର ହୋଇଗଲା ॥
ଏରୂପେ ଅଟଇ ଜାଣ ବ୍ରାହ୍ମଣଙ୍କ ବଳ ।
ଚଣ୍ଡାଳୁଣୀ ଅର୍ଦ୍ଧଅଙ୍ଗ ହେଲା ତତକାଳ ॥
ଯାହା ସ୍ନେହେ ଅରୁନ୍ଧତୀ ସୁଧା ହୋଏ ପାଣି ।
ଦେବଋଷି ରାଜଋଷି କରନ୍ତି ତା ସ୍ନେହ ॥
ବଶିଷ୍ଠେ ଯାଗ କରିଲେ ଅରୁନ୍ଧତୀ ଘେନି ।
ଅନ୍ନପୂର୍ଣ୍ଣା ସଙ୍ଗେ ହେଲା ସେ ସ୍ୱର୍ଗଗାମିନୀ ॥
ତିନ ଅଧିକ ଯେ ଷଷ୍ଠି ଥିଲେ ଅନ୍ନପୂର୍ଣ୍ଣା ।
ଅରୁନ୍ଧତୀ ମିଶି ଚଉଷଠି ଯେ ଗଣନା ॥
ଯେ ବ୍ରହ୍ମଋଷି ପ୍ରଳୟକାଳେ ନୋହେ ନାଶ ।
କାଳେ ଅରୁନ୍ଧତୀ ପୁଣି ହେଲା ଗର୍ଭବାସ ॥
ସେହୁ ଜାତ କରିଲା ଯେ ମହର୍ଷି ଶକ୍ତି ।
ଅତିଭାଗ୍ୟ କରିଥିଲେ ସେହୁ ରୂପବତୀ ॥
ଶକ୍ତିଙ୍କର ନନ୍ଦନ ଋଷି ପରାଶର ।
ପରାଶର ନନ୍ଦନ ଯେ ବ୍ୟାସ ମୁନିବର ॥
ବଶିଷ୍ଠଙ୍କ ତହୁଁ ଷଷ୍ଠି ପୁତ୍ର ହେଲେ ଶେଷେ ।
ତ୍ରୈଲୋକ୍ୟ ପାତକ ନାଶି ହେଲେ ସ୍ୱର୍ଗବାସୀ ॥

ତୁ ପୁଚ୍ଛା କଲୁ ଚଣ୍ଡାଳ ପୁରର ଯେ କଥା ।
କହିଲୁଁ ଯେଣୁ ଅମ୍ବିକ ଚଣ୍ଡାଳବାରତା ॥
ସେ ଚଣ୍ଡାଳ ଅନ୍ନ ଖାଇ ବଢ଼ିଲେ ସଂସାର ।
ପୃଥ୍ୱୀରେ ଶସ୍ୟ ଜାତ ହୋଇଲା ଅପାର ॥
ଅତି ଆନନ୍ଦ ହୋଇଲା ସେ ନନ୍ଦଷ ସ୍ୱାମୀ ।
ସେ ଅମ୍ବିକା ଚଣ୍ଡାଳକୁ ଦେଲା ଦ୍ରବ୍ୟ ଭୂମି ॥
କୁଳବଂଶ ମରଛୁତ ବାଟ ଭୂମି ଦେଲା ।
ତାହା ପାଇ ଚଣ୍ଡାଳ ଯେ ମହାସୁଖୀ ହେଲା ॥
ସେ ନଗ୍ର ହୋଇଲା ସରସ୍ୱତୀ ନଦୀକୂଳେ ।
ଚଣ୍ଡାଳପୁର ବୋଲିଣ ରହେ ସର୍ବ କାଳେ ।
ଶୁଣିଣ ସାନନ୍ଦ ହେଲେ ପରୀକ୍ଷ ନୃପତି ।
ତବ ମୁହିଁ ଶୁଣି ଫିଟିଲା ମନୋଭ୍ରାନ୍ତି ॥
ନମୋ ନାରାୟଣ ନରସିଂହ ଯାର ରୂପ ।
ନରକନାଶନ ଦେବ ସଦାସ୍ତୁ ସ୍ୱରୂପ ॥
ଅଳ୍ପ ତେ ସ୍ତମ୍ଭରୁ ପ୍ରକାଶିଲା ଯାର କାୟେ ।
ବ୍ରହ୍ମାଣ୍ଡସୋଟିଲା ଯେଉଁ ଦେବ ତେଜୋମୟେ ॥
ବିଷ୍ଣୁର ଭକତ ହେଲା କୁମାର ପ୍ରହ୍ଲାଦ ।
ସେ କୁମାରକୁ ଦଣ୍ଡିଲା ବହୁତ ଦନୁଜ ॥
ଭକତବତ୍ସଳ ତୁ ସେ ପରଂ ଯୋଗନାହା ।
ପ୍ରଳୟ ରୂପ ଯାହାର ହାଦେ କାମନାସ୍ତୁ ॥
ଦେବଙ୍କୁ ଅଗୋଚର ସେ ନରସିଂହମାୟା ।
ଅଳ୍ପ ତେ ସ୍ତମ୍ଭରୁ ଜାତ ଶ୍ରୀ ନୃସିଂହ କାୟା ॥
ବଡ଼ ଦୁର୍ଦ୍ଧର ଅଟଇ ଦୈତ୍ୟ ହିରଣ୍ୟାକ୍ଷ ।
ଜାନୁରେ ପକାଇ ତାକୁ ଚିରିଲେ ପ୍ରତ୍ୟକ୍ଷ
ଏକଇ ଷଣ୍ଣରେ ଦେବ କୋଟି ଭୁଜ ବ୍ୟାପି ।
ସେ ପ୍ରଭୁ ମହିମା କେହୁ କହିବ ସଂକ୍ଷେପି ॥
ନବ ସହସ୍ର ଯୋଜନ ହିରଣ୍ୟର କାୟେ ।
ତବ ନଖକୋଣରେ ସେ ଗୋପ୍ୟ ହୋଇଯାଏ ॥
ହିରଣ୍ୟ ନାଶି ଯେ ପ୍ରହ୍ଲାଦେ ରକ୍ଷା କଲୁ ।
ଦେବତାଙ୍କ କଷ୍ଟ ଅହେ ସେହିଲୁ ସୁରର ॥
ମହାଘୋର ରୂପ ଦେଖି ଦେବେ କଲେ ଭୟେ ।
ଲକ୍ଷ୍ମୀ ପେଷି କୋପଶାନ୍ତ କଲେ ଦେବତାଏ ॥
ଜଳବକ୍ଷସୀଙ୍କ ଦେଖି ନରସିଂହ ଶାନ୍ତ ।
କୋପକୁ ମନୁ ତେଜିଲେ ଅନନ୍ତ ମୂରତି ॥
ଶ୍ରୀ ନୃସିଂହ ଭୁବନ୍ତି ଯେ ମମ ହୃଦଗତେ ।
ଲଭର ଭଲମଗତ ନୃସିଂହ ଚରଣେ ॥

ନୃସିଂହ ସ୍ମରଣ ନରେ ପାପମାନ ଖଣ୍ଡ ।
ନୃସିଂହ ସ୍ମରଣ ନରେ ଯମହିଁ ନ ଦଣ୍ଡ ॥
ନୃସିଂହ ସ୍ମରଣ ନରେ ଆପଦ ନ ପଡ଼େ ।
ମନରେ ଚିନ୍ତ ନୃସିଂହ ଅସୁ ଧନ ବଢ଼େ ॥
ନୃସିଂହ ସ୍ମରଣ ନରେ ସ୍ୱର୍ଗ ହେଉ ବାସ ।
ନୃସିଂହ ସ୍ମରଣ ନରେ ଫିଟୁ କାଳପାଶ ॥
ନୃସିଂହ ସ୍ମରଣ ନରେ ଖଣ୍ଡୁ ଜରା ବ୍ୟାଧି ।
ନୃସିଂହ ସ୍ମରଣ ନରେ ଅସୁ ହେଉ ବୃଦ୍ଧି ॥
ନୃସିଂହ ସ୍ମରଣ ନରେ ନ ଛୁଇଁବ ସର୍ପ ।
ନୃସିଂହ ସ୍ମରଣ ନରେ ସିଦ୍ଧ ହେଉ ତପ ॥
ନୃସିଂହ ସ୍ମରଣ ନରେ ଯାଉ ହେ ଅରିଷ୍ଟି ।
ନୃସିଂହ ସ୍ମରଣନ୍ତେ ଯେ ସୁଧା ହେବ ବୃଷ୍ଟି ॥
ନୃସିଂହ ସ୍ମରଣ ନରେ ନାଶ ସର୍ବ ପାପ ।
ନୃସିଂହ ସ୍ମରଣ ନ କର ଅନ ତପ ॥
ନୃସିଂହ ସ୍ମରଣ ନରେ ଶତ୍ରୁ ହେଉ କ୍ଷୟେ ।
ନୃସିଂହ ସ୍ମରଣ ନରମଳ ହେଉ କାୟେ ॥
ଶ୍ରୀ ନୃସିଂହ ଶ୍ରୀ ଚରଣେ ଥାଉ ମନ ସେବା ।
ଶୂଦ୍ର ମୂନ ଶାରଳାକୁ ଗତି ମୁକ୍ତି ଦେବା ॥



### ମହିଷାସୁର ନିକଟରେ ଚଣ୍ଡ ମୁଣ୍ଡଙ୍କର ଦୁର୍ଗାଙ୍କ ବାର୍ତ୍ତା କହିବାର ।

ଶୁକ ବୋଇଲେ ତୁ ଶୁଣ ହେ ପରୀକ୍ଷରାୟେ ।
ଶ୍ରୀଦୁର୍ଗାଚରିତ ଶୁଣି ପାପ କର କ୍ଷୟେ ॥
ରତ୍ନଗିରିଶିଖେ ବିଜେ କଲେ ଦେବୀ ଦୁର୍ଗେ ।
କେନାବଳ ପୁରେ ଦୃଷ୍ଟି ଦେଲେ ମହାରଙ୍ଗେ ॥
ଅସୁର ପୁର ରହିଲା ବାମଭାଗକତି ।
ବନ୍ଧନସ୍ଥାନେ ରହିଲେ ଅଭୟ ମୂରତି ॥
କନ୍ୟମାସ ଶୁକ୍ଳପକ୍ଷ ତିଥି ଯେ ଅଷ୍ଟମୀ ।
ରହିଲେ ଜଗତମାତ ଅସୁରଙ୍କୁ ଦମି ॥
ଚଣ୍ଡ ମୁଣ୍ଡ ନାମେ ଯେଉଁ ମୈଷା ସେନାପତି ।
ବନ କନ୍ଦରେ ପଶିଣ ମୃଗୟା କରନ୍ତି ॥
ଗହନ ବନ ଲତିକାମାନଙ୍କ ଭିତରେ ।
ଖେଦଣ ମୃଗ ମାରନ୍ତି ବେନି ଯେ ଅସୁରେ ॥
ମଧ୍ୟାହ୍ନେ ନଦୀଙ୍କ ସ୍ନାନ ଅର୍ଥେ ଗଲେ ସେହି ।
ଦେଖିଲେ ଜଳେ ଅପୂର୍ବ ହେମପଦ୍ମ କହି ॥

ବସ୍ତ୍ରବକ୍ତ୍ର ଦାନବ ସେ ଅପରୁବ ଦେଖି ।
ଗୋଡ଼ାଇଲେ ନଦୀରେ ସେ ସ୍ନାହାନ ଉପେକ୍ଷି ॥
ବସ୍ତ୍ରବକ୍ତ୍ର ଦାନବେ ଏ ବଡ଼ାଇ ଅପୂର୍ବ ।
ଆନ ଜନେ ନ ଦେଖି ତ ଏସନ ସ୍ୱଭାବ ॥
ମଳୟ ବସନ୍ତ ଘେନ ଗନ୍ଧ ଆମୋଦଇ ।
ବେଢ଼ି ବେଳ ପସର ସେ କଲେ ବେନି ଭାଇ ॥
ସେ ନଦୀକି ପାରି ହୋଇ ଗଲେ ବେନି ବୀର ।
ଦେଖିଲେ କନ୍ୟାଏ ଅଛି ପର୍ବତ ଉପର ॥
ତାହା ଚରଣେ ସୁବର୍ଣ୍ଣ ପଦ୍ମ ଯେ ଫୁଟଇ ।
ବସ୍ତ୍ରବକ୍ତ୍ର ଦାନବେ ଏ ଲକ୍ଷ୍ମୀ ଯେ ଅଟଇ ॥
କମ୍ପିତ କାରଣେ ଏହୁ ନାରାୟଣେ ତେଜି ।
ବଇକୁଣ୍ଠ ଛାଡ଼ି କରି ମଧୁପୁର ଭଜି ॥
ଅପୂର୍ବ ଦେଖି ପୁଚ୍ଛନ୍ତି ତହିଁ ଭାଇ ବେନି ।
କାହାର ସୁନ୍ଦରୀ ତୁ ଗୋ ଜଗତମୋହିନୀ ॥
ଭ୍ରମି ଅଛୁ ଆମ୍ଭେ ଚଉଦ ଚତୁର୍ଦ୍ଦଶପୁର ।
ଏମନ୍ତ ସୁନ୍ଦରୀ କାହିଁ ନ ଦେଖି ନେତ୍ରର ॥
ଦନୁଜଙ୍କର ମୁଖରୁ ଏସନେକ ଶୁଣି ।
ମଉନ ହୋଇ ରହିଲେ ଦେବୀ ଗୋସାମଣି ॥
ହେଠ ମୁଖ କରଦେଲେ ଭୂମିକି ସେ ଦୃଷ୍ଟି ।
ଅଜ୍ଞାନ ଉହାଡ଼ ନରେପନ୍ତି କର୍ମ ଗୋଷ୍ଠି ॥
ଚଣ୍ଡାସୁର ଦାନବ ଯେ ମଧ୍ୟରେ ଦମ୍ଭୀଷ୍ଟି ।
ଅଗୋ ମହାରାଣି ତୁହି କେଉଁ ପୁରୁ ଅସି ॥
କାହିଁ ଅଇଲୁ ଗୋ ସଖି କେ ତୋହର ପତି ।
କେ ତୋହର ପିତା ମାତା କେଉଁପୁରେ ସ୍ଥିତ ॥
କାମିନୀ ବୟସ ତୋର ରୂପେ କାମସେନା ।
କାହିଁ ଦୋଷରେ ତୋତେ କଲା କେ ଲାଞ୍ଛନା ॥
କେବଣ ଦୁରନ୍ତକ ଗୋ ଅଟଇ ତୋର ପ୍ରଭୁ ।
ତହିଁର କାରଣ ମୋତେ ବୁଝାଇ କହିବୁ ॥
କିବା କରାଇଲୁ ପର ଭୋଗ କାମ୍ୟ ପତେ ।
ସେ ଘେନ ଅବା ପୁରୁଷ ଉପେକ୍ଷିଲା ତୋତେ ॥
କି ଅବା ରାକ୍ଷସୀ ତୁ ପିଶାଚିନୀ ଜାତି ।
କି ଅବା ଅଟୁ ତୁହି ଗୋ ବନର ଦେବତି ॥
ଉପଦ୍ରବ ନାହିଁ ମହୀମଣ୍ଡଳ ସଞ୍ଚାର ।
ଏ ସପତ ଦ୍ୱୀପର ଯେ ଅଟେ ଅଧୀଶ୍ୱର ॥
ତାହାର ବଶ ହୋଇଣ ରହିବୁ ତୁ ଅସ ।
ରଖାଇଦେବାଟି ତୋତେ ସୁବର୍ଣ୍ଣ ଉଆସ ॥

ବ୍ୟାଘ୍ର ଭଲ୍ଲୁକ ଦୁଷ୍ଟ ଜନ୍ତୁ ଅଛନ୍ତି ଏଠାର ।
ଦୃଷ୍ଟିମାତ୍ର ହୋଇଲେ ଅତି କରିବେ ଆହାର ॥
ଆମ୍ଭେ ତ ଏ ବନସ୍ତରେ ଅଟୁଁ ଅଧିବାସୀ ।
ଅବସ୍ଥି ଉତ୍ପାତ ହେଲେ ଆମ୍ଭେ ସେ ନିବାର ॥
କେବଣ କାରଣେ ଗୃହବାସ କଲୁ ତେଜ୍ୟା ।
ଅଛି କି ସମ୍ମତ ହେବୁ ଅମର ଭାରିଯା ॥
ଅନେକ ରତନ ଅଳଙ୍କାର ତୋତେ ଦେବୁ ।
ପ୍ରାଣୁ ଅଧିକ କରିଣ ପ୍ରତିପାଳିଥିବୁଁ ॥
ସ୍ୱାମିପଣ ଛାଡ଼ି ତୋର ହୋଇଥିବୁଁ ଭୃତ୍ୟ ।
ବନସ୍ୱଭାବରେ ତୋତେ ଖଟିଥିବୁଁ ନିତ୍ୟ ॥
ତ୍ରୈଲୋକ୍ୟ ଠାକୁର ମୈଷାସୁର ନରପତି ।
ଦେବାଧି ଦେବଙ୍କ ପରେ ଯେହୁ ଚକ୍ରବର୍ତ୍ତୀ ॥
ମୈଷାସୁର ନୃପତିର ସେନାପତି ଆମ୍ଭେ ।
ତାହାଙ୍କୁ ଯେପରି ଗୁରୁପଣେ ଖଟୁଁ ଦମ୍ଭେ ॥
ହେ ପରୀକ୍ଷ ତାଙ୍କ ବାଣୀ ଶୁଣି ମାହେଶ୍ୱରୀ ।
ଦୃଢ଼ାଢ୍ୟ କରିଣ କହୁଛନ୍ତି ଧୀର କରି ॥
କଟାକ୍ଷ ଦୃଷ୍ଟିରେ କଲେ ସେ ଅବଲୋକନ ।
ମେଦେହ ଅପାଙ୍ଗମ ତହିଁ ହେଲେ ଦୁଇଜଣ ॥
ମୁଖେ ଅଙ୍ଗୁଷ୍ଠି ଦେଇଣ ପଡ଼ନ୍ତି ଯେ ପାୟେ ।
ବୋଲନ୍ତି କାମଜଳରୁ ଉଦ୍ଧର ଗୋ ମାୟେ ॥
ଶ୍ରୀ ଦୁର୍ଗା ବୋଇଲେ ତୁମ୍ଭେ ଶୁଣ ବେନି ବୀର ।
ମୋତେ ପୁଚ୍ଛା କଲ କୁଳଗୋତ୍ର ଯେ ମୋହର ॥
ପିତାର ନାମ ମୋହର ଅଟେ ହୁତାଶନ ।
ଅଣାକାର ଅଗ୍ନିର ମୁଁ କନ୍ୟା ଅଟେ ଜାଣ ॥
କାଳେ ମୋହର ଯେ ନିରକାରଗୋତ୍ର ।
ସ୍ୱାମୀ ମୋହର ଅଟଇ ପରମ ଦୈବତ ॥
ପତିହିଁ ଅଭାଗିନୀ ମୁଁ ଦୁଷ୍ଟ ମୋ ପ୍ରକୃତି ।
ନ ସହିବାରେ ସ୍ୱାମିରେ ନୋହିଲି ଭକତି ॥
ପୁରୁଷ କଷଣୁ ମୋର ନାହିଁ ଆନ ବାଞ୍ଛା ।
ତେଣୁକରି ସ୍ୱାମୀ ମୋତେ କଲେକ ଉପେକ୍ଷା ॥
ଏକାସନ ସ୍ୱାମି ସଙ୍ଗେ ନାହିଁ ମୋର ଶଯ୍ୟା ।
ବିମୁଖ ହୋଇଣ ମୋତେ ପ୍ରଭୁ କଲେ ତେଜ୍ୟା ॥
ମୁଁ ବିମୁଖ ହୋଇ ନ କଲଇଁ ଗୃହବାସ ।
ସମସ୍ତ ଛାଡ଼ିଣ ମୁଁ ଯେ ହୋଇଲି ନିରାଶ ॥
ମୋର ଥାଉ ଜୀବନକୁ ଅଛି କି ଉପାୟେ ।
ରକ୍ଷ ରକ୍ଷକଙ୍କୁ ତେଣୁ ନ କରଇଁ ଭୟେ ॥

ଚହୁଁ ଚହୁଁ କାତ୍ୟାୟନୀ ବଦନ ପ୍ରଚଣ୍ଡ ।
ହାସେ ଘୂର୍ଣ୍ଣ ବସ୍ତଲେ ଯାଇଁ ଚଣ୍ଡ ମୁଣ୍ଡ ॥
ମନେ ମନେ ବୁଝି ବୁଝି ଜାଣିଲେ ହୃଦ୍‌ଗତ ।
ବୋଇଲେ ଅମୃତ ପ୍ରାପ୍ତ ନୋହବ ନା ଦେଖେ ॥
ଚଣ୍ଡାସୁର ବୋଇଲା ଗୋ ଶୁଣ ମହାସତୀ ।
ମହିଷାସୁର ରାଜାର ହୋଇବୁ ଯୁବତୀ ॥
ରାଜାର ସମ୍ମୁଖେ ଜଣାଇବୁଁ ତୋର କଥା ।
ବସ୍ତ୍ରକୁ ଯୋଗାଇଲେ ଅଙ୍କି ଦଣ୍ଡ ମାତା ॥
ଦୁର୍ଗା ବୋଇଲେ ଜଣାଅ ତୁମ୍ଭ ରାଜାପାଶେ ।
ଅମ୍ଭେ ଆସିଅଛୁଁ ଅହୋ ମହିଷାସୁର ଆଶେ ॥
ଏମନ ପ୍ରକାରେ ଯହୁଁ ଶୁଣିଲେ ସେ ବାଣୀ ।
କଣ୍ଠେ କର ଦେଇ ଯାରେ ଛୁଇଁଲେ ଧରଣୀ ॥
ତୁମ୍ଭେ ଅମ୍ଭ ଠାକୁରାଣୀ ହୋଇଲ ଗୋ ବାମା ।
ଦଣ୍ଡଦୋଷ ଗୋସାମଣି କର ଅମ୍ଭ କ୍ଷମା ॥
ଶିବ ଶିବ ସୁମରଣ ଯାନ୍ତି ଚଣ୍ଡ ମୁଣ୍ଡେ ।
ପବନ ବେଗେ ଚଳନ୍ତି ନ ରହନ୍ତି ଦଣ୍ଡେ ॥
ମଣୋହି ସାରେ ରାଜା ଅସ୍ଥାନରେ ବଟେ ।
ବେନି ଯାରେ ଦରଶନ କଲେ ମହାରଙ୍ଗେ ॥
ବନସ୍ତ ଦେଖି ମହିଷାସୁର ଯେ ପୁଚ୍ଛଇ ।
କ ହୋ କେବଣ ଅପୂର୍ବ କାହିଁରେ ଅଛଇ ॥
ଚଣ୍ଡ ମୁଣ୍ଡ ବୋଇଲେକ ହେ ମହାମହନ ।
ତୁମ୍ଭେ ତ ସର୍ବଜ୍ଞ ନାଥ କସ ବା ନ ଜାଣ ॥
ଅମ୍ଭେ ବେନି ଭାଇ ମୃଗୟାର୍ଥେ ଯାଇଥିଲୁଁ ।
ଲକ୍ଷ୍ମୀଭଦ୍ରା ନଦୀକି ସେ ସ୍ନାନ କରି ଗଲୁଁ ॥
ସୁବର୍ଣ୍ଣର ପଦ୍ମଫୁଲ ଭାସି ଦେବ ତହିଁ ।
ଅତ୍ୟନ୍ତ ସୌରଭ କରି ଯାଉଛି ସେ ବହି ॥
ତାହା ଦେଖିକରି ଅମ୍ଭେ ଗଲୁଁ ଯେ ଖୋଜାଇ ।
ଦେଖିଲୁଁ ସ୍ତ୍ରୀ ଏକ ବସି ଅଛଇ ଯେ ତହିଁ ॥
ଶୁଣ ଅହେ ନୃପତି ସେ ତ୍ରିଭୁବନ ଏକା ।
ସଙ୍ଗେ ତାର କେହି ନାହିଁ ବସିଛି ନାୟିକା ॥
ରୂପ ଗୁଣ ପଟାନ୍ତର କହିବା ତା କସ ।
ଅପ୍ସରା ରମ୍ଭା ନୋହେ ତାହାର ସଦୃଶ ॥
ଅରକ୍ତ ନୟନା ବାମା କୁଟିଳା ତା ଦୃଷ୍ଟି ।
ବକ୍ରନୟନେ ଚାହିଁଲେ ଶୋଷିଲ ଯିବ ସୃଷ୍ଟି ॥
ତରଙ୍ଗ ତରଳ ନେତ୍ର ଚଞ୍ଚଳ କୁରଙ୍ଗୀ ।
ଯାଙ୍କ ଦର୍ଶନରେ ସେହୁ ବୁଡ଼ଇ ଅନଙ୍ଗୀ ॥

ସ୍ୱାମି ହେମଘଞ୍ଚଣ ଯେ ତିଳପୁଷ୍ପ ନାସା ।
ତାକୁ ଦେଖନ୍ତେ ଅନଙ୍ଗ ନ ବଞ୍ଚବ ଆଶା ॥
ବେନି ଶ୍ରବଣେ ଲମ୍ବନ୍ତି ବେନି ଯେ କୁଣ୍ଡଳ ।
ପୁରୁଷ ନାଶକୁ କି ବା ପାତିଅଛି ଜାଲ ॥
ମୟୂର ପୁଚ୍ଛ ପରାୟ ଅଧର ସୁରଙ୍ଗ ।
ତାକୁ ଦେଖି ଯୋଗିଯୋଗ ହୋଇଯିବ ଭଙ୍ଗ ॥
କୋକିଳ ସ୍ୱର ସମାନ ବାଣୀଟି ତାହାର ।
ଘୋଷଇ ଯେମନ୍ତ ସେହୁ ବସନ୍ତ ଋତୁର ॥
ତାହାର ବଚନ ଦେବ ସୁଧାରସ ଜାଣି ।
ମୁନିମାନେ ତପ ଉପେକ୍ଷିବେ ତାହା ଶୁଣି ॥
ହେମ କମ୍ବୁ ପ୍ରାୟ ତାର ସୁଲଳିତ କଣ୍ଠ ।
କିସ ପଟାନ୍ତର ଦେବ ତାର ସମସ୍ତ ॥
ପ୍ରଲମ୍ବ ସୁବଳିତ ଯେ ତାର ବେନି ଭୁଜ ।
କୁମୁଦ ମୃଣାଳ ପ୍ରାୟ ସୁଶୀତଳ ତେଜ ॥
ଶତ ଦାହ ସ୍ୱର୍ଣ୍ଣ ପ୍ରାୟ ଅଙ୍ଗୁଳିର ଜ୍ୟୋତି ।
ନଖ ବଜ୍ରକାନ୍ତି ଯଥା ପାଟୁଳୀ ସେବତୀ ॥
ବିସ୍ତାର ତା ବକ୍ଷସ୍ଥଳ ସଙ୍ଗ ବେଣିବାହୁ ।
ପୁରୁଷକୁଳକୁ ସେହି ପ୍ରତ୍ୟକ୍ଷେ କି ରାହୁ ॥
ହେମ କୁମ୍ଭଘଟଣ କି ତାର କୁଚ ବେନି ।
ଅଳକ ନାଶଇ ତାର ଅନ୍ଧାର ରଜନୀ ॥
ସେ ହର ଉଦ୍ୟାନବନ ଯେ ଅନ୍ଧାରମୟେ ।
ତାହାତେଜ ଲାଗି ଦଶେ ଚନ୍ଦ୍ର ଉଦେ ପ୍ରାୟେ ॥
ହିମ ଶରଦ ଯେ ହେମ ଶିଶିର ବସନ୍ତ ।
ଗ୍ରୀଷ୍ମ ବରଷା ଷଡ଼ଋତୁ ଅତଯାତ ॥
ଏମାନଙ୍କରେ ଯାହାକୁ କରିବ ସେ କୋଳ ।
ଧନ୍ୟ ତାହାର ଜୀବନ ଗୋଷ୍ଠି ମହୀପାଳ ॥
ତା କରସ୍ଥଳ ଲାଗିବ ଯେଉଁ ଲୋକକାୟେ ।
ଗ୍ରୀଷ୍ମ ଋତୁରେ ସେହୁ ହେବ ହିମ ପ୍ରାୟେ ॥
ତାହାର ଶୀକର ଗୋଷ୍ଠି ଲାଗିବ ଯା ତହିଁ ।
ଶରଦରେ ବରଷାରେ କାକର ଉଷ୍ଣହିଁ ॥
ତାର ବେନି କୁଚ ଜାଣ ଲାଗିବ ଯା ହୃଦେ ।
ଶିଶିର ଋତୁକୁ ଉଷ୍ଣଜଳ କି ବା ହାଦେ ॥
ଯାହାକୁ କୋଳ କରିବ ବେନି ଭୁଜେ ଧରି ।
ହିମଋତୁକୁ ଅନଳ ତେଜ ସମସରି ॥
ବସନ୍ତ ମାସକୁ ସେ ଯେ ଅଟେ ଷଡ଼ଋତୁ ।
ତାହାର ଶରୀରେ ସବୁ ଭରି କଲା ତନୁ ॥

ଶରୀର ନାଭି ତାହାର ଉପମା ତ ନାହିଁ ।
ଗୁଣବନ୍ତ ପଣ କେବା ମୁଖେ ପାରେ କହି ॥
ମୃଣାଳସୂତ୍ର ନ ଗଳେ ତାର କୁଚମଧ୍ୟେ ।
ନଷ୍ଟପ୍ର ହୋଇବ କାମଦେବ ତାକୁ ଯୁଦ୍ଧେ ॥
ଉର୍ଦ୍ଧ୍ୱେ ଶୋଭଇ କୃଷ୍ଣ ବର୍ଣ୍ଣ ରୋମାବଳୀ ।
ଚନ୍ଦ୍ରବନମଧ୍ୟେ କେ ତାକୁ ନାହିଁ ବଳି ॥
ନଳିନ ପତ୍ର ଜାଣି ତାହାର ଯେ ତନୁ ।
ଉଲଟ କଦଳୀ ଜାଣି ତାର ବେନିଜାନୁ ॥
ଅଶୋକ ପଲ୍ଲବ ପ୍ରାୟ ବେନିପାଦ ତଳି ।
ଅପୂର୍ବ ସୁନ୍ଦର ଯେହ୍ନ ଦଶେ ଦିବ୍ୟ ଫଳ ॥
ଚମ୍ପାକଳି ଜାଣି ଦଶେ ତାହାର ଅଙ୍ଗୁଳି ।
ଅଙ୍ଗୁଳିର ତଳ ଦଶେ ପଦ୍ମସବୁ ବଳି ॥
ତସନ୍ତ ପାଖୁଡ଼ା ପ୍ରାୟେ ଦଶନଙ୍କପନ୍ତି ।
ବେନି ତଳପାତଳରେ ପଦ୍ମ ବସନ୍ତ ॥
ସ୍ଥଳନ୍ତେ କନକ ପଦ୍ମଫୁଲ ଯେ ଫୁଟଇ ।
ଉପମାମାନ ଯେ ସେହି ପଦେ ନ ଘଟଇ ॥
ବଦନକୁ ଚନ୍ଦ୍ରମା ତ ନୁହେ ପଟାନ୍ତର ।
ଉଦେକାଳେ ବପୁ କ୍ଷୀଣ ଅଟେ ଶଶଧର ॥
ପୂର୍ଣ୍ଣମୀ ଚନ୍ଦ୍ର ଉପମା କରନ୍ତି କେହି ।
ଶଶୀର ଯାକେ କଳଙ୍କ ଅଛି ସେହି ବହି ॥
ହରିଣନୟନୀ ବାମା ସେ କୁଞ୍ଚିତକେଶୀ ।
ନୁହଇ ଯେ ଚରକୋପୀ ନଷ୍ଟପତ୍ନୀ ଦାସି ॥
କୁଳୀନ ବଂଶୀ ପ୍ରାୟକ ଅଟେ ଶାସ୍ତ୍ରବାସ ।
ଦର୍ଶନେ ସ୍ପର୍ଶନେ ପ୍ରସନ୍ନରେ ସର୍ବସିଦ୍ଧି ॥
ସ୍ୱାମି ଚକିତ ଚଞ୍ଚଳ ପରମ ବୈଷ୍ଣବୀ ।
ଗୁଣାଧିକ କ୍ଷମାଶୀଳା ପ୍ରସନ୍ନ ସାଧବୀ ॥
ବସନ୍ତେ ଅଦ୍ଭୁତୋପମା ହସନ୍ତେ ଶୋଭନୀ ।
ଚଳନ୍ତେ ହସଇ ସେ ଯେ ତ୍ରୈଲୋକ୍ୟ ମୋହନୀ ॥
ରମ୍ଭାକୁ ପଟାନ୍ତର ବା କରିବା ତା ରୂପ ।
ରମ୍ଭାଠାରୁ ଶତେଗୁଣେ ଅଧିକ ସ୍ୱରୂପ ॥
ତୁମ୍ଭର ପ୍ରସାଦେ ଅମ୍ଭେ ସର୍ବ କଲୁଁ ସିଦ୍ଧି ।
ତ୍ରିଶକ୍ତିରେ ଉତ୍ତମ ସେ ଦୟାବାରାଂନିଧି ॥
ସ୍ୱାମି ନବସୃଷ୍ଟି କର୍ତ୍ତା ଛନ୍ତି ପ୍ରଜାପତି ।
କେତେକାଳେ ସର୍ଜିଲେ ସେ ଦିବ୍ୟରତ୍ନ କାନ୍ତି ॥
ସ୍ୱାମି ଅତଣ୍ଡ ଭଳ ତାର ବକ୍ଷସ୍ଥଳ ।
ଚକ୍ଷୁପରେ କୁଚ ବେନି ଅତ୍ୟନ୍ତ ସୁନ୍ଦର ॥

ବସ୍ତୁପୁଣେ ରଚିଲା ସେ ତ୍ରିଶିରତ୍ନ କାନ୍ତି ।
ସୃଜିଲ ଗଢ଼ିବ କେତେକାଳେ ପ୍ରଜାପତି ॥
ଚତୁର୍ଣୁକର ବେଗେ ସେହ୍ନ ନ କରଇ ଗତି ।
ତ୍ରିଲୋକ୍ୟେ ଦେଖିଲା ନାହିଁ ଏମନ୍ତ ଯୁବତି ॥
ସ୍ୱାମି ତୁ ସନାଥ ସର୍ବେଶ୍ୱର ମହାବାହୁ ।
ତୁମ୍ଭର ସଦୃଶେ ଅଛି ମିଳାଇବ ସେହୁ ॥
ଅନେକ ବନସ୍ତେ ଅମ୍ଭେ କହିଲୁଁ ଭାରତୀ ।
ପଦ୍ମବଳେ ସାମାସ୍ୟା ଯେ ଦେଖିଲ ଯୁବତୀ ॥
ବଣ୍ଡ ନୟନ କରଣ କଲ ସେହୁ ପୂଜା ।
ତାହାର ବାକ୍ୟ ଶୁଣିଣ ହେଲୁଁ ଦେବ ମୂର୍ଚ୍ଛା ॥
ଅମ୍ଭଙ୍କୁ ବୋଇଲ ନୃପେ କହ ତୁମ୍ଭେ ଯାଇ ।
ତାହା ବର୍ଣ୍ଣ ଚନ୍ଦ୍ର କେତେ ଦେଖିବଇଁ ମୁହିଁ ॥
ତୁ ପୁରୁଷେ ଉତ୍ତମ ସେ ସ୍ତ୍ରୀଙ୍କ ଉତ୍ତମୀ ।
ତାର ତୋର ପ୍ରୀତି ହେବ ହୋଇବାକ ସ୍ୱାମି ॥
ଅହୋ ପରୀକ୍ଷ କହିଲେ ଯେତେ ଚଣ୍ଡ ମୁଣ୍ଡ ।
ଶୁଣି ଅସୁରର କାମେ ବୁଡ଼ିଗଲା ପିଣ୍ଡ ॥
ଅସ୍ଥାନୁ ଉଠିଲା ସେ କପିଳସିଂହ ସୁତ ।
ଚଣ୍ଡ ମୁଣ୍ଡ ଦୁହିଙ୍କି ସେ କଲା କୋଳାଗତ ॥
ଆପଣାର ଯେତେ ରତ୍ନ ଆଭରଣମାନ ।
ଚଣ୍ଡ ମୁଣ୍ଡଙ୍କୁ ମଣ୍ଡିଲା ମହିଷା ସ୍ୱଜନ ॥
ତୁମ୍ଭେ ମୋ ବାନ୍ଧବ ତୁମ୍ଭ ଚରଣେ ନମୁଛି ।
ସେ ସ୍ତ୍ରୀରତ୍ନ ପୀରତି ତୁମ୍ଭଙ୍କୁ ମାଗୁଛି ॥
କ୍ଷଣେ ତୁମ୍ଭେ ନ ରହିଲ ସେଠାରେ କିପାଇଁ ।
ନ ପୁଣ ତାହାକୁ ଖୋଜ ନ ପାଅନ୍ତ ଯାଇଁ ॥
ଅରେ ବେନି ସହୋଦର ରଖ ମୋର ପ୍ରାଣ ।
ସେ ସ୍ତ୍ରୀରତ୍ନକୁ ବେଗେ ମୋ କତକୁ ଅଣ ॥
ତରତରେ ସେ କନକ ହାଣ୍ଡୋଳା ଅଣାଇ ।
ନେତ ପତାକାମାନ ଯେ ସୁସଙ୍ଗେ ଉଡ଼ାଇ ॥
ଲକ୍ଷେକ ରଥ ସଙ୍ଗରେ ପାଞ୍ଚଲକ୍ଷ ହସ୍ତୀ ।
ନବ ଲକ୍ଷ ବେନି ହସ୍ତ ମର୍ଦ୍ଦିତେ ପଦାତି ॥
ନିଶାଣ ଡମ୍ବରୁ ମରଦଳ ତୂରୀ ବାଜେ ।
ସମ୍ମୁଖରେ ବଳ ଦେଲା ମୈଷାସୁର ରାଜେ ॥
ହେ ପରୀକ୍ଷ ସୈନ୍ୟ ପେଷି ମୈଷାସୁର ରହେ
ଆପଣା ନଗରେ ସେହୁ ଉତ୍ସବ କରାଏ ॥
ସୁବର୍ଣ୍ଣ କଳସେ ନେତ ପତାକା ଉଡ଼ାନ୍ତି ।
ହାଟେ ବାଟେ ଦାଣ୍ଡେ ଛେରୁ ଚନ୍ଦନ ଦିଅନ୍ତି ॥

ନାସ୍ମନେ କରେ ଧରିଛନ୍ତି ଅର୍ଘ୍ୟଥାଳୀ ।
ଗଗନମାର୍ଗେ ଉଡ଼ାନ୍ତି କର୍ପୂରର ଧୂଳି ॥
ଚୂତପତ୍ର ତୋଣା ରମ୍ଭା ବୃକ୍ଷ ଦ୍ୱାରେ ଦ୍ୱାରେ ।
ସୁବର୍ଣ୍ଣ ପୂର୍ଣ୍ଣକଳଶ ବସାନ୍ତି ଅଗରେ ॥
ପନୀର ଜଳେ ଚନ୍ଦନ କର୍ପୂର ଯେ ଭରି ।
ଏକ ଆରକେ ପିଚକା ହୋନ୍ତି ମସ୍ତମରି ॥
ନେତ ଚନ୍ଦ୍ରାତପ ଅଷ୍ଟ ରତନରେ ଝଳି ।
ମାଣିକ୍ୟ ପୁଞ୍ଜି ପୁଞ୍ଜି ଯେ ମୁକ୍ତା ମାଳ ମାଳ ॥
ମେଢ଼ ମଣ୍ଡପ ଦେଉଳ ଅଟ୍ଟାଳୀ ଜଗତି ।
ଉହନ୍ତି ଚତ୍ୱରେ ଅଷ୍ଟରତ୍ନ ପନ୍ତି ପନ୍ତି ॥
ଭୁଲେଣ ଅନେକ ସୈନ୍ୟ ସେନାମାନ ଘେନି ।
ବନ ଗହନେ ପଶିଲେ ଚଣ୍ଡମୁଣ୍ଡ ବେନି ॥
ଲକ୍ଷ୍ମୀଭଦ୍ରା ନଗରରେ କଣସ୍ଥ ପର୍ବତ ।
ତଥିଶିରେ ବିଜେ କରିଛନ୍ତି ଜଗନ୍ମାତ ॥
ଶୀତଳ ହୋଇ ମଳୟ ଅନିଳ ବହଇ ।
ମହାମୋଦରେ ସମସ୍ତ ଜନମନ ମୋହ ॥
ପର୍ବତ ଶିଖରେ ବିଜେ ଅନାଦି ଶକତି ।
ସହସ୍ରେ ଯୋଜନେ ସ୍ୱଳେ ତାହାଙ୍କର ଜ୍ୟୋତି ॥
ବିଜେ ଅଦ ଅନ୍ନପୂର୍ଣ୍ଣା ମୋହନ ସ୍ୱରୂପେ ।
ଭେଟିଲେ ସେ ଚଣ୍ଡ ମୁଣ୍ଡ ଦୁର୍ଗାର ସମୀପେ ॥
ଦୁର୍ଗା ଛାମୁରେ ଅନେକ ଅଳଙ୍କାର ଥୋଇ ।
ଚଣ୍ଡମୁଣ୍ଡେ ସ୍ତୁତିଲେ ଯେ ପ୍ରଣିପାତ ହୋଇ ॥
ଯେସନେକ ଆଜ୍ଞା ତୁମ୍ଭେ ଦେଲ ଗୋ ଅମ୍ଭଙ୍କୁ ।
ସମସ୍ତ କହିଲୁଁ ମୈଷାସୁର ନୃପତିଙ୍କୁ ॥
ଶୁଣିଣ କାମଜଳେ ଗୋ ବୁଡ଼ିଲେ ନରେନ୍ଦ୍ର ।
ପୁରୁଷାର୍ଥ କରି ପେଷିଲେକ ନୃପଚନ୍ଦ୍ର ॥
ମାଗୋ ଶାସ୍ତ୍ରସିଦ୍ଧ ସ୍ତ୍ରୀଙ୍କର ତିନି ଦଶା ।
ଅଜଠାରୁ ପୂରିଲା ଗୋ ତୁମ୍ଭର ମନାଶା ॥
ଶୁଣି ନରଧିପ କଲା ସର୍ବସ୍ତ୍ରୀ ତେଜ୍ୟା ।
ତୁହି ଏକା ଗୋ ହୋଇବୁ ତାହାର ଭାରିଯା ॥
ଶରୀରରେ ଆଭରଣ କର ରତ୍ନକୋଷ ।
ଏ ରତ୍ନ ହାଣ୍ଡୋଳାମଧ୍ୟେ ବେଗ କରି ବସ ॥
ଯାହାକୁ ଯେବଣ କାଳେ ଥାଇ ଯେଉଁଯୋଗ ।
ବେଳକାଳ ଜାଣି ସିନା ହୁଅଇ ସେ ଭୋଗ ॥
ସ୍ତ୍ରୀଙ୍କର ତିନି ଦଶା କାଳେ ଭୋଗ ହୁଏ ।
ପୁରୁଷଙ୍କର ଦଶା ତ କହୁ ଶେଷ ନୁହେ ॥
ମୈଷାସୁରଙ୍କୁ ଦର୍ଶନ କରି ଶୁଭବେଳେ ।
ବିପୁଳ ଲକ୍ଷ୍ମୀ ଭୋଗ ହୋ ଭୁଞ୍ଜ ଚିରକାଳେ ॥
ଯେତେ ଦୁଃଖ ପାଇଲୁ ଗୋ କର୍ମର ଅବଳେ ।
ସମସ୍ତ କ୍ଷୟ ହୋଇଲା ତୋର ଏତେକାଳେ ॥
ଏବେ ସେମାନ ତୋହର ସବୁ ହେଲା ଦୂର ।
ସୁପ୍ରସନ୍ନେ ହାଣ୍ଡୋଳାରେ ଏବେ ବିଜେ କର ॥
ଅମ୍ଭଙ୍କୁ ଦୟା କର ଗୋ ଶ୍ୱରୁ କାତ୍ୟାୟନୀ ।
ଜନ୍ମେ ୨ ହୁଅ ମୈଷାସୁରର ଭାବନୀ ॥
ତାହା ଶୁଣି ପ୍ରତ୍ୟୁତ୍ତର ଦିଅନ୍ତି ଦେବୀ ଦୁର୍ଗେ ।
ମୈଷାସୁର ଉପୁଜିବ ମୋତେ ନେଉଁବାରେ ॥
ବୋଇଲେ ହେ ଚଣ୍ଡ ମୁଣ୍ଡ କପାଁ ଗର୍ଜି ହୁଅ ।
ମହିଷାସୁର କଟକ ବାହୁଡ଼ିଣ ଯାଅ ॥
ତୁମ୍ଭ ବଚନକୁ ମୋର ପ୍ରତେ ଅଛି କାହିଁ ।
ମୈଷାସୁର ରାଜା ଆସି କରି ମୋତେ ନେଉ ॥
ତାହାର ମୁଁ ସଖାବଳ ସମସ୍ତ ଦେଖିବି ।
ରାଜାର ଭୁଲେଣି ତାର ରାଜ୍ୟକୁ ମୁଁ ଯିବି ॥
ତାହାର ମୋହର ଯେବେ ଉପୁଜିବ ପ୍ରୀତି ।
ସେ ମୋତେ ଦେଖିଲେ ସିନା ହୋଇବ ଭୂପତି ॥
ମୁହିଁ ତାହାକୁ ଦେଖିବି ସେ ମୋତେ ଦେଖିବ ।
ତହିଁ ପ୍ରୀତି ଜାତ ହେଲେ କାଳେକାଳେ ଥିବ ॥
ତାହାର ମୋହର ଏବେ ହେଉ ଚଉରାଷ ।
ତୁମ୍ଭେ ଅବା ମୋତେ ସ୍ତ୍ରୀ ବୋଲି ଭଣ୍ଡୁ ଅଛ ॥
ତୁମ୍ଭର ବୋଲକୁ ମୁଁ ତ ପରତେ ନ ଗଲି ।
ରାଜାକୁ ବହନ ଆଣ ମୋ ଛାମୁକୁ ବୋଲି ॥
ସମ୍ଭବେ ମୁଁ ସ୍ତ୍ରୀସଲଙ୍ଗ ପୁଂସ ଦର୍ପ ଭଙ୍ଗି ।
ଶୁଣି ଚଣ୍ଡ ମୁଣ୍ଡ ତହୁଁ ଗଲେ ବେଗି ବେଗି ॥



## ଚଣ୍ଡ ମୁଣ୍ଡ ବଧ ।

ଅସ୍ଥାନେ ବିଜେ କରିଛ ମହିଷା ଦର୍ପିଷ୍ଟ ।
ଚଣ୍ଡ ମୁଣ୍ଡ ଅସିବାକୁ ମୁହିଁ ଅଛି ବାଟ ॥
ଚଳନ୍ତି ଯେ ଚଣ୍ଡ ମୁଣ୍ଡ ପବନହୁଁ ବେଗେ ।
ଯାଇ ଦରଶନ କଲେ ମୈଷାସୁର ଆଗେ ॥
ଶୁଣ ହୋ ମହାମହନ ମଣ୍ଡଳାଧିପତି ।
ବଢ଼ାଇ ଗରଷ୍ଟ ସେ ଯେ ସ୍ତ୍ରୀୟା ରଜକାନ୍ତି ॥
ଅମ୍ଭ ବଚନକୁ ସେହୁ ପ୍ରତେ ଗଲା ନାହିଁ ।
ବୋଇଲା ମହିଷା ସୈନ୍ୟ ସେନ ଅସ୍ତ୍ର ବାହି ॥

ପରୀକ୍ଷା କରଣ ସେ ଯେ ଯେବେ ଯାଇ ମୋତେ ।
ଦେଖିବ ତା ରୂପ ଗୁଣ ଭଜିବ ଏକାନ୍ତେ ॥
ମହିଷାସୁର ବୋଲେ ସେ ନୁହଇ ଭଲସ୍ତ୍ରୀ ।
ଜାଣିଲି ନିଶ୍ଚୟ ସେ ଯେ ଚପଳା ନାରୀ ॥
ପରୀକ୍ଷା କରିବାକୁ ତ ଲୋଡ଼େ ପୁରୁଷକୁ ।
ନିଶ୍ଚୟ ଅସତୀ ସେହି ଜାଣିଲି ତାହାକୁ ॥
ମୋହର ବଚନେ ତିନି ଭୁବନ ଚଳଇ ।
ସ୍ତ୍ରୀ ଛାର ପାମରୀ ଯେ ମୋତେ ନ କଳଇ ॥
ଯାଅ ତୁମ୍ଭେ ଚଣ୍ଡ ମୁଣ୍ଡେ ବନ୍ଧନ ଯେ କରି ।
ଆଣିବ ନଇଲେ ତାର ଆଣ କେଶ ଧରି ॥
ମୈଷାସୁର ଆଜ୍ଞା ଶୁଣି ଗଲେ ବେନି ବୀରେ ।
ଶଙ୍ଖ ବୁଲାଇ ଧାମନ୍ତି ଅତିଶୟ ଖରେ ।
ଅକାଶ କମ୍ପିଲା ରେ ରେ କାର ଶବଦରେ ।
ପୃଥିବୀ ଦେବୀ କମ୍ପିଲା ଧାମନ୍ତେ ପାଦରେ ॥
ଦୁର୍ଗାଦେବୀର ଛାମୁରେ ହେଲେ ପରବେଶ ।
ବୋଇଲେ ଗୋ ମହାରାଣି ଉଠି ବେଗେ ଆସ ॥
ତୋର ବଚନକୁ କୋପ କଲେ ମହାସୁରେ ।
ମଲନ ହେନ୍ୟ ଅମ୍ଭେ ଗୋ ତୋର ତାମସାସୁରେ ॥
ଅସୁର କୁଳରେ ଯେବେ ନ ଯିବୁ ଗୋ ନାରୀ ।
ଏହିକ୍ଷଣି ଘେନିଯିବୁଁ ତୋର କେଶ ଧରି ।
ଦୁର୍ଗା ବୋଇଲେ ହୋ ମୁହିଁ ସ୍ତ୍ରୀ ରମଣୀ ।
ଅହୋ ତୁମ୍ଭେ ବେନି ଅଟ ବୀର ଶିରୋମଣି ॥
ଅନ୍ଧକାର ପାରିବାର ଲଙ୍ଘିଲେ ଏ ମହୀ ।
କାହାର ଆଗରେ ସେହି କଥା ଯିବା କହି ॥
ରାଜା ହୋଇକରି ଯେବେ କରିବ ଅବିଧି ।
ପରଜା ମାନଙ୍କ କିସ କରିବଟି ବୁଦ୍ଧି ॥
ମେଘମାନ ଯେବେ କାଳେ ନ କରିବେ ବୃଷ୍ଟି ।
ଫଳଦାୟକ କେମନ୍ତେ ହେବ ନବ ସୃଷ୍ଟି ॥
ପୁରୁଷମାନେ ଯେବେଟି ଲଙ୍ଘିବେ ସ୍ତ୍ରୀଙ୍କି ।
ଏ କଥାକୁ ଆନ ନାହିଁ ଧର୍ମହିଁ ସେ ସାକ୍ଷୀ ॥
କୋପେ ଅସୁର ବୋଇଲେ କରଣ ମୁଗ୍ଧ ।
ଅମ୍ଭେ କେମନ୍ତେ ଜାଣିବୁଁ ତୋର ଧର୍ମବାଦ ॥
ମାଗୋ ଅମ୍ଭେ ତୋରୁ ବଡ଼ ମଦ୍ୟ ଅନ୍ଧ ଭକ୍ଷୁଁ ।
ଅମ୍ଭମାନଙ୍କୁ ଗୋ ତୁହି କେଉଁ ଧର୍ମ ପୁଚ୍ଛୁ ॥
ଅଦଭୁତେ ତୁ କେବଣ ଭୁବନୁ ଅଇଲୁ ।
ଆପଣାର ବଡ଼ପଣ ଆପେ ଦାଘ କଲୁ ॥

ଯହୁଁ କୋପେ ଗାତ୍ର କମ୍ପି ବୋଇଲେ ଅସୁରେ ।
ଏଣି କୋପ ବଢ଼ିଲା ଯେ ଦୁର୍ଗାଙ୍କ ହୃଦରେ ॥
ଦୁର୍ଗା ବୋଇଲେ ରେ ତୁମ୍ଭେ ପାମର ଅସୁର ।
ଧର୍ମ ଲଙ୍ଘିଲ ରେ ହେଲା ମରଣ ତୁମ୍ଭର ॥
ଏମନ୍ତ ପ୍ରାୟେ ମୋତେ ତ ବୁଝିଲ ରେ ବାଇ ।
ଅସୁରକୁଳର କ୍ଷୟକାରୀ ମୁଁ ଅଟଇଁ ।
ଏହା ଶୁଣି ଚଣ୍ଡ ମୁଣ୍ଡେ ଧାଇଁଲେକ ସଙ୍ଗେ ।
ପର୍ବତ ଉପରକୁ ସେ ଉଠିଗଲେ ବେଗେ ॥
ବଳେ ଆକର୍ଷଣ କରି ଦୈତ୍ୟମହାମନ୍ତ୍ରୀ ।
କେଶ ଧରିବାକୁ ଦୁହେଁ ବଢ଼ାଇଲେ ହସ୍ତ ॥
ହେ ପରୀକ୍ଷ ଦେବୀ କାଳାନଳ କରି ଦୃଷ୍ଟି ।
ହୁଙ୍କାର ନାଦ କରନ୍ତେ ପୂରେ ନବ ସୃଷ୍ଟି ॥
ଅସୁର ସଇନ୍ୟ ଦୂରେ ସ୍ତବଧ ହୋଇଲେ ।
ଚଣ୍ଡ ମୁଣ୍ଡ ଦୁହେଁ ମୋହ ଯାଇଁଣ ପଡ଼ିଲେ ॥
ତକ୍ଷଣେ ପ୍ରକାଶ କଲେ ମାୟେ ଘୋରକାୟା ।
ଗର୍ଭମଧ୍ୟୁଁ ବାହାରିଲେ ଛାୟା ଅଉ ମାୟା ॥
ଆକାଶରେ ଓଷ୍ଠ ତାଙ୍କ ପାତାଳରେ ଜଙ୍ଘ ।
ଏକୋଣସ୍ତୁ ବାହାର ହେଲା ଅଷ୍ଟ ଭୁଜ ॥
ମହା ଉଗ୍ର ତେଜେ ଘୋଟିଗଲେ ତିନିସ୍ୱର୍ଗ ।
ଚକ୍ଷଗତ ହୋଇ ବୁଲୁଛନ୍ତି ବେଗ ବେଗ ॥
କରେ କରବାଳ ବଜ୍ରକଣ୍ଠି ନାମେ ଖାଣ୍ଡ ।
ଅଷ୍ଟ ଅଷ୍ଟ ଭୁଜେ ପ୍ରକାଶିଲେ କାଳସର୍ପୀ ॥
ଦୁର୍ଗା ବୋଇଲେ ଗୋ ତୁମ୍ଭେ ଯାଅଁ କରୀ ବେଗ
ଏ ଅସୁରବଳ ତୁମ୍ଭେ ବେଗେ କର ଶେଷ ॥
ଦୁର୍ଗାଦେବୀ ଆଜ୍ଞା ପାଇ ସେହି ମହାମାୟା ।
ବଣ୍ଡରୂପ ପ୍ରକାଶିଣ ସତ୍ୱର ସେ ଧାଇଁ ॥
ଗଗନରୁ ଶ୍ୟେନପକ୍ଷୀ ପଡ଼ଇ ଯେମନ୍ତେ ।
ଦଇତବଳ ଉପରେ ପଡ଼ିଲେ ତେମନ୍ତେ ॥
ବିକରାଳୀ ତାଙ୍କ ବିପରୀତ ରୂପ ଦେଖି ।
ଭାଜିଲେ ଦାନବବଳ ହୋଇଣ ନିର୍ମାକ୍ଷୀ ॥
ବଳେ କଣ୍ଠିକଟାରୀ ସେ କରନ୍ତେ ପ୍ରହାର ।
ବେନି ବେନି ଖଣ୍ଡ ହୋଇ ପଡ଼ନ୍ତି ଅସୁର ॥
ରୁଧିର ଦେଖି ଧାମନ୍ତି ପୁଣି ଗଳଗାଜ ।
କଉତୁକେ କ୍ରୀଡ଼ା କରୁଛନ୍ତି ମାଂସ ଭୁଞ୍ଜି ॥
ଯେପନେକ ପ୍ରକାଶଇ ସତ୍ୱ ମହାଗର୍ଭ ।
ତେତେ ରଥ ଗଜ ଅଶ୍ୱ ଭକ୍ଷୁଛନ୍ତି ସର୍ବ ॥

ଅଗଣ୍ୟ ଅସଂଖ୍ୟ ବଳ ମହୀପରେ ଲେଖି ।
କେହ୍ନ କେହ୍ନ ନାରଚକୁ କରୁଛନ୍ତି ବୃଷ୍ଟି ॥
ଭୁଣ୍ଡ ବସ୍ତ୍ରାଇଣ ରଣରଙ୍ଗେ କୁତୂହଳୀ ।
ଶର ଆଉ ସୈନ୍ୟ ସବୁ ଯାଆନ୍ତି ସେ ଗିଳି ।
ଶର ନ ଫୁଟିଲା ଯେଣୁ ଦେବୀଙ୍କର କାୟେ ।
ପଳାଇଲେ ଦାନବେ ଯେ କରି ବଡ଼ ଭୟେ ॥
ରଣେଭଙ୍ଗ ଦେଇ ପଳାଇଲେ ଯାତୁଧାନେ ।
ଭୂଜ ବଢ଼ାବନ୍ତି ଦେବୀ ଯୋଜନେ ଯୋଜନେ ॥
ଯେସନେକେ ନାଗପାଶ କରଇ ବନ୍ଧନ ।
ସେହ୍ନମତ କରିଣ ସେ ବାନ୍ଧି ଦୈତ୍ୟମାନ ॥
ରଥ ଗଜ ଅଶ୍ୱ ବୋଲି ନ ଜାଣନ୍ତି କଛି ।
କ୍ଷୁଧା ଆଇଁତରେ ସବୁ ଧରିକରି ଭକ୍ଷି ॥
ମନ୍ତ୍ର ତେଜ ଯୋଦ୍ଧାଥିଲେ ଦୈତ୍ୟଙ୍କର ସେନା ।
ସବୁ ଭକ୍ଷିଲେ ସେ ଦେବୀ ହୋଇ ଉନମନା ॥
ଅଶ୍ୱ ଗଜ ପଦାତିକ ତହିଁ ଯେତେ ଥିଲେ ।
ବେନି ଦେବୀ ଗର୍ଭରେ ସେ ସମସ୍ତେ ପଶିଲେ ॥
ସମସ୍ତ ସଇନା ଶେଷ ହେଲେ ତହିଁ ରଣେ ।
ବାହୁଡ଼ି ବାରତା ଘେନି ନ ଗଲାକ ଜଣେ ॥
ଅଇଦାରିକା ହୋଇଣ ଦାନବ ମହିଷା ।
ଚଣ୍ଡ ମୁଣ୍ଡ ଅସିବାକୁ କରଅଛି ଆଶା ।
କାଳେ ବିନାଶ ହୋଇଲେ ରଣେ ଚଣ୍ଡ ମୁଣ୍ଡ ।
କାଳସନ୍ଧି ମୁଖେ ପଡ଼ ହେଲେ ବେନି ଖଣ୍ଡ ॥
ଜହ୍ନୁରୁ କତ୍ୟାୟନ ଗୋ ରହୁଗିରିବାସି ।
ଅସୁରକୁଳକୁ ତୁ ଗୋ ଅଟୁ କାଳପାଶି ॥
ନମସ୍ତେ ନମସ୍ତେ ଛାୟା ମାୟା ବେନି ଦେବି ।
ତବ ପାଦକମଳ ଯେ ମମ ହୃଦ ଭାବି ॥
ଚଣ୍ଡ ମୁଣ୍ଡ ନାଶିଲୁ ତୁ ଦୈତ୍ୟବଳ ଖେଦ ।
ଅକଳନ୍ତ ଚଣ୍ଡୀଲେ ଯେ ତୋରେ ହେଲେ ଛେଦ ॥
ଛାୟା ମାୟା ବେନି ଦେବୀ ପାଦ ଭାବି ନିତ୍ୟ ।
ଶୂଦ୍ରମୁନି କହଇ ଯେ ବିନୟଯୁକତେ ॥



ଶୁମ୍ଭ ନିଶୁମ୍ଭ ବଧ ।

ଶୁଣ ପରୀକ୍ଷିତ ରାଜା କହେ ଶୁକବ୍ରହ୍ମା ।
ଶ୍ରୀଦୁର୍ଗାଚରିତ ହାଦେ ଏସନ ମହିମା ॥
ଅକଳନ୍ତ ସାଗର ଏ ଚଣ୍ଡିଯୁଦ୍ଧ କଥା ।
ମାନବ ଜନ୍ମରେ କେହ୍ନ କହିବ କେଶନ୍ତା ॥

ପଥ ନିରେଖଇ ବସି ମହିଷା ନୃପତି ।
ଆନ ଭାରଯା ସେତେନ୍ଦ୍ର ଗଲା କେଉଁ କତି ॥
ବଶେଷେ ନବୀନା ସେହ୍ନ ଏକେ ଗୁଣବତୀ ।
ବଶ୍ୟ ବଇ ତାହା ତୁଲେ କରିବ ପୀରତି ॥
କ୍ଷଣକେ ଉଠଇ ସେ ଯେ କ୍ଷଣକେ ବସଇ ।
କ୍ଷଣେ କ୍ଷଣେ ସଦନରୁ ବାହାର ହୁଅଇ ।
ମନଉଦବେଗ ଦେହ ଅସ୍ଥିର ହୁଅଇ ।
ମଳୟ ପବନ ଲାଗି ଶରୀର ଜଳଇ ॥
ଏମନ୍ତ ସମୟେ ତହିଁ ପାହିଲାକ ରାତି ।
ମିଳିଲା ଦାନବ ଶୁମ୍ଭ ନିଶୁମ୍ଭଙ୍କ କତି ॥
କାମଜ୍ୱରେ ପୀଡ଼ିତ ତା ମନ ଛନ ଛନ ।
ସମାସ୍ୟା ଦେଇ ନ ପାରେ ହୋଇ ଗାମ୍ଭୀର୍ଯ୍ୟହୀନ ॥
ଦେଖି ତାକୁ କୋଳକଲେ ସେ ଶୁମ୍ଭ ନିଶୁମ୍ଭ ।
କିଂଭୂତ କାରଣେ ତୋର ବିରସ ହୋ ଦେବ ॥
ମହିଷାସୁର ବୋଇଲା ଶୁଣିମା ବାନ୍ଧବେ ।
ଚଣ୍ଡ ମୁଣ୍ଡ କହିଲେ ଯେ ବଢ଼ାଇ ସନ୍ଦେହେ ॥
ରହୁଗିରି ଶିଖେ ଦିବ୍ୟ କନ୍ୟାଗୋଷ୍ଠି ଶ୍ରେଷ୍ଠି ।
କହିଲେ ନ ସରଇ ତା ଗୁଣ ରୂପ ଗୋଷ୍ଠି ॥
ସେ କନ୍ୟାକୁ ଅଣିଗଲେ ସେହ୍ନ ବେନି ଭ୍ରାତ ।
ଦିନ ରଜନୀ ଯାଇଣ ହୋଇଲା ପ୍ରଭାତ ॥
କନ୍ୟା ଘେନିଣ କପାଇଁ ନଇଲେ ମୋ ପାଶ ।
ସେ ଅବା ତାହାର ତୁଲେ କଲେ ରତିରସ ॥
ଚିନ୍ତା ଉଦବେଗ ମୋର ମନେ ହେଲା ଭ୍ରାନ୍ତି ।
କ୍ରୋଧେ ଗଦ ଗଦ ହୋଇ ନିଦ୍ରା ନାହିଁ ରାତି ॥
ଶୁମ୍ଭ ନିଶୁମ୍ଭ ବୋଇଲେ ହେଲୁ ରାଜା ବାଇ ।
ପରସ୍ତ୍ରୀ ଲୋଭେ ବହୁ ଦୁଃଖ ଯେ ମିଳଇ ॥
ତୁ ଯେ ଚକ୍ରବର୍ତ୍ତୀ ରାଜା ଅଟୁ ମହାବାହୁ ।
ସ୍ତ୍ରୀଗି ଛୁରମାନ ପାଇଁ ଅଧଇର୍ଯ୍ୟ ହେଉ ॥
ବିଜେ କର ସ୍ୱାମି ତୁମ୍ଭେ ଅନ୍ତଃପୁର ସ୍ଥାନେ ।
ଆମ୍ଭେ ଦେଖି ଯାଇ କନା ସେ ଉଦ୍ୟାନବନେ ॥
ମହିଷାକୁ ବାହୁଡ଼ାଇ ତହୁଁ ବେନି ଜଣ ।
ଚଳିଲେ ଏକାକେ ତୁଲେ ନାହିଁ ଥାଟ ସୈନ୍ୟ ॥
ମନ୍ଦରଗିରି ପରାୟେ କରେ ବେନି ଗଦା ।
ବିଚାରନ୍ତି ମନେ ମନେ ଆଗତ ପ୍ରମଦା ॥
ନିଶୁମ୍ଭ ତିସ୍ତ୍ରୀ ଅଯୁକ୍ତ ଏହାର ତୁଟିଲା ।
ସ୍ତ୍ରୀସ୍ତ୍ରୀ ଛଳ ଛମନେ ସେ ଅମ୍ଭଙ୍କ ପେଷିଲେ ॥

ତ୍ରୈଲୋକ୍ୟେ ଅମ୍ଭଙ୍କୁ ଏହି କଥା ବଡ଼ ଲାଜ ।
ନଚେତେଁ ଅମ୍ଭର ବାତୁଳ ହେଲା ସ୍ଥାନସାର୍ଯ୍ୟ ॥
ଏମନ୍ତ ବିଗ୍ରହ ଚଳଯାନ୍ତି ବେନି ସାରେ ।
ପ୍ରବେଶ ହୋଇଲେ ଯାଇଁ ଅରଣ୍ୟଭିତରେ ।
ଶୁଣ ହୋ ପରୀକ୍ଷ ରାଜା ଦୁର୍ଗାର ଚରିତ ।
ଅଷ୍ଟଉତ୍ତର ଯେ ଶତଯୋଜନ ପ୍ରମିତ ॥
ଜେନାବଳ ନଗ୍ରକୁ ଯେ ରତ୍ନଗିରି ଖ୍ୟାତ ।
ତହିଁ ଦେବୀ ଦୁର୍ଗେ ରହି କଲେ ଖଡ୍ଗବଡ଼ ॥
ପଡିଲା ଯେ ଜେନାବଳନଗ୍ରେ ଦୁର୍ଗା ଦୃଷ୍ଟି ।
ଫିହ୍ନ ଦୁଅର ଜଗତି ପଡ଼େ ତାର ତୁଟି ॥
ଦୋହଲ ଘରୁ ଅଭ୍ରେ ଉଠି ଅଗ୍ନି ରାଶି ।
ମହିଷାସୁର ରାଜାର ପୁର ଦେଲା ଧ୍ୱଂସି ॥
ଅନେଘରେ ହୋଇଲା ଯେ ଭୟଙ୍କର ବୃଷ୍ଟି ।
ଭଜ ସବ ଗ୍ରାମମାନଂ ପଡ଼େ ସର୍ବଲୋଷ୍ଟ ॥
ପୁର ଜଗତି ଉପରେ ବର୍ଷିଲେ ସମ୍ପାତ ।
ରୁଧିର ମୂତ୍ର କରି ମାଂସ ସେ ଶୋଭାନ୍ତି ॥
ଘଣୀହଂସ ପୁରରେ ସେ କେତେବେଳେ ଉଠି ।
ଉଲ୍କାପାତ ପର୍ବସ୍ତେ ସହସ୍ର. ହୁଏ ବୃଷ୍ଟି ॥
ନିର୍ଘାତ ଶବଦ ଦଶଦିଗରେ ଶୁଭଇ ।
ବରଜ୍ରାପଡର ପର ପୃଥିବୀ କମ୍ପଇ ।
ଏହିମତ ନଗ୍ରେ ହେଲା ଉତ୍ପାତ ବହୁତ ।
ଯେଣୁ ଦୁର୍ଗା ଦେବୀଙ୍କର କୋପନେତ୍ର ପାତ ॥
ବକଂଟାଳ ଭେରଣ୍ଡା ଯେ ବୁଲେ ନଗ୍ରବେଢ଼ି ।
ସଞ୍ଚିତ ଧନମାନଙ୍କୁ କେହୁ ନେଲେ କାଢ଼ି ॥
ଅର୍ଦ୍ଧ ଦେ ସୈନ୍ୟ ପଡ଼ିଲେ ଚଣ୍ଡ ମୁଣ୍ଡ ବୁଲେ ।
ଶୁମ୍ଭ ନିଶୁମ୍ଭ ଯେ ତାଙ୍କୁ ଚିହ୍ନ ନ ପାଇଲେ ॥
ଦେଖନ୍ତି ବନ ଗହନ ସମସ୍ତ ଅପୂର୍ବ ।
ବସନ୍ତ କୋମଳ ମତ ତହିଁ ସର୍ବ ଜୀବ ॥
ଗନ୍ଧ ଆମୋଦଇ ଯେଣେ ମଳୟ ଅନିଳ ।
ତାହାଙ୍କୁହିଁ ନ ଦେଖିଲେ ଦୈତ୍ୟ ମହାବଳ ॥
ଚଳନ୍ତି ସେ ବେନି ସାରେ ସମସ୍ତ ଉପେକ୍ଷି ।
ଦେଖିଲେ ବସିଛି କନ୍ୟା ଏକ ଶଶିମୁଖୀ ॥
ରୂପକୁ ଯେ ପଟାନ୍ତର ତ୍ରିପୁରେ ନାହିଂ ।
ରତ୍ନଗିରିଶିଖେ ବସେ ଦେବୀ ମହାମାୟି ॥
ଆଶ୍ଚର୍ଯ୍ୟ ଶୁମ୍ଭ ନିଶୁମ୍ଭ କନ୍ୟାମୁଖ ଚାହିଁ ।
ଦେଖିଲେ ସଖୀ ସୋଦର ପାଖେ କେହି ନାହିଁ ॥
ଶୁଣ ହୋ ପରୀକ୍ଷ ମନ ଭ୍ରମ କର ନେତ୍ର୍ୟା ।
ଯାତକାରେ ପର୍ବତରେ ଉଠିଲେ ଦନୁଜା ॥
ଦେଖିଲେ ପୃଥିବୀକ ସେ ସ୍ତ୍ରିଶୀ ରତ୍ନକାନ୍ତି ।
ଅଳଙ୍କାର ପଟ୍ଟ ଚୂହିଁ ସାରେ ହେଲେ ଶାନ୍ତ ॥
ମହାବେଶ ରୂପ ମାତା ପ୍ରକାଶିଣ ଥିଲେ ।
ସାର ମୂର୍ତ୍ତି ଛାଡ଼ ଶାନ୍ତ ମୂର୍ତ୍ତି ସେ ହୋଇଲେ ॥
ଝିନବସ୍ତ୍ର ପରିଧାନ ହେମମୁଖ ବାଳୀ ।
ହଂସ ଦର୍ପବିଧ୍ୱଂସନେ ଚାହିଁ ମୁଖ ତୋଳି ॥
ମଦନବଶୀ ହୋଇଣ ନ ଦେଖନ୍ତି ସମ୍ମୁଖ ।
ଅସୁରକୁଳେ ଅନ୍ତକ ମାତା କାଳପାଶ ॥
ଶୁମ୍ଭ ନିଶୁମ୍ଭ ଯେ ତାଙ୍କୁ ପଚାରନ୍ତି ବାଣୀ ।
କେଉଁ ଭୁବନୁ ଆଗତ କହ ମହାରାଣି ॥
ଦୁର୍ଗା ବୋଇଲେ ଅହୋ ମୁଁ ପର୍ବତବାସୁଲୀ ।
ଥିଲ ଜନ୍ମସ୍ଥାନ ମୋର ଅଟେ ମେରୁସ୍ଥଳୀ ॥
କର୍ମର ବିପାକେ ମୋର ନାହିଁ ଗୃହବାସ ।
ତେଣୁ ବନବାସୀ ହେଲି ହୋଇଣ ନିରାଶ ॥
ବ୍ୟାଘ୍ର ଭାଲୁ ପକ୍ଷ ମୋତେ ଭକ୍ଷନ୍ତି ବୋଲିଣ ।
ଜୀବନ ନିଅଣି ମୁଁ ଯେ ପଶିଲି ଅରଣ୍ୟ ॥
ପିତା ମାତା ଦେଖି ନାହିଁ ମୁହିଁ ମନ୍ଦଭାଗୀ ।
କ୍ଷଣେ ଅସହଣୀ ମୁହିଁ ନୁହେଁ କାହାଲାଗି ॥
ଚନ୍ଦ୍ରୁ ସଧୀରେ ସେ ଶୁମ୍ଭ ନିଶୁମ୍ଭ ବୋଇଲେ ।
ଶୁମ୍ଭର ତହିଁକି ଚଣ୍ଡ ମୁଣ୍ଡ ଯେ ଅଇଲେ ॥
ତାହାଙ୍କର ଭୁଲେ ଭୁମ୍ଭେ ନ ଗଲ କପାଇଁ ।
ଏତେବଡ଼ ରାଜାଙ୍କୁ କି ଭଣ୍ଡିବା ଯୋଗାଇ ॥
ଶ୍ରୀଦୁର୍ଗା ବୋଇଲେ ମିଥ୍ୟାଠାରୁ ପାପ ନାହିଁ ।
ସତକୁ ସାଗର ସିନା ନ ଲଙ୍ଘଇ ମହୀ ॥
ମହିଷାସୁରର ଯେବେ ମୋରେ କାର୍ଯ୍ୟଥାନ୍ତି ।
ସୈନ୍ୟବଳ ଘେନି ରାଜା ଆପଣେ ଆସନ୍ତି ॥
ମୁଁ କପାଁ ଯିବି ହେ ପର ପେଷଣବଯୋଗେ ।
ଗୁଣରୂପ ଦେଖିକରି ବୁଝ ତାହା ଆଗେ ॥
ଦୁର୍ଗାବୋଇଲେ ନ ଜାଣେ ତାଙ୍କର ମୁଁ ନାମ ।
ଅସିକରି ଲଘିଲେ ସେ ମୋର ସର୍ବଧର୍ମ ॥
କେଶଧରିବାକୁ ମୋର ବଢ଼ାଇଲେ କର ।
ଅଭ୍ରତେ ପ୍ରାଣ ଛାଡ଼ିଲେ ସେହି ବେନି ବୀର ॥
ଶୁଣ ଅହୋ ବୀର ଦୁଇ ଅମ୍ଭର ବଚନ ।
ଧର୍ମ ଲଘିଲେ ଜୀବନ ଛାଡ଼ଇ ତକ୍ଷଣ ।

ତୁମ୍ଭେ ଧାର୍ମିକ ପରସ୍ତ୍ରୀ ଲୋଡ଼ୁଥାଅ ମୋତେ
ମୁହିଁ ଅଲଗିଣା ନାରୀ ପଡ଼ିଅଛି ଏଥେଁ ॥
ଶୁଣି ସେ ବୋଇଲେ ଅମ୍ଭ କର୍ମ ବଡ଼ ଭାଗ୍ୟ ।
ତୋହର ବଶରେ ଯେବେ ହେଲୁ ବଡ଼ଯୋଗ୍ୟ ॥
ଦୁର୍ଗା ବୋଇଲେ କହଇ ମୁଁ କି ନା ତୁମ୍ଭନ୍ତ ।
କେମନ୍ତେ ଜାଣିବା କାହା ତତ୍ତ୍ୱ ହୋ କେମନ୍ତ ॥
ଶୁମ୍ଭ ନିଶୁମ୍ଭ ବୋଇଲେ ଶୁଣସି ଗୋ ଉମା ।
ତୁମ୍ଭେ ମହେଶ୍ୱରୀ ତ୍ରିସଂକୁଳେ ତ ଉତ୍ତମା ॥
ସୁସ୍ତ୍ରୀ ସୁଦେବତା ଯେ ସୁଜନ ବ୍ରାହ୍ମଣ ।
ସ୍ୱରୂପରୁ କହନ୍ତି ଏ ନ କର ଗୋପନ ॥
ଅମ୍ଭର ବଂଶ ବଳ ଯେ କହୁଁ ତୋର ଆଗେ ।
ମହା ପ୍ରତାପୀ ଅମ୍ଭେ ଗୋ ଅଟୁ ମହାଭାଗେ ॥
ଅମ୍ଭର ପିତର ମହାଦାସ ନରପତି ।
ତାରକାସୁରର ସେହୁ ଅଟେ ପଣନାତି ॥
ପରାକ୍ରମେ ଜିଣିପାରୁଁ ଦେବ ଇନ୍ଦ୍ରସଙ୍ଗେ ।
ଯାବତ କାଳେ ଅମ୍ଭର ବଶ୍ୟ ନୁହିଁ ଭଙ୍ଗେ ॥
ଶୁଣସି ଗୋ ମାଏ ଅମ୍ଭ ଯେ ଚରିତମାନ ।
ବହୁତ ତପ କରିଲୁଁ ଭାଇ ବେନି ଜାଣ ॥
ଏକାନ୍ତେ ବସିଲୁଁ ଅମ୍ଭେ ସାଗର ସଙ୍ଗମ ।
ଶୂନ୍ୟ ପବନ ଭକ୍ଷି ଗୋ ଲକ୍ଷ୍ୟେ କଲୁଁ ବ୍ରହ୍ମ ॥
ଏକାସନେ ଏକମନେ ବସି ଭାବାବେଶେ ।
ନ ଉଠିଲୁଁ ନବ ସହସ୍ର ବର୍ଷ ପର୍ଯ୍ୟନ୍ତେ ॥
ମାଂସଚର୍ମ ଅମ୍ଭର ଯେ ମିଳାଇଣ ଗଲା ।
କେବଳ ପଞ୍ଜରେ ଅସ୍ଥିମାନଙ୍କ ରହିଲା ॥
ପୁନରପି ଉତପତ୍ତି ହେଲା ଅମ୍ଭ କାୟା ।
ନବ ମୁଣ୍ଡ ନାସିକା ଯେ ପାଦ ପାଣି ଛାୟା ॥
ଏମନ୍ତେ ନବ ସହସ୍ର ବର୍ଷ ତପ କଲୁଁ ।
ଏତେକାଳେ ଅମ୍ଭେ ବହୁରୂପ ଗୋ ଦେଖିଲୁଁ ॥
ମାଗୋ ମରାଳବାହନେ ବିଜେ କଲେ ଧାତା ।
ବର ମାଗ ବୋଇଲେକ ସେ ସୃଷ୍ଟିକର୍ତ୍ତା ॥
ଅମ୍ଭେ ବୋଇଲୁଁ କ୍ଷେପିତା ଦେବୁ ଯେବେ ବର ।
ପୁଂସ ହସ୍ତେ ନ ମରୁଁ ହୋଇବୁଁ ଅମର ॥
କ୍ଷୀରାବ୍ଧି ମଧ୍ୟଭୁବନେ ସଦା ଅବତରେ ।
ତେଣୁ ବଧ ନୋହୁଁ ଯେ ପୁରୁଷ କରରେ ॥
ବ୍ରହ୍ମା ବୋଇଲେ ବିଷ୍ଣୁର ଅନେକ ଯେ ମାୟା ।
ତ୍ରିସ୍ୱରୂପେ ବଢ଼ାଇଲ ସେ ତାହାର କାୟା ॥

ବୈଟଲ୍ଲରନ ଦୈତ୍ୟ ନାଶ ନ ଗଲା ପୁରୁଷେ ।
ମାଳତୀ କନ୍ୟାରୂପରେ ଗଣ୍ଡିଲା ତା ପାଶେ ॥
ରୁକୁଣୀ ମାରନ୍ତେ ଠାବ କଲା ମର୍ମ ବାଳ ।
ତାହା ଉପାଡ଼ନ୍ତେ ନାଶ ଗଲା ମହୀପାଳ ॥
ଧାତାର ମୁଖରୁ ଏହି ବାଣୀ ଅମ୍ଭେ ଶୁଣି ।
ସତ୍ୟ କରାଇଣ ବର ମାଗିଲୁଁ ଯେ ପୁଣି ॥
ଅମ୍ଭେ ବୋଇଲୁଁ କ୍ଷେପିତା କଲ ଯେବେ ସିଦ୍ଧ ।
ସ୍ତ୍ରୀର ହାତରେ କେବେହେଁ ନୋହୁଁ ଟି ବଧ ॥
ମାତା ଗୋ ବର ଦେଇଣ ବୋଇଲେକ ସ୍ୱରୂ ।
ସ୍ତ୍ରୀର ପୁରୁଷରେ ତୁମ୍ଭ ବଧ ନୋହିପାରୁ ॥
ଦୁର୍ଗା ବୋଇଲେ ହୋ ତୁମ୍ଭେ ଏହି ଦେହ ଘେନ
ଅନେକ କାଳ ହୋ ବଞ୍ଚିଥିବ ଏ ମେଦନୀ ॥
ତୁମ୍ଭ ସଙ୍ଗେ କେଉଁପରି ହେବ ମେଳ ଭାବ ।
ଅପାର ଭରଯା ପୁଣି ତୁମ୍ଭର ହୋଇବ ॥
ଏହିମତେ କାଳେ କାଳେ ଥିବ ଦେହ ଘେନ ।
କାହିଁ ଘର କରିବ ମୁଁ ହେଲେ ସପତଣୀ ॥
ଶୁମ୍ଭ ନିଶୁମ୍ଭ ବୋଇଲେ ଶୁଣ ଗୋସାମଣି ।
ବ୍ରହ୍ମାଙ୍କୁ ବୁହାଇ ଯାର୍ତ୍ତା କଲୁଁ ଅମ୍ଭେ ପୁଣି ॥
ବୋଇଲୁଁ କ୍ଷେପିତା ଦେଲୁଁ ତୁ କଲ୍ୟାଣ ପଦ ।
କେମନ୍ତେ ଜାଣିବୁଁ କହ ଅମ୍ଭ ମୃତ୍ୟୁଭେଦ ॥
ମାତା ତୁ ଗୋ ନ କହିବୁ କାହାକୁ ପ୍ରିୟଭାବେ ।
ଅମ୍ଭର ମୃତ୍ୟୁଭେଦ ଗୋ ଥିବ ତୋର ଗର୍ଭେ ॥
ଏକ ଚିତ୍ତେ ଅରେକ ଗୋ ଯେବେ ଦେବୁଁ ହସ୍ତ ।
ତେବେ ଅମ୍ଭେ ମରିବୁଁ ଗୋ କହିଲୁଁ ଯେ ସତ ।
ଏ ସାତଦ୍ୱୀପମଧ୍ୟରେ ଅଟୁ ଚକ୍ରବର୍ତ୍ତୀ ।
ଅମ୍ଭଠାରୁ ବଳବନ୍ତ ନାହିଁ କେହି ପୃଥ୍ୱୀ ॥
ମା ଗୋ ଅମ୍ଭବାହୁବଳେ ମୈଷାସୁର ରାଜା ।
ଅମ୍ଭର ଦର୍ପରେ କରେ ତାହାକୁହିଁ ପୂଜା ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଅମ୍ଭେ ଦେଲୁଁ ସାନ୍ଧ ।
ବରୁଣପୁରେ ପଶିଣ ନେଲୁଁ ଅଷ୍ଟନିଧି ॥
ଆଣିଲୁଁ କୁବେର ଭଣ୍ଡାରକୁ ଜୁର କରି ।
ବିଷ୍ଣୁ ଆଦି ଦେବତାଏ ନୋହିଲେ କେ ସରି ॥
ଯେବେ ତୋର ଅମ୍ଭଠାରେ ବଳିଲା ସନ୍ଦେହେ ।
ଅମ୍ଭର ଭାରଯା ତୁମ୍ଭେ ହୋଇବ କି ମାହେ ॥
ଦୁର୍ଗା ବୋଇଲେ ତୁମ୍ଭେ ତ ରକ୍ଷକୁଳବୀର ।
ବଚନ ମାନଙ୍କେ ତୁମ୍ଭେ ମୋତେ ବଶ କଲ ॥

ଏ ସଙ୍ଗୀର ସଭାପାଶେ ମୁହିଁ ଯେ ଅଇଲି ।
ତୁମ୍ଭଙ୍କୁ ଦେଖିଣ ଏବେ ସବୁ ପାଶୋରିଲି ॥
ବନ୍ଧୁ ବାନ୍ଧବ ମୋହର ସବୁ କଲି ତେଜ୍ୟା ।
ଯୁକତେ ତୁମ୍ଭର ମୁହିଁ ହୋଇବି ଭାରିଯା ॥
ଧନ ବସନ ରତନ ନ ରୁଚଇ ମୋତେ ।
ନୃତ୍ୟରଙ୍ଗ ରସ କରି ଶରଧା ଯୁକତେ ॥
ଶୁଣ ପରୀକ୍ଷିତ ଦୁର୍ଗା କଲେ ବହୁ ମାୟା ।
ଜସତ ହୋଇଲା ଶୁଣି ଅସୁରଙ୍କ କାୟା ॥
ସାନନ୍ଦ ମନେ ବୋଲନ୍ତି ଯେ ଶୁମ୍ଭ ନିଶୁମ୍ଭ ।
ଏକୋଇଶ ମୂର୍ଚ୍ଛନା ପଞ୍ଚ ତାଳ ଜାଣୁ ସର୍ବ ॥
ଉଦ୍ଧର ଅଦ୍ଭ ନୃତ୍ୟ ତାଣ୍ଡବ ଯେ କରୁ ।
ନୃତ୍ୟରସେ ତୋଷକଲୁ ଜଗତର ଗୁରୁ ॥
ଦୁର୍ଗା ବୋଇଲେ ତୁମ୍ଭେତ ସବୁ ଜାଣୁଅଛ ।
ତାଣ୍ଡବ ନୃତ୍ୟ କର ହୋ ଦେଖିବା ପ୍ରତ୍ୟକ୍ଷ ॥
ମଦନଜଳେ ବୁଡଣ ଛନ୍ତି ବେନି ଭାରେ ।
ରହି ନ ପାରିଲେ ପରାପର ସେ ଅସୁରେ ।
କୋପ କରି କହନ୍ତି ଯା ଦେବୀ ଗୋସାମଣୀ ।
ତୁହିଙ୍କି ରୁଚଇ ସେହୁ ସୁଧାରସ ଜାଣି ॥
ବିଶେଷେ ଏକାନ୍ତ ବନ ନାହିଁ ଆନ ମେଳେ ।
ନୃତ୍ୟ ଆରମ୍ଭ ସେ ଭାବେ କଲେ କୌତୂହଳେ ॥
ଓଁ କାରନ୍ତି ପିକସ୍ୱର ପରାୟେ ମଧୁର ।
ଗାବନ୍ତି ସେ ଗୀତମାନ ଅତି ମନୋହର ॥
ତାହାଙ୍କର କଉତୁକ ରଙ୍ଗ ନୃତ୍ୟ ଦେଖି ।
କରତାଳ ଦେଇ ହସୁଥାନ୍ତି ଚନ୍ଦ୍ରମୁଖୀ ॥
ଚଞ୍ଚପୁଟ ଚାଞ୍ଚପୁଟ ଭର ହର କଲା ।
ଝମ ଝମ ଚରଣ ଯେ ଶୁଭେ ମଦ୍ଦେ ଖେଳା ॥
ବେନି ପାଣି ବେନି ପାଦ ଶୂନ୍ୟେ କ୍ଷେପି ଦ୍ୟନ୍ତି ।
ଧାରଣା ମୂର୍ଚ୍ଛନା ଅଦ କେତେ ମେ କରନ୍ତି ॥
ଧୁଅଁ ମଠା ଚେନ୍ଦୁଶେଯା ବଢ଼ ପରତାଳ ।
ଝମ୍ପ ଅଡ଼ ପ୍ରବନ୍ଧକା ସାରି ଏକତାଳ ॥
ଶୃଙ୍ଗାର ବୀର କରୁଣାଦ୍ଭୁତ ହାସ୍ୟରସ୍ୟା ।
ଇତ୍ୟାଦି ନୃତ୍ୟକୁ ଦେଖି ହସି ମହାମାୟା ॥
ତାଙ୍କ ହାସ୍ୟ ଚାହିଁ ନୃତ୍ୟ ଦ୍ୱିଗୁଣ କରନ୍ତି ।
ଯେଉଁଠେ ମତ୍ତଗଜ ଖଣା ଖାଲି ନ ମଣନ୍ତି ॥
କୋମଳ କରଣ ଦେବୀ ବଚନ କହନ୍ତି ।
ନୃତ୍ୟରଙ୍ଗ ଦେଖିଲେକ ତୋଷ ମୋର ମତ ॥
ଯେବେଳେ ଭେଟ ଯେ ମୁହିଁ ପାଇଲି ତୁମ୍ଭନ୍ତି ।
ଏମନ୍ତ କରଣ ତୁମ୍ଭେ ଜାଣ ନୃତ୍ୟ ଗୀତ ॥
ତୁମ୍ଭେ ଯେ ଅଜି ମୋହର ହେଲ ପ୍ରାଣନାଥ ।
ଗୃହବାସ କରିବି ମୁଁ ତୁମ୍ଭର ସହିତ ।
ସମସ୍ତ ନୃତ୍ୟ ଗୀତ ମୁଁ ଦେଖିଲି ତୁମ୍ଭର ।
ଏ ନୃତ୍ୟ ଛାଡ଼ି ବଡ ନୃତ୍ୟ ଏବେ କର ॥
ଦୁର୍ଗାଙ୍କ ବାକ୍ୟେ ଉଲଟ କରିଲେ ସେ କଟୀ ।
ତଳକୁ ମୁଣ୍ଡ କରିଣ ନୃତ୍ୟ ରସେ ଘଟି ॥
ଚାହିଁ ଦେବୀ କରତାଳ ଦେଇଣ ହସିଲେ ।
ପୁଣି ସଧୀର କରଣ ଏମନ୍ତ ବୋଇଲେ ॥
ଅବେହଣ ମୂର୍ଚ୍ଛନା ହୋ ଦେଖିବା ତୁମ୍ଭର ।
ଏକ କର ଦଣ୍ଡ ନେଇ ଅନ୍ୟ କର ଶିର ॥
ହେ ପରୀକ୍ଷ ପୂର୍ବେ ବ୍ରହ୍ମା ଦେଇଛନ୍ତି ବର ।
କାମେ ଅନ୍ଧ ହୋଇ ତାହା ଭୁଲିଲେ ଅସୁର ॥
ଯେ ଦୁର୍ଗା ବାଣୀ ଶୁଣି ସେ ଅନେକ ଉଦ୍ଧତ ।
ଏକଶିରେ ଅନେକ ଯେ ହେଲା ନେଇ ହସ୍ତ ॥
ଭରହରଙ୍ଗେ ମାରନ୍ତି କରେ କରତାଳ ।
ପ୍ରଳୟାଗ୍ନି ପ୍ରାୟେ ବେନି ଉଠିଲେକ ଜଳ ॥
ଯେତେବେଳେ ଶେଷକାଳ ହୋଏ ପ୍ରାଣିଙ୍କର ।
ଅକାଶରୁ ମୃତ୍ୟୁଭେଦ ହୋଏ ତାହାଙ୍କର ॥
ତ୍ରୈଲୋକ୍ୟରେ ଅଗୋଚର ଯେ ଶିବଙ୍କ ମୃତ୍ୟୁ ।
କାମ ଲୁବ୍ଧ କରି ସେ ହସିଲେ ହେତୁ ॥
ଶୁମ୍ଭ ନିଶୁମ୍ଭ ବେନିଙ୍କ ବଧ ନେହେ ଦେଖି ।
ଦେବତା ସର୍ବେ ଅଇଲେ ସ୍ୱର୍ଗକୁ ଉପେକ୍ଷି ॥
ଦୁର୍ଗାଙ୍କର ସନ୍ନିଧିରେ ପ୍ରବେଶିଲେ ଯାଇଁ ।
ଯେ ଯାହାର ଅନୁରୂପେ କହନ୍ତି ବିନୟି ॥
ଏବେ ମାଗୋ ଫିଟିଗଲା ସ୍ୱର୍ଗପୁର ବାଟ ।
ସୁଖେ ଅକାଶେ ବସିବେ ଇନ୍ଦ୍ର ବାନ୍ଧି ପାଟ ॥
ମାଗୋ ତୋହର ପ୍ରସାଦେ ପାଇଲୁ ସଦ୍‌ଗତି ।
ତୁହ ଯେ ହଇଲେବ୍ୟର ଫେଡ଼ିଲୁ ଦୁର୍ଗତି ॥
ମହିଷା ଅସୁର ଚଣ୍ଡ ମୁଣ୍ଡ ଯେ ନିଶୁମ୍ଭ ।
ଏହି ଯେ ବ୍ରହ୍ମାଣ୍ଡ ଯାକ ନାଶ କଲେ ସର୍ବ ॥
ଶୁମ୍ଭ ନିଶୁମ୍ଭଙ୍କ ବଧ ଶୁଣନ୍ତି ଯେ ନର ।
ଅରିଷ୍ଟ ଉତ୍ପାତମାନ ଖଣ୍ଡେ ତାହାଙ୍କର ॥
ଦେବତାଙ୍କର ଉତ୍ପାତ ଖଣ୍ଡିଲ ଅଭୟେ ।
ସମସ୍ତଙ୍କର ଆପଦ ଖଣ୍ଡ ମହାମାୟେ ॥

ଦୁର୍ଗାଙ୍କୁ ଲକ୍ଷ୍ୟେ କରଣ ସ୍ତୁଟେ ଆଉ ସ୍ତବ ।
ଯାବତ କ୍ଳେଶ ତୁମ୍ଭର ଖଣ୍ଡ ମହାଦେବୀ ॥
ଶ୍ରୀଦୁର୍ଗା ଶ୍ରୀଚରଣରେ ଶରଣ ମୁଁ ନିତ୍ୟେ ।
ଶାରଳାଦାସ ଲୁଚଇ ହୃଦମଧ୍ୟଗତେ ॥
ଜୟ ତୁ କାତ୍ୟାୟନି ନଗୀ ଜୟ ଚଣ୍ଡି ଦୁର୍ଗେ ।
ତୋହର ଦର୍ଶନେ ଯମଦଣ୍ଡ ଗୋ ନ ଲଗେ ॥
ସହସ୍ରେ ଭୁଜେ ସହସ୍ରେ ଶସ୍ତ୍ର ଅଛୁ ଧରି ।
ଜଗଜ୍ଜନମୋହନ ଗୋ କେଶ ତୁ ନିବାରୁ ॥
ଯାହା ନାମ ସ୍ମରଣେଣ ଖଣ୍ଡେ ଯମଦଣ୍ଡ ।
ଯାହା ନାମ ସୁମରନ୍ତେ ବନ୍ଧହୋଏ ଖଣ୍ଡ ॥
ଯାହା ନାମ ସ୍ମରନ୍ତେ ଲକ୍ଷ୍ମୀହୋଏ ପ୍ରାପ୍ତ ।
ଯାହା ନାମ ଭଜନ୍ତେଣ ଆୟୁଷ ବର୍ଦ୍ଧିତ ॥
ଯାହା ନାମ ଚିନ୍ତନ୍ତେ ଅରିଷ୍ଟ ହୋଏ ଶାନ୍ତ ।
ଯାହା ନାମ ଚିନ୍ତନ୍ତେଣ ନ ପଡ଼େ ଦୁର୍ଗତି ॥
ଯାହା ନାମ ଚିନ୍ତନ୍ତେ ନ ଥାଇ ରୋଗ ବ୍ୟାଧି ।
ଯାହା ନାମ ସୁମରନ୍ତେ ପ୍ରସରଇ ବୁଦ୍ଧି ॥
ଯା ନାମ ସ୍ମରନ୍ତେ ଅପୂର୍ବିକ ଦୋଷ ଯାଇ ।
ସନ୍ତାନ ଉପୁଜେ ମହାକ୍ଳେଶ ମାନ ପାଇ ॥
ବିପାକ କରମ ଯାହା ଯୋଗରେ ତୁଟଇ ।
ଯେ ଦେବୀ ନାମ ସ୍ମରନ୍ତେ ବନ୍ଧନ ଫିଟଇ ॥
ମୁନିଜନମାନେ ନିତ୍ୟ ସ୍ତବୁଛନ୍ତି ଯାହା ।
ମାନବଜନ୍ମରେ ମୁହିଁ କି କହିବି ତାହା ॥
ହେ ପଣ୍ଡିତ ଜନେ ଦୁର୍ଗାଦେବୀଙ୍କର ବନ୍ଦି ।
ଆନ ନ ଭାବଇ ମନେ ମୋହର ଏ ଜ୍ଞାନୁ ॥
ଶ୍ରୀ ଭଗବତ ଭକତ ଶ୍ରୀ ଚଣ୍ଡୀ ପୁରାଣ ।
ସଂସାରଜନଙ୍କ ମୁକ୍ତି ବାଟ ହୁଏ ଏଣେ ॥
ଶ୍ରୀ ଦୁର୍ଗା ଚରଣେ ଦଣ୍ଡ ପ୍ରଣାମ ମୋ ନିତ୍ୟେ ।
ଇନ୍ଦ୍ରମୁନି ଶାରଳା ଯେ ଭଣେ ଅନୁବ୍ରତେ ॥

## ଗ୍ରୀମର କେଶମାଳ ବଧ ।

ଶୁଣ ପରୀକ୍ଷ ନୃପତି କହେ ଶୁକବ୍ରହ୍ମା ।
ଶ୍ରୀ ଦୁର୍ଗାଦେବୀ ଚରିତ ଏମନ ମହିମା ॥
ତ୍ରୈଲୋକ୍ୟ ଯେବଣ ଶୁମ୍ଭ ନିଶୁମ୍ଭ ଅବଧ ।
ବିନାଦୋଷେ ନାଶଗଲେ ହୋଇଣ ନିର୍ବୋଧ ॥
ହେ ପଣ୍ଡିତଜନମାନେ ବିସ୍ମର ତ ହୃଦେ ।
ତବ ଅଭ୍ରୁ ହତ ଯାଏ ପରସ୍ତ୍ରୀ ଲୁବୁଧେ ॥
ତଦନ୍ତରେ ପୁଚ୍ଛାକଲେ ପରୀକ୍ଷ ନୃପତି ।
କାଳବଶାରୁଁ ମାଇବ ମୁଁ ଏବେ ମୁକତି ॥
ଚଣ୍ଡ ମୁଣ୍ଡ ଶୁମ୍ଭ ନିଶୁମ୍ଭଙ୍କ ବଧ ଶୁଣି ।
କି ବୋଇଲା ସେ ମହିଷାସୁର ନୃପମଣି ॥
ବଦନ୍ତି ଶୁକମୁନି ହେ ଶୁଣ ପରୀକ୍ଷିତ ।
ଅଲ୍ପସାରକା ହୋଇଛି ମହିଷା ଦଇତ ॥
ଯାଇଣ ଅଛନ୍ତି ସାଗର ଆଶିରେ ଯୁବତୀ ।
ମୋର ଇଚ୍ଛାଏ କରିବ କ୍ରୀଡ଼ା ଦିବାରାତି ॥
ବାହାରଘରେ ଯେ ପୂର୍ବ ଜଗତୀ ଉପରେ ।
ପଥ ଅନୁସରଇ ସେ ମନ ବ୍ୟାକୁଳରେ ॥
କାଳ ବିକାଳ ନାମରେ ବେନି ଦୂତ ତାର ।
ବିନ୍ଧ୍ୟଗିରିପାଶରୁ ସେ ଅଇଲେ ସତ୍ଵର ॥
ସେ ଯାଇ ପ୍ରବେଶ ହେଲେ ମୈଷାସୁର ପାଶେ ।
ସ୍ୱାମି ସମ୍ପଦ ନାଶିଲୁ ସ୍ତ୍ରି ସଲଙ୍ଗ ଆଶେ ॥
ପ୍ରତ୍ୟକ୍ଷେ ରାକ୍ଷସ ବଳ ତୁଲେ ସମଦଣ୍ଡ ।
ସେନ ଯାଇଁଣ ବିନାଶ ହେଲେ ଚଣ୍ଡ ମୁଣ୍ଡ ॥
ପୁଣି ଶୁମ୍ଭ ନିଶୁମ୍ଭ ଯେ ଗଲେ ଭାଇ ବେନି ।
ନୃତ୍ୟଗୀତ କରି ଭୋଳେ ଛୁଇଁଲେ ମୂର୍ଦ୍ଧନୀ ॥
ସେ ଦେବୀର ବଚନ ଯେ ଜାଣି ନ ପାରିଲେ ।
ପ୍ରଳୟ ଅଗ୍ନି ଜଳନ୍ତ ଭସ୍ମ ହୋଇଗଲେ ॥
ଦୂତଙ୍କ ମୁଖରୁ ଏହି ବଚନକୁ ଶୁଣି ।
ମୃତ୍ୟୁଭୂତ ହୋଇଣ ଯେ ବସି ନୃପମଣି ॥
ଅହୋ କାଳ ବିକାଳ ହୋ କହିଲ କେମନ୍ତ ।
ତୁମ୍ଭର ବଚନ ମୁହିଁ ନ କରଇଁ ସତ ॥
ଦେବତାଙ୍କୁ ଦୁର୍ଲଭ ଯାହା ବଳ ବୀର୍ଯ୍ୟ ।
ମାନବୀ ମାନବ ତାଙ୍କୁ କଲକ ଦହ୍ୟସ୍ୟ ॥
ଦୂତେ ବୋଇଲେ ଅଦ୍ଭୁତ ସ୍ତ୍ରୀର ରୂପଗୁଣି ।
ବିଶ୍ୱାସଘାତକେ ତୋର ସୈନ୍ୟବଳ ନାଶି ॥
ଶୁଣିଣ ବିରସ ମୈଷାସୁର ମହୀପାଳ ।
ସନ୍ନିଧେ ହକାରିଲା ସେ ଗ୍ରୀମର କେଶମାଳ ॥
ସହସ୍ରେ ଯୋଦ୍ଧା ଘେନିଣ ଯାଅ ହେ ଏକ୍ଷଣ ।
ଚଣ୍ଡ ମୁଣ୍ଡ ଶୁମ୍ଭ ନିଶୁମ୍ଭର ବାର୍ତ୍ତା ଆଣ ॥
କେବଣ ଯୁବତୀ ତାର ଚରିତ କେମନ୍ତ ।
ଅଛି କି ପୂର୍ବେ ଦେଖିଲ ଗତ କି ଆଗତ ॥
ସତ୍ୟଯୁଗ ଭୋଗକଲ୍ପ ମୋର ବୁଦ୍ଧିବଳେ ।
ଏତେକ ବିପରୀତ ନାହିଁ କେଉଁଣସି କାଳେ ॥

ଦଇବ ସେ ଜାଣଇ ନା ମୋର ପରାକ୍ରମ ।
କେବଣ ନକ୍ଷତ୍ରରେ ମୁଁ ହୋଇଲି ଜନମ ॥
ଗୃମର ବେମାଳେ ତହୁଁ ମୈଷା ଦେଲା ଶାନ୍ତି ।
କେବଣ ନାଗରୀ ତାକୁ ଅଣ କେଶ ଧରି ॥
ହେ ପରାକ୍ଷେ ଅଜ୍ଞା ପାଇ ଗୃମର ବେମାଳ ।
ସଙ୍ଗତେ ଘେନି ବତିଶ ସହସ୍ରେକ ବଳ ॥
ଚଳନ୍ତି ସମାରୋହରେ ମୈଷାସେନାପତି ।
ଆକାଶ କମ୍ପଇ ଯେ ନ ସହେ ବସୁମତୀ ॥
ଏକକୁ ପଛ କରଣ ଅନ୍ୟ ହୁଏ ଆଗ ।
ହରି ଉଦ୍ୟାନବନରେ ପ୍ରବେଶିଲେ ବେଗ ॥
ଅନେକ ଯେ ସାରଥୁରି ବାଣ ଘଡ଼ ଘଡ଼ ।
ମାରି ଦୁର୍ଗ୍ଗର ଦନ୍ତକେ ରହିଗିରି ବେଢ଼ି ॥
ରହିଗିରିଶିରେ ବସିଛନ୍ତି ଦେବୀ ଦୁର୍ଗେ ।
ଗୃମର ବେମାଳ ଦୁହେଁ ହେଲେ ଯାଇଁ ଅଗେ ॥
ହେଠ ବଦନ ଦେବୀଙ୍କ ମାନିନୀ ଅବସ୍ଥା ।
ମୁଖ ଟେକି ତାହାଙ୍କୁ ଯେ ନ କହନ୍ତି କଥା ॥
ଗୃମର ବେମାଳ ଦୁହେଁ ଦୁର୍ଗାଙ୍କୁ ପଚାରି ।
କେବଣ ଦେଶୁଁ ଅଇଲୁ ତୁ ଗୋ ବରନାରୀ ॥
ଚଣ୍ଡ ମୁଣ୍ଡ ଶୁମ୍ଭ ଅଉ ନିଶୁମ୍ଭ ଅଇଲେ ।
ସେତ ଅମ୍ଭ ଭୁବନକୁ ବାହୁଡ଼ି ନ ଗଲେ ॥
ଦୁର୍ଗା ବୋଇଲେ ହୋଏ ଯେ ଅତି ଉତକର୍ମ ।
ବହୁକାଳ ତାହାକୁ କି ରଖିଦେବ ଧର୍ମ ॥
ମହିଷାସୁର ରଜାର ଅଦ୍ଭୁତ ରଚନା ।
ଭଲମନ୍ଦ ପାପ ପୁଣ୍ୟ ସେହୁ କରେ ସିନା ॥
ଯହୁଁ ଅଇଲା ସେ ପୁଣ ତହିଁକି ସେ ଗଲା ।
ଜଳବିମ୍ବ ପ୍ରାୟେ ମଧ୍ୟେ ରୂପ ଦେଖାଇଲା ॥
କେ ଏଥି ଜାତ ହୋଇଣ ଅମର ହୋଇବ ।
ତୁମ୍ଭେ ମଧ ଆଜ କାଲି ତେବେ ନାଶଯିବ ॥
ମହିଷାସୁରକୁ ଯେଉଁ ବ୍ରହ୍ମା ଦେଲେ ବର ।
ସେ ବ୍ରହ୍ମା ଏ ମଣ୍ଡଳେ କି ହୋଇବ ଅମର ॥
ଗୃମର ବେମାଳ ବୋଲେ ନ କହ ଗୋ ବାଣୀ ।
ମୈଷାସୁର ନୃପତିର ହେବ କି ଘରଣୀ ॥
ଏବେ ଆସ ତୋତେ ପୁରୁଷାର୍ଥ କରି ନେବା ।
ଦଶ ଦୋଷ ମହାସ୍ୱାମି କ୍ଷମା କରାଇବା ॥
ଅଥବା ରଜାକୁ ତୋର ନ ବଳଇ ଚିତ୍ତ ।
ଅମ୍ଭର ଭରସା କବା ହୋଇବୁ ସଙ୍ଗାତ ॥

ଦୁର୍ଗା ବୋଇଲେ ହୋ ଶୁଣ ଏମୋହର ବାଣ
ମୈଷାସୁର ରଜାର ମୁଁ ଅଟେଁ ଠାକୁରାଣୀ ॥
ମୁଁ ଯେବେ ତୁମ୍ଭ ରଜାକୁ କରିଲିଁ ଇଛା ।
ତାହା ନହୁଁ ମୋର ଆନେ ନ ବଳଇ ବାଞ୍ଛା ॥
ମୋହର ଅଛନ୍ତି ଜାଣ କନ୍ୟା ବେନିଗୋଟି ।
ସେ ତୁମ୍ଭଙ୍କୁ ଯୋଗ୍ୟ ରୂପ ଗୁଣରେ ତୁଲ୍ୟଟି ॥
ଆସ ଲୋ ଏଠାକୁ ଛାୟା ମାୟା ବେନି ବାଳୀ ।
ବରି ଅସି ଏତେକାଳେ ମିଳେ ମନ ଭଳି ॥
ଦୁର୍ଗା ଡାକନ୍ତେ ବାହାରି ସେ ବେନି ଦେବକ୍ଷ ।
କରପଦ୍ମ ଯୋଡ଼ିଣ ସେ ଛାମୁରେ ମିଳନ୍ତି ॥
ତ୍ରୈଲୋକ୍ୟର ମୋହିନୀ ସେ କାମିନୀ କାମାକ୍ଷୀ ।
ଗୃମର ବେମାଳଙ୍କର ନ ସ୍ଫୁରଇ କଛ ॥
ଅନେକ ଅଳଙ୍କାର ସେ ଅଙ୍ଗେ ଆଭରଣ ।
ନାନା କୁସୁମେ କବରୀଭାର ଶୋଭାବନ ॥
କ୍ଷୋଷାର ଉପରେ ପରିହରଣ ବସନ୍ତ ।
କାମିନୀ ମାନିନୀ ହୋଇ ଅଛନ୍ତି ସ୍ୱପତ ॥
ବେଶ ବନ୍ଧାନେ ସଂସାର ଜନ ମୋହିପାରି ।
ତିନି ଭୁବନରେ ତାଙ୍କୁ ନାହିଁ କେହି ସରି ॥
ଦୁର୍ଗା ବୋଇଲେ ହୋ ଶୁଣ ଗୃମର ବେମାଳ ।
ଏ ମୋର ଦୁହିତା ତୁମ୍ଭେ ଯାଙ୍କୁ ପ୍ରତିପାଳ ॥
ଶୁଣି ସାନନ୍ଦ ହୋଇଲେ ସେ ଅସୁର ବେନି ।
ଛାୟା ମାୟାଙ୍କର ହସ୍ତ ଧରି ଗଲେ ଘେନି ॥
ଲକ୍ଷ୍ମୀଭଦ୍ରା ନଦୀକୂଳେ ରହିଅଛି ଥାଟ ।
ଛାୟା ମାୟାକୁ ଘେନିଣ ଗଲେ ସେ ଦର୍ପିଷ୍ଟ ॥
ଅନେକ ଆନନ୍ଦ ମନେ ହେଲେ ମହାଭୋଳେ ।
ଲାଗିଲା ମଦିରା ପାନ ଅତି କୁତୂହଳେ ॥
ନାନା କୌତୁକ କରନ୍ତି ମଦ୍ୟରଙ୍ଗ ଖେଳେ ।
ଦେବୀଙ୍କ ମାୟାରେ ବଶହେଲେ ସେହି ରଙ୍ଗେ ॥
ରାତ୍ର କାଳରେ ଶୋଇଲେ ସମସ୍ତ ସଇନୀ ।
ଗୃମର ବେମାଳ ସ୍ତ୍ରୀ ବେନି ଦେବୀ ଘେନି ॥
କାଦମ୍ବରୀ ପାନେ ଦୈତ୍ୟେ ଅସାଷ୍ଟମବେଳେ ।
ହାସ ଦେଖାଇ ମାହିଣ ବସି ବକ୍ଷସ୍ଥଳେ ॥
ଡାକନ୍ତି ପାମରେ ଏବେ ଯିବ କେଉଁଠାକୁ ।
ନଖେ ବିଦାରିଲେ ଦେବୀ ତାହାଙ୍କର ବୁକୁ ॥
ମଦିରା ପାନରେ ବୁଡ଼ିଛନ୍ତି ବେନିଜଣ ।
ଭୂମିରେ ପଡ଼ିଲେ ଦୁଷ୍ଟେ ହୋଇ ଗତପ୍ରାଣ ॥

ଚାମର ବେମାଳ ମାର ମାରିଲେ ସଇନ ।
ତାଳ ଭକାଳେ ପଳାଇଗଲେ ଦେବ ସେନ ॥
ବ୍ରହ୍ମାଣ୍ଡ କମ୍ପିଲା ଦେଖି କରନ୍ତେଣ ରଡ ।
ଅସୁରଙ୍କ ମାରି ରକ୍ତମାଂସେ କଲେ ଖେଡ ॥

—›○‹—

କାଳମାଳା ବଡ଼ାଳାକ୍ଷ ରକ୍ତବୀଜ ବୀର-
ଘଣ୍ଟ ଏବଂ କାଳଦଣ୍ଡ ପ୍ରଭୃତିଙ୍କର
ଯୁଦ୍ଧେ ଗମନ ଓ ମୃତ୍ୟୁ ।

କାଳଭକାଳ ଏ ଦୁହେଁ ଗଲେ ଅତିବେଗେ ।
ଯାଇ ଜଣାଇଲେ ମୈଷାଅସୁରର ଆଗେ ॥
ଶୁଣ ସାବଧାନେ ମହାରାଜ ଆମ୍ଭ କଥା ।
ସମଦଣ୍ଡ ସେନ ସେହୁ ଗଲେ ମହାରଥୀ ॥
ଦେଖିଲୁ ଯୁବତୀ ବସିଅଛି ଏକାନ୍ତରେ ।
ଚାମରବେମାଳ ଯାଇ ହେଲେ ସେହିଠାରେ ॥
ତାକୁ ଦେଖି ମୋହଗଲେ ସେହୁ ବେନଭାଇ ।
ବୋଇଲେ ଆମ୍ଭ ଭାରଯା ହୋଇବୁ କି ତୁହି ॥
ସେ ବୋଇଲା ମୈଷାସୁର ବଳବୀର୍ଯ୍ୟ ଶୁଣି ।
ମୁହିଁ ଅଛିଅଛି ତାର ହୋଇବି ଘରଣୀ ॥
ରାଜାର ଭାରଯା ଯେ ସେ ତୁମ୍ଭ ଗୁରୁପତ୍ନୀ ।
ତାହାକୁ ହରଣ ଲୋଡ଼ ଏତେକ ଅଜ୍ଞାନୀ ॥
ଏରୂପେ କାମ ଛଳରେ ଧର୍ମକୁ ଲଙ୍ଘିଲେ ।
ଏହି ପାପୁଁ କରି ଚଣ୍ଡମୁଣ୍ଡେ ନାଶଗଲେ ॥
ଝିଅ ଦୁଇଗୋଟି ଥିଲା ତାହାଙ୍କର ତୁଲେ ।
ଚାମରବେମାଳକୁ ସେ ଦୁହିଙ୍କି ଅର୍ପିଲେ ॥
ଦୁହିଙ୍କି ଘେନି ସେ ବେନଭାରେ ଚଳଟଲେ ।
ରତ୍ନଗିରି ତଳରେ ସେ ନିଶାରେ ରହିଲେ ॥
ପ୍ରଭାତେ ଯାଇଁ ଦେଖିଲୁଁ ସେ ବେନ ବୀରଙ୍କୁ ।
ଭସ୍ମୀକରିଣ ହୋଇଅଛି ବୁଲୁ ॥
ସ୍ୱାମି ଯାଉଁ କୋଶେଯାଏ ବୁଡ଼ିଲେକ ବଳ ।
ଗଣ୍ଡସ୍ଥାନେ ପଡ଼ିଅଛି ମସ୍ତକ କେବଳ ॥
ଗଜ ଅଶ୍ୱ ରଥ ଆଉ ଯେତେକ ସଇନ ।
ଜଣେ ନଇଲେ ଲେଉଟି ଦେବ ଦେହ ଘେନ ॥
ଯେହୁଁ ସେନାମାନଙ୍କର ଶୁଣିଲା ବିନାଶ ।
ବଜ୍ରାଘାତ ପ୍ରାୟେକ ସେ ପଡ଼ିଲା ରାକ୍ଷସ ॥
ହାହା ସୋଦର ରେ ତୁମ୍ଭେ ମୋର ପ୍ରାଣସଖା ।
ମମକାର୍ଯ୍ୟେ ଯାଇ କାହୁଁ ହୋଇଲ ନିରେଖା ॥
ବ୍ରହ୍ମାଣ୍ଡ ସାଧିକଲି ମୁଁ ତୁମ୍ଭ ବାହୁବଳେ ।
କଷ୍ଟରେ ନାଶ ଗଲ ମୋ କର୍ମର ଅବଳେ ॥
ମେଦିନୀରେ ପଡ଼ି କାନ୍ଦେ ମୈଷାସୁର ରାଜେ ।
ଅଧାଷ୍ଟମ ଭୂମିରେ ସେ ପଡ଼ି ଲୋଟିଯାଏ ॥
ରାଜା ଅପାଷ୍ଟମ ଦେଖି ସର୍ବସେନାପତି ।
ଏକଠୁଣ୍ଡ ହୋଇଲେ ସେ ମୈଷାସୁର କତି ॥
ରୋଦଇ ମହିଷାସୁର ହୃଦର ବିକଳେ ।
ଆହା ବୀରମାନେ କାହିଁ ଗଲ ଏକାବେଳେ ।
ହେ ବାଭପ୍ୟେ ଚଣ୍ଡମୁଣ୍ଡ ଶୁମ୍ଭ ରେ ନିଶୁମ୍ଭ ।
ଚାମର ବେମାଳ ମୋର ପ୍ରାଣ ସମ ସର୍ବ ॥
ତୁମ୍ଭ ହେତୁ ସ୍ୱର୍ଗମର୍ତ୍ତ୍ୟ ପାତାଳେ ମୁଁ ରାଜା ।
ମୃତ୍ୟୁମଣ୍ଡଳ ରାଜାଏ କଲେ ମୋତେ ପୂଜା ॥
ମୋତେ ମରଣ ନୋହିଲା କପାଁ ତୁମ୍ଭ ଆଗେ ।
ଏତେବୋଲିଣ ସେନାଙ୍କୁ ବୋଲେ ପୁଣି ରାଗେ ॥
ଯାଇ ସେ ମୋହିନୀର ଆଣ କେଶ କରେ ଧରି ।
ତେବେ ସେ ସୁସ୍ଥହୋଇବ ଏ ମୋହର ପୁରୀ ॥
କନ୍ୟାରୂପ ଧରି ଥାଏ ରତ୍ନାଦ୍ରିରେ ବସି ।
ବିଶ୍ୱାସ କୂଟେ ମୋ ସେନାମାନଙ୍କ ବିନାଶି ॥
ଭୂମିରେ ତା ଚରଣ ନ ପଡ଼ୁ ଧରି ଆଣ ॥
ଅସୁରକୁଳର ସେହୁ ଘେନିବ ପରାଣ ॥
ତିଳ ପ୍ରମାଣରେ ମୁହିଁ କାଟିବି ତା ମାଂସ ।
ତେବେ ସେ ମନ ମୋହର ହୋଇବ ସନ୍ତୋଷ ॥
ରକ୍ତମାଂସ ଖାଇବଇଁ ତାର ମୁହିଁ ଭଜି ।
ପୁଣ ପୁଣ କୋପେ ବୀର ଉଠେ ଗଳଗାଜି ॥
ରକ୍ତବୀଜ ବୋଲେ ସ୍ୱାମି ଏ ଭଲ ନୁହଇ ।
ତୋହ ବୋଲ ଶୁଣି ମୋର ଦେହ ରୋମାଞ୍ଚଇ ॥
ଦେବ ଆମ୍ଭେ ସୁରଜଣ ତୋର ଅଛୁ ସେନା ।
ଦେବତା ଦାନବେ ଆମ୍ଭେ ନ କରୁଁ ଗଣନା ॥
ଆମ୍ଭେ କି ସହି ପାରବୁ ହେ ଦେବମାର୍ତ୍ତଣ୍ଡ ।
ଯାହା ତୁଳନ୍ତେ କମ୍ପଇ ସପତ ବ୍ରହ୍ମାଣ୍ଡ ॥
ବ୍ରହ୍ମାଇନ୍ଦ୍ର ରଦ୍ରଙ୍କୁ ହୋ ଧାଡ଼ ଯେ ଅସୁର ।
ସେ ଛାର ପାମରୀ ପିନା ଅଛି ସ୍ତ୍ରୀନସ୍ତ୍ରିରୀ ॥
ମାରନ୍ତେ ସ୍ତ୍ରୀହତ୍ୟା ଜଣନ୍ତେଣ ନାହିଁ ଯଶ ।
ତୁହତ ସମସ୍ତ ଜାଣୁ ତାକୁ ଭୟ କିସ ॥
ତାହା ଶୁଣି ବୋଇଲେ ଯେ ସେ କାଳଭକାଳ ।
ସ୍ତ୍ରୀସଙ୍ଗ ବୋଲି ତୁମ୍ଭେ କରୁଅଛ ହେଳ ॥

ଚଣ୍ଡମୁଣ୍ଡ ଜିଣିବାକୁ ହେଲା ସାମରଥ ।
କୃଷ୍ଣେ ନାଶଗଲା ଶୁମ୍ଭ ନିଶୁମ୍ଭ ଦଇତ ।
ତ୍ରୈଲୋକ୍ୟରେ ଅଜେୟ ଯେ ଶ୍ରମଦେବମାନ ।
ବିଦାରଣ କଲା ପୁଣି ତାଙ୍କ ବକ୍ଷସ୍ଥଳ ।
ହିରଣ୍ୟ ବିଦାରି ଥିଲେ ଯେମନ୍ତେ ନୃସିଂହ ।
ତାହାକୁ କେମନ୍ତେ ତୁମ୍ଭେ ବୋଲ ସ୍ତ୍ରୀଲିଙ୍ଗ ॥
ମାନିନୀ ମୌନାବସ୍ଥାରେ ଥାଏ ହୋଇ ତୁନି ।
ରଣରଙ୍ଗ ଧନ୍ଦୋଳରେ ନୋହେ ତାକୁ ଜିଣି ॥
ସ୍ତ୍ରୀଲିଙ୍ଗ ବୋଲି ତୁମ୍ଭେ ତାହାକୁ ନ ବୋଲ ।
ଯେତେ ପାର ତେତେ ଯମଦଣ୍ଡ ଘେନ ଚଳ ॥
କାନ୍ତମାଳା ବୋଲେ ତାକୁ ଜସ ମୋର ଜୀତ ।
ଏହିକ୍ଷଣି ଧର ଘେନ ଅଧିବ ଝଟିତ ॥
ଏତେବୋଲି ବାହାରି ଯେ ମୁଦ୍ଗର ବୁଲାଇ ।
ଅସ୍ଥାନ ଉପରୁ ଖାଇ ପଡିଲାକ କ୍ରୋଧେଇ ॥
କାନ୍ତମାଳା ଯାନ୍ତେ ଦେଖି ଯାଏ ରକ୍ତବୀଜ ।
ବିଡ଼ାଳାକ୍ଷ ବୀରଘଣ୍ଟ ହେଲେ ବେନି ସଜ ॥
ରକ୍ତବୀଜ ଭୁଲେ ଦୁଅଦଶ କୋଟି ସେନା ।
ପନ୍ଦରବର୍ଣ୍ଣ ଦ ଶୁଭତ ବଂଶ କୋଟି ଜେନା ॥
ପଚିଶ ଅଯୁତଭୁଲେ ଗମନ୍ତି ପଦାତି ।
ଦଣ୍ଡ ଶୂଳକ୍ରୋଧ କମ୍ପିଉଠେ ବସୁମତୀ ॥
କାନ୍ତମାଳା ଭୁଲେ ସେନା କୋଟିଏ ମର୍ଦ୍ଦିତ ।
ପଦାତି ବଳ ତାହାର ଅତି ଅପ୍ରମିତ ।
ବାଦ୍ୟକାରମାନେ ତାର ସଭୁରି ମର୍ଦ୍ଦିତ ।
ପଞ୍ଚଦଶ କୋଟିବାଣ ବାଜେ ଅଗଣିତ ॥
କାମସ୍ୱରୂପୀ ଦାନବ ଜଗତ ଘୋଟିଲେ ।
ମହା ମହା ଦାନବେ ସେ ସମରେ ଚଳିଲେ ॥
ବୀରଘଣ୍ଟ ଭୁଲେ ସୈନ୍ୟ ବାଇଶ ମର୍ଦ୍ଦିତ ।
ହ୍ରେଷାର ତୁରଙ୍ଗମ ଯେ ଷାଠି କୋଟିସ୍ଥିତ ॥
ଅଶୀ ଅର୍ବୁଦ ପଦାତି ତାର ସୈନ୍ୟ ଭୁଲେ ।
ଏତେକ ଘେନିଣ ସେହି ଚଳେ ଅବହେଳେ ॥
ଚଳିଲେ ଗ୍ରହବୀରେ ସେ ରକ୍ଷ ବଳ ଘେନି ।
ମହାଭୟେ ଥରହର ହେଉଛି ମେଦିନୀ ॥
କାଳଦଣ୍ଡ ଚଳଇ ଯେ ଦୈତ୍ୟ ବଳ ଘେନି ।
ଭୁଲେ ତାର ତିନି ପଦ୍ମ ଅଛନ୍ତି ସଇନ ॥
ସିଂହ ପଦ୍ମରେକ ଥାଇଁ ଦୈତ୍ୟେ ଦେଲେ ଯାଡ଼ ।
ମହା ସମ୍ଭ୍ରମରେ ଯାଇଁ ରହିଗିରି ବେଢ଼ି ॥

ଧରଧର ମାରମାର ପଡ଼ୁଅଛି ବୋବ ।
ଗିରିରେ ଥାଇ ଦେଖିଲେ ତାହା ଦୁର୍ଗାଦେବୀ ॥
ଘୋରଶବଦ କରନ୍ତି ଦାନବେ ପ୍ରଚଣ୍ଡ ।
ହାଲହଳୀ ହୁଅଇ ଯେ ସପତ ବ୍ରହ୍ମାଣ୍ଡ ।
ଅସ୍ତ୍ରରେ ପ୍ରକଣ୍ଟ ବଢ଼ କରନ୍ତି ବିଖଣ୍ଡ ।
ଦେଖି ଦୁର୍ଗା ଦେହ ଝାଳ ଗଳଇ ପ୍ରଚଣ୍ଡ ॥
ଲଲାଟ ପାଟିରୁ ପୁଣି ବହେ ମହାଘର୍ମ ।
ତାହାପୋଛି ପକାଇଲେ କରି ଅତି ତମ ॥
ଲଲାଟୁ ସେ ସ୍ୱେଦ ଯାଇ ପଡ଼ିଲା ଧରଣୀ ।
ପ୍ରଥମେ ସମ୍ଭୂତ ଚକ୍ଷୁଁ ହେଲେ ନାରାୟଣୀ ॥
ନୀଳବର୍ଣ୍ଣ ଦେହ ମୁଖ ଗୋଟି କୃଷ୍ଣବର୍ଣ୍ଣ ।
ଶଙ୍ଖ ଚକ୍ର ଗଦା ଶାର୍ଙ୍ଗଧନୁରେ ଶୋଭନ ॥
ଶିରେ ମୁକୁଟ ଶୋଭିତ କର୍ଣ୍ଣରେ କୁଣ୍ଡଳ ।
ନାମ ନାରାୟଣୀ ତାଙ୍କ ସଦା ମତିଭୋଳ ॥
ଦୁର୍ଗାର ଛାମୁରେ ପରବେଶ ନାରାୟଣୀ ।
ଅଜ୍ଞାଦେଲେ ଗ୍ରହିଣ ଯେ ଦୁର୍ଗତିତାରିଣୀ ॥
ଦେବତାଙ୍କୁ ଏ କଷ୍ଟରୁ କରସି ତୁ ପାର ।
ସମସ୍ତ ଅସୁର ବଳମାନଙ୍କୁ ଗୋ ମାର ॥
ଦୁର୍ଗାଦେବୀଙ୍କର ଅଜ୍ଞାପାଇ ଗୋସାମଣୀ ।
ପ୍ରକାଶିଲେ ମହାବେଶ ରୂପ ନାରାୟଣୀ ॥
ହୁଁକାର ଶବଦ କଲେ ଘୋର ବିକରାଳୀ ।
ଚକ୍ଷୁଁଜାତ ହୋଇ ଉଗ୍ର ହୋଇଲେ ବାସେଳୀ ॥
ପାଦେକ ମର୍ତ୍ତ୍ୟେ ଅରେକ ପାଦ ଗଗନରେ ।
ମୁକୁଳିତ କେଶ ଜଟା ଲହ ଲହ କରେ ॥
ଲୋହିତ ବର୍ଣ୍ଣ ଶରୀର ବାଳ ଅର୍କ ଜିଣି ।
ଅଗ୍ନିଜ୍ୱଳିତ ବ୍ରକୁଟି ପ୍ରତ୍ୟକ୍ଷେ ବଦନ ॥
ନବନଶି କୁଠାର ଯେ ଦକ୍ଷିଣ ଭୁଜରେ ।
ବାମଭୁଜ ଶୋଭିବନ ଦିବ୍ୟ କୃପାଣରେ ॥
ନୟନ କଟାକ୍ଷି ପୁଣ ଗ୍ରହିଁଲେକ ଦେବୀ ।
ତକ୍ଷଣେ ନୟନୁ ଜାତ ହୋଇଲେ ଭୈରବୀ ॥
ଏକପାଦ ମୁକୁଳିତ କେଶ ଭୁଜ ଗୁର ।
ତ୍ରିଶୂଳ ଡମରୁ ଧନୁ ଖଡ୍ଗ କରେ ଧରି ॥
ଶୁକଳକଣ୍ଠି ଶରୀର ସ୍ଫଟିକ ପରାୟେ ।
ମହା ଭଇରବୀ ଦେବୀ ଅତି ତେଜୋମୟେ ॥
ଘନ ଘନ ନିଶ୍ୱାସକୁ ଛାଡ଼େ ଗୋସାମଣୀ ।
ନାସିକାରୁ ଜନ୍ମହେଲେ ବଳାକ୍ଷହାରୁଣୀ ॥

ରୁକ୍ମ ବରଣୀ ଚତୁର୍ମୁଖୀ ଅଷ୍ଟଭୁଜ ।
ବେନ ଚରଣ ଦଶନ୍ତ ବାଳଅର୍କ ତେଜ ॥
ଶ୍ରୀଭୁଜରେ ଅଜଗବ ଧନୁ ବଜ୍ର ଶକ୍ତି ।
ମହା ଦିବ୍ୟରୂପ ତେଜ ସେ ଉଗ୍ର ମୂରତି ॥
କରେ କମଣ୍ଡଳମାଳ ବ୍ରହ୍ମଣର ବେଣୀ ।
ଅବର ଖପର କାତି ଧରିଛନ୍ତି ପୁଣି ॥
ହୁଙ୍କାରରେ ଗର୍ଜ୍ଜନ କରେ ଗୋସାମଣୀ ।
ମସ୍ତଦେବୀ ସାନନ୍ଦିତ ହେଲେ ତାହା ଶୁଣି ॥
ହୃଦରୁ ଜାତ ହୋଇଲେ ଅନାଦ୍ୟ ଶକତି ।
ବେନ ଚରଣ ଯେ ଅଷ୍ଟଭୁଜେ ବିରାଜନ୍ତି ॥
ଧନୁ କମାଣ ତୀକ୍ଷଣ ଶର ଦିବ୍ୟ ତୀର ।
ଭ୍ରାନ୍ତି ନ କରନ୍ତି କାହେ ଅତ୍ୟନ୍ତ ପ୍ରଖର ॥
ଭଗବତୀ ବୋଲିକରି ନାମ ଯେ ତାଙ୍କର ।
ଅନୁବ୍ରତେ ଦେବୀ ବୋଲେ ଅସୁରଙ୍କୁ ମାର ॥
ଖଡ୍ଗଧର ଝମକାନ୍ତି କରେ ଗୋସାମଣୀ ।
ସେ ଖଡ୍ଗ ମୁଷ୍ଟିରୁ ଜାତ ହେଲେ ଇନ୍ଦ୍ରାୟଣୀ ॥
ସୁବେଶ ଶରୀର ମଣିମୁକୁଟ ଲଗାଛେ ।
ବୈଜୟନ୍ତୀ ମାଳା ଯେ ଲମ୍ବେ କଣ୍ଠତଟେ ।
ଶ୍ରୀକରେ ବଜ୍ର ଶକତି କୋଦଣ୍ଡ ଯେ ଧନୁ ।
ଇନ୍ଦ୍ରମ ରେଖା ପରାୟେ ତାହାର କୃଶାନୁ ॥
ଏକଶିର ବେନପାଦ ପୁଣି ସପ୍ତ ଭୁଜ ।
କାଳାନଳ ଜାଣି କରି ସାଜେ ତାଙ୍କ ତେଜ ॥
ରେରେକାରେ ଡାକନ୍ତି ସେ ବାହାନାଦ କରି ।
ସେହି ଶବଦରୁ ଜାତହେଲେ ଡାକେଶ୍ୱରୀ ॥
ମହାଘୋର କାତ୍ୟାୟିନୀ ମହା ଶଙ୍କର ।
ନାଭିରୁ ଜାତ ହୋଇଲେ ପୁଣ ମାହେଶ୍ୱରୀ ॥
ପଞ୍ଚ ବଦନ ଯେ ତିନି ନୟନ ଲଗାଛେ ।
ଚମିର ବଦାରମଣି ବିରାଜଇ କଣ୍ଠେ ॥
ଧବଳୀ କାମାକ୍ଷୀ ଦେବୀ କର୍ପୂର ସମାନ ।
ବେନଚରଣ ଯେ ଦଶଭୁଜ ଶୋଭିବନ ॥
ପିନାକ ଧନୁ ଶାମ୍ବୁକ ନାଗପାଶ ବାଣ ।
ପରଶୁ କୁଠାର ଖଡ୍ଗଫଳା ଯେ ଅଢ଼ଣ ॥
ବଜ୍ର ମୁଦ୍ଗର କୁଠାର ଅଜ ବଜ୍ରଶୂଳ ।
ମହାମାୟୀ ମାହେଶ୍ୱରୀ ପ୍ରସନ୍ନ ସ୍ଥଳ ॥
ନାଭିରୁ ବାହାର ହେଲେ ତାଙ୍କ ଚନ୍ଦ୍ରକାନ୍ତି ।
କୋଟିଏ ସୂର୍ଯ୍ୟର ଜ୍ୟୋତି ଅଙ୍ଗ ପ୍ରକାଶନ୍ତି ॥

ଅଭୟା ବିକଟାକ୍ଷୀ ସେ ଭାବେ ତେଜ ତାର ।
ତାହାର ନାଭିରୁ ଜାତ ହେଲେ ଉଗ୍ରତାରା ॥
ଯୋଜନ ଯୋଜନ ଅଟେ ତାଙ୍କ ବାହାବେନ ।
ମହାଭୟଙ୍କର ରୂପ ଘୋଟିଲା ମେଦିନୀ ॥
ଚରଣ କମଳରେ ସେ ତାଡ଼ିଲେ ଧରଣୀ ।
ତହିଁ ଜାତ ହୋଇଲେ ଯେ ସଙ୍କଟତାରଣୀ ॥
ଏକପାଦ ଶୂରମୁଖ ଆଠଗୋଟି ଭୁଜ ।
ବିକଚ କମଳ ପ୍ରାପ୍ତ ଦିଶେ ମହାତେଜ ॥
ଘୋର ଗହନ ଅଟଇ ବହୁଗିରି ସ୍ଥାନ ।
ସମସ୍ତଦେବୀମାନେ ଯେ ତହିଁ ଉତ୍ପନ୍ନ ॥
ଘଟଘଟ ଶବ୍ଦ ଶୁଭେ ଗଗନମାର୍ଗରେ ।
ମହା ବୈଷ୍ଣବୀ ବିଜୟେ ଦୁର୍ଗାଙ୍କ ଅଗରେ ॥
ଦେଖିଣ ସେ ଦୁର୍ଗାଦେବୀ ହେଲେ ତୋଷମନ
ଘଣ୍ଟବତୀ ବୋଲି ଦେଲେ ତାହାଙ୍କର ନାମ ॥
ଘଣ୍ଟ ବିଜୁଳୀ ତାର ଏ ତେଜ ଯେ ପ୍ରକାଶ ।
ବଜ୍ରସୂଚ ପ୍ରାୟେ କ୍ଷଣ କ୍ଷଣକେ ଅଦୃଶ୍ୟ ॥
ଶୁଣ ପରୀକ୍ଷିତ ରାଜା ବୋଲେ ଶୁକମୁନି ।
ଏକଶରୀରୁ ଜନ୍ମିଲେ ଚଉଷଠି ଯୋଗିନୀ ॥
ଏକୁ ଏକ ଦେବୀଙ୍କର ମହାମହା ତେଜ ।
ବିକୃତ ଶରାୟେ ତାଙ୍କ ଶରୀର ବିରାଜ ॥
ମହା ବିକଟାଳୀ ରୂପ ଅଭୟା ପିଙ୍ଗଳା ।
କ୍ଷଣକେ ମୋହିନୀ ସେହି କ୍ଷଣେ ମହାଖଳା ॥
ଖପର କଟାରି କରେ ଲହଲହ ଜିଭ ।
ମହାମୂର୍ତ୍ତି ତାହାଙ୍କର ଦେବଙ୍କୁ ଦୁର୍ଲଭ ॥
ହେ ପରୀକ୍ଷ କନ୍ୟାମାସ ପୂର୍ଣ୍ଣିମୀ ଯେ ତିଥି ।
ଭୃଗୁବାର ସେହି ଦିନ ନକ୍ଷତ୍ର ରେବତୀ ॥
ବିଷ୍ଟିନାମରେ କରଣ ପ୍ରୀତିନାମେ ଯୋଗ ।
ଶରଦ ଅନ୍ତେ ଶିଶିର ଋତୁ କରେ ଭୋଗ ॥
ସେ ଦିନ ଜନ୍ମିଲେ ନାରାୟଣୀ ଦୁର୍ଗା ଦେହୁଁ ।
ନାରାୟଣୀ ଦେହୁଁ ଏତେ ଜାତ କହୁଁ କହୁଁ ॥
ଏକୁ ଏକ ତେଜ ବିରାଜନ୍ତି ମହାମାୟେ ।
ନାରୀରୂପେ ଜନମିଲେ ସର୍ବ ଦେବତାଏ ॥
ଜୟ ନାରାୟଣୀ ଭକ୍ତଜନଚିନ୍ତାମଣି ।
ରୁଦ୍ରାଣୀ ଅବନୀକ ତୁ ଅଟୁ ଉଦ୍ଧାରଣୀ ।
ଏକୁ ଅନେକ ପ୍ରକାଶକାଳୁ ତନୁ ସୀମା ।
ଦେବଙ୍କୁ ଦୁର୍ଲ୍ଲଭ ଯେଉଁ ଦେବୀର ମହିମା ॥

ନମସ୍ତେ ନମସ୍ତେ କାତ୍ୟାୟିନୀ ଗୋ ଅଭୟା ।
ବିପତ୍ତିନାଶିନୀ ଦେବୀ କରସି ସୁଦୟା ॥
ଯାବତ ଜୀବମାନଙ୍କୁ ତୁହି ସେ କାରଣୀ ।
ଜୟ ମାହେଶ୍ୱରୀ ଭବ ଭୟ ନିବାରଣୀ ॥
ଚଉଷଠୀ ଯୋଗିନୀ ରୂପା ତୋତେ ଗୋ ନମସ୍ତେ ।
ସକଳ ସମ୍ପଦମାନ ଦେଉ ଅଦ୍ଭୁତେ ॥
ମହାମାୟା ଭକ୍ତବତ୍ସଳୀ କଙ୍କାଳୀ ବେତାଳୀ ।
ଅସ୍ଥିଚର୍ମ ଭୂଷଣ ତୋ ଗଳେ ମୁଣ୍ଡମାଳ ॥
ଭୁଜେ ଶୋଭିବନ କାତି ଖପର ମୁଖଣ୍ଡା ।
ରୁଧିର ବଲିପ୍ତ ଦେହଯାକ ତୁ ଚାମୁଣ୍ଡା ॥
ମରାଳବାହିନୀ ଜୟ ଜୟ ଶ୍ୟାମମୂର୍ତ୍ତି ।
କରୀନ୍ଦ୍ରବାହିନୀ ଜୟ ଇନ୍ଦ୍ରାୟଣୀ ଶକ୍ତି ॥
ନାରାୟଣୀ ବିଜେକଲେ ଗରୁଡ଼ର ପିଠି ।
ରୁଦ୍ରାୟଣୀ ବୃଷଭର ପରେ ଯାଇଁ ଉଠି
ସମ୍ପାତ ବାହାନପରେ ଭଇରବୀ ବିଜେ ।
ବ୍ୟାଘ୍ର ବାହାନ ଉପରେ କାତ୍ୟାୟିନୀ ସଜେ ॥
ଚର୍ଚ୍ଚିକାଇ ବିଜେ କଲେ ମୃତ୍ୟୁପିଣ୍ଡ ପରେ ।
ଉଗ୍ରତାରା ବିଜେକଲେ ବଡ଼ାଳ ଉପରେ ॥
କଇବର ଅସନରେ ବିଜେ ମହାମାୟା ।
ବୃଶ୍ଚିକ ବାହନ ଚଢି ଚଳନ୍ତି ଅଭୟା ॥
ଭୁଜେ ଶୋଭିତ ଖପର ଅଜ କାତିଖଣ୍ଡା ।
ଉଲ୍ଲୁକ ବାହନ ଚଢ଼ି ଚଳନ୍ତି ଚାମୁଣ୍ଡା ॥
ବିଜୟେ କଲେ କଂକାଳୀ ମୟୂରର ପିଠି ।
ବେତାଳୀ ବିଜୟେ କଲେ ଚଢ଼ି ହଂସଗୋଷ୍ଠ ॥
ମାତଙ୍ଗୀ ବିଜୟେ କଲେ ଗର୍ଦ୍ଦଭ ବାହନେ ।
ମାରୁଣୀ ଦେବୀ ଚଳନ୍ତି ହରଣ ବାହନେ ॥
ଜ୍ୱାଳାମୁଖୀ ବିଜେକଲେ ଶୂକର ଅସନେ ।
ଯେମନ୍ତ ଶୋଭା ସେ କହି ନୁହଇ ବଚନେ ॥
ବାରାହୀ ବିଜୟେ କଲେ ମହିଷ ପିଠିରେ ।
ଭକ୍ତବତ୍ସଳୀ ବିଜେକଲେ ଜମ୍ବୁକା ଉପରେ ॥
ମେଷକୁ ଅସନ କରି ବିଜୟେ ବାଉଣୀ ।
ଛାଗଳ ବାହନେ ବିଜେକଲେ ଚନ୍ଦ୍ରକାନ୍ତି ॥
ଭକ୍ତବତ୍ସଳୀ କୃତାନ୍ତକୀ ନାମେ ଯେଉଁ ଚଣ୍ଡୀ ।
ଜଙ୍ଗମବାହନେ ବିଜେ କରରେ ଭୁଷଣ୍ଡି ॥
ଶକଟ ବାହନେ ବସି ଚଳନ୍ତି କାମାକ୍ଷୀ ।
ବାଜୁଟଅ ବାହନରେ ଚଳନ୍ତି ତାରାକ୍ଷୀ ॥

ବଡ଼ାଳ ବାହନ ଚଢ଼ି ଚଳେ ଡାକେଶ୍ୱରୀ ।
ଦାଣ୍ଡୋଳା ଚଢ଼ି ବେତାଳୀ ଧୀରେ ବିଜେକରି ॥
ଶାର୍ଦ୍ଦୂଳ ବାହନେ ଯେ ଅଭୟ ଭଦ୍ରକାଳୀ ।
ଭଲ୍ଲୁକ ବାହନ ଚଢ଼ି କାଳସନ୍ଧୀ ଚଳେ ॥
ଚଞ୍ଚଳଗମନୀ ବିଜେ ମହିଷୀର ପିଠି ।
କରରେ ଶୋଭିବନ ଯେ ଖଡ୍ଗ କୁନ୍ତ କାଠି ॥
ଘଣ୍ଟେଶ୍ୱରୀ ବିଜେକଲେ ସିଂହ ବାହନରେ ।
ଆକାଶେ ଘୋଟିଲେ ସର୍ବେ ଚଉଗହନରେ ॥
ବଜାନ୍ତି ଯେ ବଜ୍ରଘୋଷ ଉଛରବେ ଡାକ ।
ରେରେକାର ଶବଦରେ ଦେବୀମାନେ ହାକି ॥
ବୀର ନିଶାଣ କାହାଳ ଯେ ବୀର ଦାଉଣ୍ଡି ।
ମଉରଙ୍ଗେ ରସେ ନାଚ ଖେମଟା ନାଚୁଣ୍ଡି ॥
କଡ଼ା ମର୍ଦ୍ଦଳ କଂସାଳ ବାଇ ସୁମତାଳ ।
ନାଚନ୍ତି ମଉରଙ୍ଗରେ ଦେଇ ହୁଳହୁଳୀ ॥
ଶୁଣ ପରୀକ୍ଷିତ ନୃପ ଦେବୀଙ୍କ ଚରିତ ।
ଦେଖିବା ଲୋକଙ୍କୁ ହେବ ଅତିଅଲୌକିକ ॥
କ୍ଷଣକେ ମୋହିନୀ ରୂପ କ୍ଷଣେ ବୀରମୂର୍ତ୍ତି ।
କ୍ଷଣେ ମର୍ତ୍ତ୍ୟପୁରେ କ୍ଷଣେ ଗଗନରେ ଜ୍ୟୋତି ॥
କ୍ଷଣକେ ସୁନ୍ଦରୀ କ୍ଷଣକରେ ରକ୍ତରୂପୀ ।
କ୍ଷଣକେ ବାଳଭାବ ଯେ କ୍ଷଣେ ମହାକୋପୀ ॥
କ୍ଷଣକେ ନବ ଯୁବତୀ କ୍ଷଣେ ବୃଦ୍ଧା ନାରୀ ।
ଗାବନ୍ତି ଡରହକଳା କୋଇଲର ପରି ॥
ଖେଚରୀ ଭୂଚରୀ ନାଦ ଦ୍ୟନ୍ତି କଳକଳା ।
ମୃତ୍ୟୁପିଣ୍ଡ ଭକ୍ଷନ୍ତି ସେ ମଦରସେ ଭୋଳା ॥
ଏସନେକ ଭକ୍ତଶାଳୀ ଚଉଷଠି ଯୋଗିନୀ ।
ଶାରଳା ଦାସେ କହଇ ମାଗୋ କାତ୍ୟାୟିନୀ ॥
ଅହେ ବୁଧଜନମାନେ ନୁହେ ମୁଁ ପଣ୍ଡିତ ।
ମୂର୍ଖ ଅପାଠକ କାଳ ହେଲ ମୋ ଅଶିତ ॥
ଜନ୍ମକୁଷିକାର ନ ଜାଣେ ମୁଁ ଶାସ୍ତ୍ରସନ୍ଧି ।
ପଣ୍ଡିତଙ୍କୁ ବୋଧିବାକୁ ମୋର କିସ ବୁଦ୍ଧି ॥
ଅଗାଧ ସମୁଦ୍ର ଏହୁ ପୁରାଣ ଯା ବୋଲ ।
ପଶି କେ ଅନ୍ତ କରିବ ବାସଂନଧ ବାଲ ॥
କୃପାକୁଳ ନନ୍ଦିନୀ ଯେ ଦେବୀ ସରସ୍ୱତୀ ।
କଳିକାଳଧ୍ୱଂସିନୀ ସେ ମାତା ଚଣ୍ଡୀମୂର୍ତ୍ତି ॥
ମହାବ୍ରହ୍ମୀ ଦେବୀ ଚଣ୍ଡୀ ପ୍ରସନ୍ନ ହୋଇଲା ।
ଖଳ ଜନତାରିଣୀ ଭକତବତ୍ସଳା ॥

ମୁଁ କସ ଜାଣିବ ଶାସ୍ତ୍ର ସଂହିତାର ବାନ୍ଧ ।
ଅନ୍ତେବା ଅବକ୍ତ୍ରେ ମୁଁ ପାଇଲଇଁ ଭେଟ ॥
ସେ ମୋତେ ଶ୍ରୀମୁଖେ ଅଜ୍ଞା ଦେଇଛନ୍ତି ଯାହା ।
ଚିହ୍ନଜା ପ୍ରସଙ୍ଗେ ମୁହିଁ ଲେଖଇଛି ତାହା ॥
ହେ ପଣ୍ଡିତଜନମାନେ ନ ଧର ମୋ ଦୋଷ ।
ଅଶ୍ୱମେଧଫଳ ଲଭ ଶୁଣି ଏହି ରସ
ଏ ଅଟେ ବିଷ୍ଣୁ ପୁରାଣ ଚଣ୍ଡୀ ଯୁଦ୍ଧ କଥା ।
ସଂସାରିଜନ କଲ୍ୟାଣେ ମୁଁ ଅଭଦ୍ରବକ୍ତା ॥
ଝଙ୍କଡ଼ପୁରବାସିନୀ ଯେ ଶାରଳା ଦେବୀ ।
ମୁହିଁ ତାର ପୁତ୍ର ଶ୍ରୀ ଶାରଳାନାମେ କବି ॥
ଏକଚିତ୍ତ ହୋଇ ଯେହୁ ପାରେ ଏହା ଶୁଣି ।
ବିପତ୍ତି ଖଣ୍ଡଇ ତାର ଜନ୍ମେ ଗୋସାମଣୀ ॥
ଶୁକମୁନି କହେ ଶୁଣ ଅହେ ମହାରଥୀ ।
ଶୁଣ ଶୁଣ ଚଉଷଠି ଯୋଗ୍ନୀଙ୍କର କଥା ॥
ଅସୁର ଧନ ପ୍ରଶାଦ ପରଂଗତ ଦ୍ୟନ୍ତି ।
ଶୁଣିକରି ସୃଜନେ ଯେ ପଢ଼ନ୍ତି ଶୁଣନ୍ତି ।
କୁଣ୍ଡନ ଅକାରକରି ଦୁର୍ଗାଙ୍କୁ ବେଢ଼ିଲେ ।
କ୍ଷୁଧାରେ ଅକୁଳେ ରହି ନ ପାରୁଁ ବୋଇଲେ ॥
ବିକଟାଳୀ ଘୋର ରୂପ ଅଟେ ସବୁଙ୍କର ।
କଙ୍କାଳୀ ବେତାଳୀଙ୍କର ଶୂନ୍ୟେ ଲାଗେ ଚିର ॥
ମହୀରୁ ଆକାଶ ଯାଏ ତୁଣ୍ଡ ବିସ୍ତାରିଲେ ।
ଦୁର୍ଗାଙ୍କ ମୁଖକୁ ଚାହିଁ ଆହାର ମାଗିଲେ ॥
ଦେବୀଏ ବୋଇଲେ ଜନ୍ମକଲୁ ତୋର ଦେହୁଁ ।
ଆହାର ନ ଦେଲେ ଅମ୍ଭେ ବଞ୍ଚିବୁଁ କାହୁଁ ॥
ଦୁର୍ଗା ଦେଖାଇ ଦେଲେକ ଦୈତ୍ୟ ସେନ୍ୟବଳ ।
ଏହାଙ୍କୁ ବାଣ୍ଟିଣ ଭୋଗ କରନ୍ତୁ ସକଳ ॥
ଅସ୍ଥି ଚର୍ମ ମାଂସ ଲୋ ନ ଘୋଇବଟି କିଛି ।
ନ ଅଣ୍ଟଇ ବୋଲି ମନେ ନୋହିବ ଅମୂର୍ଚ୍ଛି ॥
ଏଥକୁ ଭ୍ରାନ୍ତ୍ୟ ଲୋ ତୁମ୍ଭେ ନ କରିବ କିଛି ।
ଅସୁର ଆହାର ତୁମ୍ଭପାଇଁ ରଖିଅଛି ।
ଶୁଣ ସେହୁ ଏହି ଅଜ୍ଞା ଦେଲେ ଯହୁଁ ଦୁର୍ଗେ ।
ଶ୍ୟେନପକ୍ଷୀପ୍ରାୟେଯାଇଁ ଭେଟିଲେ ସେ ବେଗେ ॥
ବଜାଇ ଗାର ଦାଉଣ୍ଡି ଅଜ ବଜ୍ରଘୋଷ ।
ତାଳହାକ ଦେଲେ ସର୍ବେ ବୋଲି ଅସ ଅସ ॥
ଗଗନ ମଣ୍ଡଳେ ଯୋଟିଗଲେ କାମରୂପୀ ।
ସ୍ୱହିଁ ସ୍ୱହିଁ କ୍ଷଣକରେ ବ୍ରହ୍ମାଣ୍ଡକୁ ବ୍ୟାପି ॥

ଏମନକ ରୂପ ସେ ଯେ ହେଲେ ମହାମାୟୀ ।
ଘୋଟିଲେ ଦାନବଙ୍କୁ କ ଜାଣି ବନସ୍ଥଳ ॥
ତ୍ରୈଲୋକ୍ୟ କମ୍ପିଲା ଦ୍ୟନ୍ତେ ମହାଘୋରରଡ଼ ।
ଅସୁରବଳରେ ଦେବୀ ପଡ଼ିଲେକ ମାଡ଼ ॥
ଦାନବଙ୍କର ସୈନ୍ୟଙ୍କୁ ଧଇଲେ ଅକ୍ଷୌଣି ।
ଧରଣ ଅସୁର ବଳ କ୍ଷଣକରେ ଗ୍ରାସି ॥
ରଥଗଜ ଅଶ୍ୱମାନିନ ଜାଣନ୍ତି କିଛି ।
ଯେ ଯାହାର ଇଚ୍ଛାରେଣ ଗିଳନ୍ତି ସେ ବାଛି ॥
ଏହା ଦେଖି ଦାନବେ ଯେ ଅନୁକ୍ଷଣେ ବାଣ ।
ମାରନ୍ତି ଗଦା ମୁଦ୍ଗର ଭୁଷଣ୍ଡି କୁନ୍ତେଣ ।
ତା ସବୁ ଫୋପାଡ଼ି ଦ୍ୟନ୍ତି ଦେବୀ କରେ ଧରି ।
ଆକାଶକୁ ଉଠିଯାନ୍ତି ସର୍ବେ ଚରମାରି ॥
ଶୁଣ ହେ ପରୀକ୍ଷରାଜା ଦୈତ୍ୟେ ମହାବଳୀ ।
ଏକେ ଏକେ ପରବତ ପାରନ୍ତି ସେ ତୋଳି ॥
ସେ ଦଇତମାନଙ୍କୁ ଯେ ଧରି ଦେବୀଗଣ ।
ବେଣ୍ଟକରେ ମୁଣ୍ଡମୋଡ଼ ଗିଳନ୍ତି ବଦନ ॥
ମହା ପ୍ରଳୟକାରୀ ଯେ ଦୈତ୍ୟ ମହାକ୍ଷୀ ।
ଘଡ଼ିକରେ ତାହାଙ୍କୁ ସେ କଲେ ବିନଶ୍ୟନ୍ତି ॥
ସେ କଥା ଶୁଣି ପରୀକ୍ଷ ଶୁକଙ୍କୁ ପୁଚ୍ଛଇ ।
ଦେବୀମାନଙ୍କର କେତେ ନାମ ଦେବ କହି ॥
ଶ୍ରୀ ମହାମୁନି ଚୌଷଠି ଯୋଗ୍ନୀ ଯେ ବୋଇଲ ।
ଏକ ଏକ କରି ନାମ ମାନ ନ ଧଇଲ ॥
ଏ ଦେବୀ ମାନଙ୍କର ନ ଧରିଲତ ନାମ ।
ଏହା ସଂକ୍ଷେପି କହିବା ହେ ମୁନିଉତ୍ତମ ॥
ନାନାତାପ ଖଣ୍ଡିବ ସେ ନାମ ସ୍ମରନ୍ତେ ।
ମୃତ୍ୟୁଲୋକ ଛାଡ଼ିବସିବ ମୁଁ ସ୍ୱର୍ଗପଥେ ॥
ଶୁଣ ହୋ କୁରବଂଶୀ ତୁ ବୋଲେ ମୁନିବର ।
ଚୌଷଠି ଯୋଗ୍ନୀଙ୍କ ନାମ ଶନ୍ତି ତୋ ହୃଦର ॥
ପ୍ରଥମରେ ଛାୟା ଏକ ମାୟା ଯେ ଯୁଟ୍ମକ ।
ତୃତୀୟେ ନାରସୃଣୀ ବ୍ରହ୍ମାୟଣୀ ଚତୁର୍ଥେକ ॥
ଭଇରବୀ ପଞ୍ଚମେ ଯେ ମାହେଶ୍ୱରୀ ଷଷ୍ଠ ।
ରୁଦ୍ରାୟଣୀ ସପତମେ ଇନ୍ଦ୍ରାୟଣୀ ଅଠ ॥
ବାତେସଳୀ ନବମ ଦେବୀ ତ୍ରିପୁରା ଯେ ଦଶ ।
ଉଗ୍ରତାରା ଏଗାର ଯେ ଚର୍ଚ୍ଚିକା ଦ୍ୱାଦଶ ॥
ଡାହାଣୀ ତ୍ରୟୋଦଶ ଅମ୍ବିକା ଚତୁର୍ଦ୍ଦଶ ।
କୁଠାରୀ ପନ୍ଦର ଭଗବତୀ ଯେ ଷୋଡ଼ଶ ॥

ମାଳା ସପ୍ତଦଶ କମଳା ଯେ ଅଷ୍ଟାଦଶ ।
ଶାନ୍ତ ଊନବିଂଶ କାନ୍ତ ବିଂଶ ଯେ ପ୍ରକାଶ ॥
ଘଣ୍ଟବତୀ ଏକବିଂଶ ସୁମୁଖୀ ଦ୍ୱାବିଂଶ ।
ଚର୍ଚ୍ଚିକା ତ୍ରୟୋବିଂଶ ମାଧବୀ ଚତୁର୍ବିଂଶ ॥
ସୁଚକେଶ୍ୱରୀ ପଚିଶ ଅନନ୍ଦା ଛବିଶ ।
ସଦାନନ୍ଦା ସପ୍ତବିଂଶ ରୂପା ଅଷ୍ଟାବିଂଶ ॥
ବାରାହୀ ଯେ ଊନତ୍ରିଂଶ ନାଗରୀ ଯେ ତ୍ରିଂଶ ।
ଖେଚରୀ ଏକତ୍ରିଂଶ ଯେ ଭୂଚରୀ ବତିଶ ॥
ବେତାଳୀ ତେତିଶ କାଳଜିତୀ ଚତୁସ୍ତ୍ରିଂଶ ।
ଶଙ୍ଖୀ ପଞ୍ଚତ୍ରିଂଶ ରୁଦ୍ରକାଳୀ ଯେ ଛତିଶ ॥
କାଳରାତ୍ରି ଦେବୀ ଅଟେ ଜାଣ ସପ୍ତତ୍ରିଂଶ ।
କଙ୍କାଳୀ ଅଷ୍ଟତିରିଶ ସଂଖ୍ୟା ପରକାଶ ॥
କୁରୁକୁଲ୍ଲ ବାଳୀ ଅବ୍ଧ ଦୋହଣୀ ଦ୍ୱାରଣୀ ।
ଅଣତ୍ରୁଳିଶରୁ ବୟାଳିଶ ଯାଏ ଗଣି ॥
ସୋହାଣୀ ତେୟାଳିଶ ବରାହୀ ଚୌରାଳିଶ ।
ଯାଙ୍କ ନାମ ଗୁଣିଲେ ନ ଯାଇ ଯମପାଶ ॥
କୋଟଲାଇ ଅନ୍ନପୂର୍ଣ୍ଣା କୋଟମୁଖୀ ପୁଣି ।
ଏମାନଙ୍କର ମହିମା କେହୁ ପାରେ ଜାଣି ॥
ସମୃଦ୍ଧା ଉଛୁଁକା ସମାଶୀଳା ମୂଡ଼ା ଜାଣ ।
ଦକ୍ଷିଣାଇ ଗୋପାଳୀ ମୋହିନୀ ପଞ୍ଚାବନ ॥
କାମସେଣୀ ଛପନ କପାଳୀ ସତାବନ ।
ତ୍ରୈଲୋକ୍ୟବ୍ୟାପିନୀ ଦେବୀ ଅଟେ ଅଠାବନ ॥
ତ୍ରିଲୋଚନା ନମାଇ ଯେ ଅଣଷାଠି ଷାଠି ।
ଡାକେଶ୍ୱରୀ କମଳାଇ ଏକଷଠି ବାଷଠି ॥
ଉଲ୍ଲସନ୍ତୀ ତେଷଠି ବାମାୟୁଣୀ ଯେଣ ।
ଜାଣ ହେ ନୃପ ଏମାନେ ଚୌଷଠି ଯୋଗିନୀ ॥
ଭସୁଙ୍କର ରୂପ ଦେଖି ବଳକାଳ ଅସି ।
ଲହ ଲହ ଜିହ୍ୱା କଲେ ଅସୁରଙ୍କୁ ଦେଖି ॥
ଏକେ ଦେବୀମାନଙ୍କର ଅଙ୍ଗ ବଜ୍ରସେଣ୍ଡା ।
ଅଙ୍ଗେ ପଡ଼ି ଶସ୍ତ୍ରମାନେ ହେଉଛନ୍ତି ଚୂନା ॥
କଳକ୍ତା ବୃଷ୍ଟି ଜାଣିଣ ବନ୍ଧୁ ଦୈତ୍ୟ କାଣ୍ଡ ।
ସେ କାଣ୍ଡକୁ ଦେବୀମାନେ ପାଡ଼ଅଛନ୍ତି ଭୁଣ୍ଡ ॥
ମହାଅନଳ ଜଳଇ ସର୍ବେ ତାଙ୍କର ।
ଜଳ ଧୂଳ ହୋଇଯାନ୍ତି ବଳବାର ଶର ॥
ମହାନଳେ ପଡ଼ନ୍ତର ସର୍ବେ ହୋଇନ୍ତି ଦହ ।
ସମରେ ଜଳ ଦନଜେ ନ ପାରନ୍ତି ରହି ॥

ସୁରୁଜ ସେନ ଗ୍ରାସେ ପ୍ରହାର କରନ୍ତି ।
ଅନ୍ତରୀକ୍ଷେ ଚଢ଼ିଲେ ଦେବୀମାନେ ଯେଣ ଯାନ୍ତି ॥
ଧାଡ଼ିକାରେ ବସନ୍ତି ସେ ଅସୁରଙ୍କ ମୁଣ୍ଡ ।
ମୋଡ଼ ତୋଳ ଅନ୍ତରୀକ୍ଷେ ଗିଳନ୍ତି ସେ ପିଣ୍ଡ ॥
କେବଣ ରାକ୍ଷସଙ୍କର ଧରନ୍ତି ମେଖଳ ।
ବିଦାରି ଖାଇ ଯାଆନ୍ତି କାହା ହୃଦସ୍ଥଳ ॥
ଧାଇଁ ଯାଇଁ ଅସୁରଙ୍କୁ ଧରନ୍ତି ଦନ୍ତେ ।
ଅସ୍ଥି ଗିଳି ନାଚନ୍ତି ସେ ଖେମଟା ନାଟଶଣ୍ଡି ॥
ମୋହିନୀ ପଣରେ ହସି ହକାରନ୍ତି କେତେ ।
ମାୟା ଲଗାଇ ଦଇତ୍ୟମାନଙ୍କୁ ଖାଅନ୍ତି ॥
ଶୁଣ ହେ ପରୀକ୍ଷ ରାଜା ଦୁଃସହ କପଟ ।
ବଡ଼ାଳାକ୍ଷ ଭଗବତୀ ଦୁହେଁ ହେଲେ ଭେଟ ॥
ଯଉବନ ବନ୍ତି ଅଭିନବ ରୂପ ଯୁବା ।
ବଡ଼ାଳାକ୍ଷ ଦେଖି କରି କାମେ ହେଲା ଲୋଭା ॥
ଧନୁଶର ପକାଇଣ ଦନ୍ତେ ଧରି ତୃଣ ।
ବୋଲେ ଅରେ ପ୍ରାଣବନ୍ଧୁ ରଖ ମୋର ପ୍ରାଣ ॥
ବୁଡ଼ିଲି କାମସାଗରେ ତବ ରୂପ ଦେଖି ।
କୋଳକରି ତରୁଣି ରେ ରଖ ଚନ୍ଦ୍ରମୁଖି ॥
ଚରଣେ ଶିର ଲଗାଇ ହୋଇଲା କାକୁସ୍ତ ।
ମାଧବୀ ଲଟିକା ଯାଏ ଯିବ ଏ ସଙ୍ଗାତ ॥
ଶୁଣି ଦୈତ୍ୟ ବାଣୀ ଜାଣି ହସି ଗୋସାମଣୀ ।
ଅପାଙ୍ଗେ ଗୁହିଁଲେ ଦୈତ୍ୟ ହୋଇଗଲା କଣି ॥
ଶୁଣ ହେ ପରୀକ୍ଷ ରାଜା ଭରସା ପାଇଲା ।
ଆସ ଆସ ସଖି ବୋଲି ଶ୍ରୀହସ୍ତ ଧଇଲା ॥
ପତି ପତ୍ନୀପ୍ରାୟେ ହୋଇ ହସ୍ତ ଧରାଧରି ।
ସଂଗ୍ରାମ ଉପେକ୍ଷି ଦୁହେଁ ଗଲେ ଦୂରସରି ॥
ଲକ୍ଷ୍ମୀଭଦ୍ରା ନଦୀ ତଟେ ମାଧବୀର ଲତା ।
ତହିଁ ମଧ୍ୟେ ପଶି ହେଲେ ହାସ ରସ କଥା ॥
ବଡ଼ାଳାକ୍ଷ ହୋଇଅଛି ମଦନରେ ଭୋଳ ।
ହୁଳହୁଳ ଦେଇ ଭଗବତୀ କଲେ କୋଳ ॥
ଅଙ୍କୋଳି ମୁଖେ ଚୁମ୍ବନ ଦେଲା ପ୍ରାୟେ କରି ।
ବକ୍ଷସ୍ଥଳ ଗାଢ଼େ ଧରି ନଖରେ ବିଦାରି ॥
ବେଣ୍ଟ ପାଟ ସ୍ୱପନ୍ତେଣ ହେଲା ବେଢ଼ ଫାଳ ।
ପିଣ୍ଡରୁ ପ୍ରାଣ ଛାଡ଼ିଣ ଗଲା ଅନ୍ତରାଳ ॥
ଗିଳିଦେଲେ ଭଗବତୀ ଦଇତଙ୍କୁ ବେଗି ।
ସଂଗ୍ରାମ ନକରି ଜୀବନ ସେ ପରିତ୍ୟାଗି ॥

ବଜ୍ରାକ୍ଷ ଜଣିଥିଲା ବର୍ଣ୍ଣେ ଯମଦଣ୍ଡ ।
ଶୃଙ୍ଗାର ଚୋଟରେ ସେହୁ ହେଲା ଖଣ୍ଡ ଖଣ୍ଡ ॥
ଅନେକ ଉତ୍ପିଡ ଯେ ହୋଇଲା ଅବନୀ ।
ବଜ୍ରାକ୍ଷ ପଡଲାକ ଶୁଭେ ଧନ୍ୟ ଧନ୍ୟ ॥
ରକ୍ତବୀର୍ଯ୍ୟ ବୀରଘଣ୍ଟ ଏ ଦୁହେଁ ନ ଜାଣି ।
ବଜ୍ରାକ୍ଷ ପଡ଼ିବାର ବାରତା ନ ଶୁଣି ॥
ବଜ୍ରାକ୍ଷ ମର ଭଗବତୀ କଲେ ଜୟେ ।
ବାଞ୍ଛାସିଦ୍ଧ ହେଲା ବୋଲି କହ ଦେବତାଏ ॥
ମହାବଳୀ ଦୈତ୍ୟବଧ କଲେ ଯେ କପଟେ ।
ବାହୁଡ ମେଳଲେ ଯାଇଁ ଭଗବତୀ ଘାଟେ ॥
ଶୁଣ ରାଏ ପ୍ରାକର୍ମେ ଯେ ବଳଷ୍ଟ ହୁଅନ୍ତି ।
କାମରସ ଦେଖାଇଣ ମୋହ ସେ କରନ୍ତି ॥
ବସ୍ତାପେ ନେଇଣ ଖାନ୍ତି ଯେ ଦାନବ ବୀର ।
ମୋହଜାପାଶେ ସେ ମୋହ ପାରନ୍ତି ସଂସାର ॥
ଏମନ୍ତେ ମାରୁ ନ ସରେ ବହୁତ ଅସୁର ।
ଆନନ୍ଦରେ କୁତୂହଳେ କରନ୍ତି ଅହାର ॥
ହସ୍ତେ ଜଳପାଶି ନାଗପାଶି ମାନ ଘେନ ।
ଦଇତଙ୍କୁ ବାନ୍ଧନ୍ତି ସେ କୁରଙ୍ଗିନୟନୀ
କଣ୍ଠେ କର ଦେଇକରି ବିଦାରନ୍ତି ବୁକୁ ।
ସଂଗ୍ରାମରେ ଭୟନାହିଁ ସହସ୍ରମାନଙ୍କୁ ॥
ତେତେଣେ କ୍ଷେପନ୍ତି ବାସେଳୀ ଦେବୀ ବଜ୍ରତୁଣ୍ଡୀ ।
ଅନେକ ସଇନୀ ଶସ୍ତ୍ରେ କଟିଲେ ଖଣ୍ଡିଖଣ୍ଡି ॥
ପିଟନ୍ତି ଶହସ୍ରମାନ ହୋଇ ଉର୍ଦ୍ଧ୍ୱବାହୁ ।
ସବତାଙ୍କୁ ଦେଖି ଯେସନ୍ତେ ଘୋଟିଯାଏ ରାହୁ ॥
ମାୟା ମୋହିନୀରୂପୀ ସେ ଅଭୟା କାମାକ୍ଷୀ ।
ଶିର ଛିଣ୍ଡାଇ କରିଣ ଅସୁରଙ୍କୁ ଭକ୍ଷି ॥
ରୁଧିରରେ ହିପନ୍ତି ଯେ ଧାଶନ୍ତି ବାସେଳୀ ।
ବକ୍ଷରେ ଲମ୍ବାନ୍ତି ନେଇ ଦୈତ୍ୟ ମୁଣ୍ଡମାଳୀ ॥
କାଳଦଣ୍ଡ ନାମେ ନୈଷାସୁର ସେନାପତି ।
ଦେବଦାନବରେ ତାର ନ ଥାଏ ଯେ ଜିତ ॥
ନାଗଲୋକ ଜଣି ସେହି ପାତାଳାଧିପତି ।
ବାସେଳୀର ତୁଲେ ରଣ କଲା ଅପ୍ରମିତ ॥
ବଜ୍ରର ସମାନ ସେହୁ ଘେନି ପାଞ୍ଚବାଣ ।
ଓଟାର ମାଇଲା ନେଇ ବାସେଳୀ ସରେଣ ॥
ପାଞ୍ଚବାଣକୁ ସେ ଦେବୀ ପାତ ପଦ୍ମାଙ୍ଗୁଳ ।
ସେ ପାଞ୍ଚ ନାସ୍ତିତ ପଡ ହୋଇଲାକ ଧୂଳ ॥

ଧାଇଁଣ ଦାନବ ଦଶବାଣ ଦେଲା ପେଷି ।
ଅନଳ ନୟନେ ସ୍ତହୁଁ ହୋଇଲା ସେ ଧ୍ୱଂସି ॥
କୋପେ ଅଠରଷ୍ଟା ବାଣ ପେଷେ କାଳଦଣ୍ଡ ।
ଗୁଣଘୋଷ ଶବଦରେ କମ୍ପିଲା ବ୍ରହ୍ମାଣ୍ଡ ॥
ପୁଣି ପେଷିଲାକ କୋପେ ଶତେକ ନାରାଜ ।
ବାସେଳୀ ଉପରେ ନେଇ ଦୁର୍ଦ୍ଦାନ୍ତ ଦନୁଜ ॥
ହୁଙ୍କାରକରି ବାସେଳୀ ଗୃହେଁ ନେଲେ ମଜ ।
ଧନୁଦ୍ରୋଣ ଗଦା ଖଡ୍ଗ ସରୁଗଲା ଜଳ ॥
ଶୂନ୍ୟହସ୍ତ ହୋଇକରି ଦୈତ୍ୟବୀର ଉଠି ।
ବାସେଳୀ ବକ୍ଷସ୍ଥଳରେ ମାରେ ବଜ୍ର ମୁଷ୍ଟି ॥
ଯେସନେକେ ଗଗନରୁ ପଡ଼େ ନରଘାତ ।
ଆକାଶେ କମ୍ପିଲେ ସର୍ବ ଦେବତା ଚଧାତ ॥
ପର୍ବତ ଚୂର ହୁଅନ୍ତି ମୁଷ୍ଟିଘାତେ ଯାର ।
ବାସେଳୀର ବକ୍ଷସ୍ଥଳ ତହୁଁ ଗୁରୁତର ॥
ପୁଷ୍ପ ପରାୟୁ ମଣିଲେ ସେ ବଜ୍ର ମୁଷ୍ଟି ।
କାଳଦଣ୍ଡ ଭୁଜରୁ ଯେ ହୋଏ ରକ୍ତବୃଷ୍ଟି ॥
ମୋହେଣ ପଡ଼ିଗଲା ସେ ରକ୍ଷବୀରମଣି ।
ଖଡ୍ଗ ବୁଲାଇ ପିଟିଲେ ନେଇ ଗୋସାମଣୀ ॥
ଶୁଣ ରାଜେ କାଳଦଣ୍ଡ ଦଇତ ହୃଦର ।
ପଡ଼ ଝଡଗଲା ବାସେଳୀର ଅସବର ॥
ଅସିପଦ ଭାଜିଗଲା ଯହୁଁ ତାହାଙ୍କର ।
ବାହୁଡ ଘେନିଲେ ବଜ୍ରକର୍ଣ୍ଣି ଯେ କଟାର ॥
ଦଇତର ଉପରକୁ କୋପେ ସେ ମାଇଲେ ।
ବଜ୍ରେ କର୍ଣ୍ଣିକଟାର ଯେ ପଡ ଚୂର୍ଣ୍ଣହେଲେ ॥
ବାସେଳୀ ତା ତୁଲେ ମାଲଯୁଦ୍ଧ ଆରମ୍ଭିଲେ ।
ହୃଦସ୍ଥଳେ ଅକ୍ଷୋଣି ମାଡଣ ବସିଲେ ॥
ଦଶନଖ ଘେନି ତାର ବିଦାରିଲେ ବୁକୁ ।
ତଥାପି କଛ ନୋହିଲା ପାପି ଅସୁରକୁ ॥
ମୁଣ୍ଡ ମୋଡ଼ନ୍ତେ ତାହାର ନ ଛିଡ଼ଇ ଶିର ।
ଅସ୍ତ୍ରଶସ୍ତ୍ର ମାରନ୍ତେଣ ହେଲେ ସର୍ବଚୂର ॥
ଅନେକ ଉପାୟକଲେ ଦେବୀ ରଣରଙ୍ଗେ ।
ଦୈତ୍ୟ ପ୍ରାଣ ନ ତୁଟିଲା କଉଣସି ବାଗେ ॥
ଭାଳଇ ବାସେଳୀ ଗୁଡଦେବ କେହ୍ନେ ଏହା ।
ବଜ୍ରରେ ନିର୍ମିତ ଏହି ଅସୁରର କାୟା ॥
ବାସେଳୀଙ୍କ ଶାନ୍ତ ଯହୁଁ ନୋହିଲାକ ତମ ।
ଆକାଶେ ଥାଇ ଭାଳଇ ଦେବ କାଳଯମ ॥

ବୋଲଇ ମାଗୋ ଏହାର ନାମ କାଳଦଣ୍ଡ ।
ଅଗ୍ନିରେ ନହଇ ଦଗ୍ଧ ଏହାରତ ପିଣ୍ଡ ॥
ଯଦ୍ୟପି ଏହାକୁ ତୁହି ଛାଡ଼ିବୁ ବାସେଲୀ ।
ସମସ୍ତ ଦେବତାଙ୍କର ସାରିବ ଏ ଶିଖି ॥
ଶୁଣ ହୋ ପରୀକ୍ଷ ରାଜା କୃତାନ୍ତକ ବାଣୀ ।
ଶୁଣି ଅକୂଳ ବିଶେଷ ହେଲେ ଗୋସାମଣୀ ॥
ମୋଡ଼ ଶିର ଉପାଡ଼ଣ ପକାଇଲେ ତଳେ ।
ମାଡ଼ିବସିଲେ ସେ କାଳଦଣ୍ଡ ବକ୍ଷସ୍ଥଳେ ॥
ଶୁଣ ଅହେ ରାଜେନ୍ଦ୍ର କାଳଦଣ୍ଡ କଥା ଭଲା ।
ବାସେଲୀ ଦେବତାଙ୍କର ବାହନ ହୋଇଲା ॥
ବିଜେକଲେ କାତ୍ୟାୟିନୀ ଅସୁର ପିଠିରେ ।
ଗଗନେ ଘୋଟିଲେ ପୁଣି ପକ୍ଷିଣ ସମରେ ॥
ଦେବେ ସେ ଦୈତ୍ୟକୁ ମାଡ଼ିବସିବା ଦେଖିଲେ ।
ବାସେଲୀ ଦେବୀଙ୍କ ବହୁମତେ ସ୍ତୁତିକଲେ ॥
ଜୟ ତୁ ଅଭୟା ମାଗୋ ଅଟ୍ଟ ନଗକୁଳୀ ।
ରିପୁବାହିନୀ କାମିନୀ ପ୍ରସନ୍ନ କପାଳ ॥
ଲୋହିତବର୍ଣ୍ଣି ଶରୀର ରକ୍ତମୁଖ ଘୋଟି ।
ଶଙ୍ଖବନ୍ଦ୍ୟା ବଙ୍କତୁଣ୍ଡ୍ରୀ କାଳାନଳ ଦୃଷ୍ଟି ॥
ବିକଟଦନ୍ତ ଉତ୍କଟ ସଂକଟନାଶିନୀ ।
ନରବାହିନୀ ମାତା ଗୋ ବିପତ୍ତିନାଶିନୀ ॥
ଲହଲହ ଜିହ୍ୱା ମାଗୋ ଶୋଭା ମୁଖ ଦେଶେ ।
ଚରଣେ ମହୀରେ ଆଉ ଚରଣ ଆକାଶେ ॥
ରକତବଦନ ମାଗୋ ରକ୍ତ ବସ୍ତ୍ର ପିନ୍ଧୁ ।
ଯୁଗଅନ୍ତ କାଳରେ ଗୋ କେଶତ ନ ବାନ୍ଧୁ ॥
ତ୍ରୈଲୋକ୍ୟ ଘୋଟିପାରୁ ତୁ ବିକଟାଳ ନେତ୍ରେ ।
କାର୍ମିକୁହିଁ ଦହିପାରୁ ତୁ କଟାକ୍ଷମାତ୍ରେ ॥
ପରମଗତି ଦାୟିନୀ ଅଭୟା ଅପର୍ଣ୍ଣା ।
ଦୁରନ୍ତକ ବଳକୁ ତୁ ନାଗପାଶ ସିନା ॥
ପ୍ରଳୟ ଜଠର ଜିହ୍ୱା ନୃଶିର କପାଳ ।
ଆଭରଣ ଗଳେ ତୋର ମନ୍ଦାରର ମାଳ ॥
ବିପ୍ର ଚଣ୍ଡାଳ ନ ଜାଣୁ କାମନା ଅର୍ଥରେ ।
ଯେ ପୂଜଇ ବରଦାୟୀ ହେଉ ତାହାଠାରେ ॥
ମହିଷି ମେଷ ଛାଗଳ ବରାହର ମାଂସ ।
ଭୋଜନରେ ଉଲ୍ଲସିତ ହୁଏ ତୋ ମାନସ ॥
ରୁଧିରପାୟୀ ରକତକୁସୁମ ମଣ୍ଡନୀ ।
ସିନ୍ଦୁର ଛଟା ଶୋଭିନୀ ଅପଦଖଣ୍ଡିନୀ ॥
ମାଗୋ ମନବଚନରେ କେତେ ମହା ସ୍ତବ ।
ସକଳଜନତାରିଣୀ ତୁ ସେ ସିଦ୍ଧଦେବୀ ॥
ଶ୍ରୀ ବାସେଲୀ ନାମ ଘୋଷି ଶିର ପରେ ଧରୁ ।
କହେ ଶାରଳାଦାସ ଯେ ପୁରାଣ ବିସ୍ତର ॥
କାଳଦଣ୍ଡର ବଧକୁ ଶୁଣନ୍ତି ଯେ ଜନ ।
ଯମଦଣ୍ଡ ବଞ୍ଚିତ ସେ ହୁଅନ୍ତି ନଷ୍ଟେ ଜାଣ ॥
ଯାହାଭୟେ କୃତାନ୍ତକ ଛାଡ଼େ ସଞ୍ଜୀବନୀ ।
ଯା ଭୟେ କାଳ ବିକାଳ ପଳାନ୍ତିଟି ପୁଣି ॥
ସତ୍ୟଯୁଗେ କାଳଦଣ୍ଡ ବହୁଦିନ ନେଲା ।
ଲକ୍ଷେ ଛପନ ସହସ୍ର ବରଷ ବଞ୍ଚିଲା ॥
ଏତେଦିନ ଅତଯାତ କଲା ଏ ବ୍ରହ୍ମାଣ୍ଡ ।
ଆଜଯାଏ ତାକୁତ ନ ଥିଲା ଯମଦଣ୍ଡ ॥
କାଳଦଣ୍ଡ ପଡ଼ନ୍ତେଣ ତୋଷ ଜନ୍ତୁରାଜା ।
ବାସେଲୀ ଦେବୀ ଚରଣେ କଲା ଦ୍ରବ୍ୟପୂଜା ॥
ମମ ଅପଦଖଣ୍ଡନକାରୀ ମହାଦେବୀ ।
ଏହାମୁଖୁ ଯେ ଶୁଣିବ ତା ପାଶେ ନ ଯିବ ॥
ସେ ଲୋକକୁ ନ ଛୁଇଁବେ ମୋର କାଳଲୋକେ ।
ଜରାବ୍ୟାଧି ନ ପଡ଼ିବ ତାଙ୍କ କେବେ ଶୋକେ ॥
ବାସେଲୀ ଦେବୀଙ୍କି ଏହା କହେ ନାଶକର ।
ଗୃହିଯୁଗେ ସତ୍ୟହୋଇ ରହିବ ସଂସାର ॥
କାଳଦଣ୍ଡର ବଧକୁ ଯେ ନରେ ଶୁଣନ୍ତି ।
ଯମଦଣ୍ଡେ ଦଣ୍ଡୀନୋହି ନର୍କେ ନ ପଡ଼ନ୍ତି ॥
ମୁଁ ଲୟେକର ଭ୍ରବଇ ବାସେଲୀଙ୍କ ପାୟେ ।
ଶ୍ରୀ ବାସେଲୀ ପ୍ରସାଦେ ମୋ ଦୁଃଖଯାଉ କ୍ଷୟେ ॥
ମନବଞ୍ଛାଦ ଆପଦ କ୍ଲେଶମାନ ଖଣ୍ଡୁ ।
ଅନାୟାସେ ଯେ ପୂଜଇ ତାର ପୁର ମଣ୍ଡୁ ॥
ଶ୍ରୀ ବାସେଳୀ ଚରଣରେ ଶରଣ ମୋ ନିତ୍ୟେ ।
ଶୂଦ୍ରମୁନି ଶାରଳା ଯେ ଭଣେ ଅବିରତେ ॥
ଶୁଣ ହୋ ପରୀକ୍ଷ କାଳଦଣ୍ଡ ଯୁଦ୍ଧକଥା ।
ଶୁଣ ସାବଧାନେ ସେହି ସଂଗ୍ରାମ ବାରତା ॥
ଅସଂଖ୍ୟ ସମର ସେହୁ କଳନା ନ ଗଲା ।
କାଳଦଣ୍ଡ ପଡ଼ିବାର କେହି ନ ଜାଣିଲା ॥
ଅସୁରଙ୍କ ବଳ ଯହୁଁ ମାଡ଼ଣ ପଡ଼ିଲେ ।
ଉଗ୍ରତାସ ଯୁଦ୍ଧ କଲେ କାନ୍ତମାଳା ଭୁଲେ ॥
କାନ୍ତମାଳା ଭୁଲେ ସୈନ୍ୟ ଅଛି ପାଞ୍ଚଲକ୍ଷ ।
ବେଢ଼ିଲେ ଦେବୀଙ୍କି ଯାଇଁ ସମ୍ମୁଖେ ପ୍ରତ୍ୟକ୍ଷ ॥

ନିକ୍ଷେପୁର କରଣ ସେ ଅଛନ୍ତି ସେ ବେଢ଼ି ।
ଆକାଶ ହଲ୍ଲିଲେ ଅସୁରଙ୍କ ଘୋର ରଡ ॥
ମହାଘୋର ନାଦ ଶୁଣି ସେହୁ ଉଗ୍ରତାରା ।
ବୋଇଲେ ପୃଥ୍ୱୀକି କାନ୍ତିମାଳା ମହାଭୟ ॥
ରୁଦ୍ରଦେବ ସେଦିନ ସେ ପାଇଅଛି ବର ।
ସମରରେ ମୃତ୍ୟୁ ନୋହେ କେବେହେଁ ତାହାର ॥
ଅଟଅଟ୍ଟ ସ୍ୱନର ସେ ପ୍ରକାଶିଲେ କାୟା ।
ପକାଇଲେ କାମଜାଲେ ବିଦ୍ୟୁତଛଟାୟା ॥
ଉଗ୍ରତାରା ଦେବୀ ରୂପ କାନ୍ତିମାଳା ଚାହିଁ ।
କାମେ ଅସ୍ୱାସ୍ଥ୍ୟ ହୋଇ ପଡ଼ିଲେକ ମହୀ ॥
ଦଣ୍ଡକେ ଚେତନା ପାଇ ସୁସ୍ଥହୋଇ ବସି ।
ଅରେ ପ୍ରାଣସଖି ବୋଲି ବଚନ ପ୍ରକାଶି ॥
ତବ ମୁଖ ଚାହିଁ ମୋହ ହେଲି ଅରେ ବାମା ।
ମଦନ ଶାଙ୍ଗରୁ ମୋତେ ପାରିକର ରାମା ॥
ମୁଁ ତୋ ପଦ୍ମପାଦ ତଳେ ମସ୍ତକ ଲଗାଇ ।
ଦଶନଖ ମୁଖେ ଭର ଶରଣ ପଶଇ ॥
ଉଗ୍ରତାରା ବୋଇଲେ ମୁଁ ବ୍ରତକଲି ପୂର୍ବେ ।
ମମ ମନ କାମନା ଯେ ପୂରାଇବ ଜବେ ।
ବ୍ରତ ପୂରାଇଲେ ମୁହିଁ ତାହାର ଭାବିନୀ ।
ହୋଇବ ସ୍ନେହ କରିବ ତାକୁ ସଙ୍ଗେ ଘେନି ॥
କାନ୍ତିମାଳା ବୋଲେ ସଖି ବ୍ରତ ତୋର କହ ।
କାମନା ପୂରାଇବାକୁ ମୁଁ ହେବ ଅବହ ॥
ବ୍ରତବିଧାନ ସଖି ବେଗେ ମୋତେ କହ ।
ଏହିକ୍ଷଣି ଫେଡ଼ିବ ମୁଁ ତୋହର ସନ୍ଦେହ ॥
ଉଗ୍ରତାରା ବୋଲେ ମୋତେ କାନ୍ଧରେ ବସାଇ ।
ଲଙ୍କାଗଡ଼ ମନ୍ଦରକୁ ଯେ ପଶଇ ନେଇ ॥
ପୁରୁଷ ବୋଲିଣ ମନେ ନ କରିବ ଲଜ୍ଜା ।
ତେବେ ସେ ତାହାର ମୁହିଁ ହୋଇବ ଭାରିଯା ॥
କାନ୍ତିମାଳା ବୋଇଲେକ ମୋର ସନମତ ।
ଆସ ଆସ ମୋ କାନ୍ଧରେ ବସ ଗୋ ସଙ୍ଗାତ ॥
ଉଗ୍ରତାରା ବୋଇଲେକ ରବି ଅସ୍ତହେଉ ।
ଯେମନ୍ତ ଏକଥା ନ ଦେଖିବେ କେହି ଆଉ ॥
ଗୁହ୍ୟ ପଟଳ କହନ୍ତେ ରବିଅସ୍ତ ହେଲେ ।
କାନ୍ତିମାଳା କାନ୍ଧେ ଉଗ୍ରତାରା ବିଜେକଲେ ॥
ବିନ୍ଧ୍ୟଗିରି ପର୍ବତ କାନନ ଖେପିଲା ।
ଲକ୍ଷ୍ମୀଭଦ୍ରା ନଦୀତୀରେ ଯାଇଁ ପ୍ରବେଶିଲା ॥

ଅସୁର ଉଗ୍ରତାରାକୁ ଘେନି କଣ୍ଠ ତଟେ ।
ଯାଉଅଛି ଗହନ ବିପିନର ବାଟେ ॥
ଅନେକ କଉତୁକେ ସେ ହରଷ ସାନନ୍ଦେ ।
ଧୂଳିବତୀ ପାଟଣାକୁ ଦୁହେଁ ଗଲେ ହାଦେ ॥
ଉଗ୍ରତାରା ବୋଲେ ବସି ନ ପାରେ ହେ ବୀର ।
କ୍ଷଣେ ଠିଆ ହୋଇବ କି ତୋହର କାନ୍ଧର ॥
ଦୈତ୍ୟବୋଲେ ଯେବେକଷ୍ଟ ନ ସହେ ତୋ ଦେହ
ଶିର ଉପରେ ମୋହର ଏବେ ଠିଆ ହୁଅ ॥
ଆହେ ପଣ୍ଡିତେ ବିଚାର କର ଯେ ମାନସ ।
ପୁରୁଷ ବିବଶ ହେଲେ ନ କରଇ ବସ ॥
ଯେତେ ଥିଲା ପ୍ରାକର୍ମ ତା ବୁଡ଼େ କାମଜଳେ ।
ଅନଳ ପାଶରେ ଜଉ ଯେସନ ତରଳେ ॥
କାନ୍ତିମାଳା ହତବୀର୍ଯ୍ୟ କାମର ଲୁବଧେ ।
ହୁଁକାର ମାତ୍ର ବସିଲେ ଦେବୀ ଦୃଢ଼େ କନ୍ଧେ ॥
ଆକାଶ ମାର୍ଗରେ ଉଗ୍ରତାରା ତେଜ ବ୍ୟାପି ।
ଘୋର ରବ କରି କାନ୍ତିମାଳାକୁ ସେ ଚାପି ॥
ମହା ବଳିଷ୍ଠା ସେ ଯେ ତେଜ ଅନର୍ଗଳା ।
ଚାପନ୍ତେ ପାତାଳଗାମୀ ହେଲା କାନ୍ତିମାଳା ॥
ଦୈତ୍ୟର ନିଧନ ଦେଖି ଦେବେ ମହାତୁଷ୍ଟି ।
ଉଗ୍ରତାରା ଶିରେ କଲେ ପୁଷ୍ପ ନେଇ ବୃଷ୍ଟି ॥
ତେତିଶ କୋଟି ଦେବତା ବିନୟରେ ସେବି ।
ଦେବତାଙ୍କ କ୍ଲେଶ ମାଗୋ ଖଣ୍ଡିଲୁ ତୁ ଦେବୀ ॥
ମହାଘୋର ରଣ ଦୈତ୍ୟ କରନ୍ତି ବହୁତ ।
କାନ୍ତିମାଳା ପଡିବା ନ ଜାଣନ୍ତି କେହୁତ ॥
ମଧୁଦୈତ୍ୟ ବୀରଘଣ୍ଟ ବୀର ବଳବାନ ।
ଧାଇଁ ଖରହୋଇ ମଧୁ କୈଟଭ ଦନୁଜ ॥
ପାଞ୍ଚପଦ୍ମ ସଇନ୍ୟ ସେ ତାହାଙ୍କର ହୋଇ ।
ସମର ଆରମ୍ଭ କଲେ ଘୋରରବ ଦେଇ ॥
ସମରେ ଶକତା ସେ ଯେ ଉଗ୍ର ବୀରମଣି ।
ଯାନ୍ତେ ଛମୁରେଣ ଭେଟ ହେଲେ ନାରାୟଣୀ ॥
କରେ ତୀକ୍ଷ୍ଣଶର ଘେନି ସେ ଅସୁରବୀର ।
ହାଣିଲା ନାରାଚମାନ ନାରାୟଣୀ ପର ॥
କୋପଭରେ ପ୍ରତାପର ଦହନ ଗୋସାମଣୀ ।
ମଧୁଦୈତ୍ୟ ଶରମାନ ପକାଇଲେ ହାଣି ॥
ପୁନରପି କୋପ କରି ଧାଇଁଲା ଦନୁଜ ।
ଅନର୍ଗଳ ଦାନବ ସେ ତାର ମହାତେଜ ॥

ମଧୁ କଇଟଭ ତୁଲେ ପାଞ୍ଚପଦ୍ମ ସୈନ୍ୟ ।
ନାରାୟଣୀ ତୁଲରେ ଯେ ଯୁଦ୍ଧ ଅନ୍ୟୋଅନ୍ୟ ।
ଗୋଡ଼ାଇ ନେଇ ଜଙ୍ଘାରେ ପିଟିଲା ଦଇତ ।
ସ୍ୱର୍ଗେ ମହାଭୟ କଲେ ସକଳ ଦୈବତ ॥
ଦେଖି ନାରାୟଣୀ ମନେ ଗରୁକୋପ କଲେ ।
ମଧୁକଇଟଭ ଉପରେ ଗଦା ପ୍ରହାରିଲେ ॥
ପଡ଼ିଲା ଦଇତ ପିଣ୍ଡୁଁ ପ୍ରାଣ ଗଲା ଛୁଟି ।
ନବଦ୍ୱୀପ କମ୍ପିଲା ଯେ ଛୁଟି ଘୋରରଡ଼ି ॥
ଅସୁର ସଇନ୍ୟ ଦେଖି କଲେ ନାରଖାର ।
ମଧୁକୈଟଭ ମରଣ ହେଲା ଅଗୋଚର ॥
ମହିଷା ଅଙ୍କରେ ଅସିଥିଲେ ଷଣ୍ଡ ସେନା ।
ଶୂରସେନା ପଡ଼ିଲେ ଯେ ହୋଇ ବଡ଼ ଜେନା ॥
ବୀରଘଣ୍ଟ ରକ୍ତବୀଜ ଅଛନ୍ତି ଏ ବେନି ।
ନବମର୍ଦ୍ଦିତ ତାଙ୍କର ଅସୁର ସଇନି ॥
ଦେବଙ୍କୁ ଦୁର୍ଜ୍ଜୟ ବୀରଘଣ୍ଟ ବୀରପଣ ।
ଇନ୍ଦ୍ର ଚନ୍ଦ୍ର ରୁଦ୍ର କାକୁ ନାହିଁ ଭୟ ମନ ॥
ପାଞ୍ଚ ମର୍ଦ୍ଦିତ ଯୋଦ୍ଧା ଯେ ଘେନି ରକ୍ତବୀଜ ।
ନାରାୟଣୀ ଅଗ୍ରେ ଯାଇଁ ମିଳିଲା ଦନୁଜ ॥
ଧରି ଲୁହା ଧନୁ କୁନ୍ତ ମୁଷଳ ଆୟୁଧ ।
ମତ୍ତନାଗ ପ୍ରାୟେ ହୋଇ ଅବୋରିଲା ଯୁଦ୍ଧ ॥
ଯେସନେକ ଗିରିବରେ ହାବୋଡ଼ଇ ଜଳ ।
ତେସନ୍ତେ ନାରାୟଣୀ ଅଗେ ରହିଲେ ସେ ବଳ ॥
ତିନିକୋଟି ବଳ ସେନ୍ତ ସର୍ବେ ଧନୁର୍ଦ୍ଧର ।
ନାରାଚ ବର୍ଷନ୍ତି ଯେସନ୍ତେ କ୍ଷେପେ ବୈଶ୍ୱାନର ॥
ଶୁଣ ହୋ ପରୀକ୍ଷରାଜା ରକ୍ତବୀଜ କାୟ ।
ଦିଶଇ ରକ୍ତ ଡାଳିମ୍ବ କୁସୁମ ପରାୟ ॥
ରଙ୍ଗବସ୍ତ୍ର ପିନ୍ଧିଅଛି ରଙ୍ଗବସ୍ତ୍ର ଓଢ଼ି ।
ଗଳାରେ ଲମ୍ବାଏ ମାଳା ମନ୍ଦାରର କଢ଼ି ॥
ବେନିକରରେ ମନ୍ଦାର କୁସୁମ ତା ଶୋହେ ।
ଅଟେହିଁ ଉତ୍କୃଷ୍ଟ ତେଜ ବାଳଅର୍କ ପ୍ରାୟେ ॥
ସୂର୍ଯ୍ୟମଣ୍ଡଳ ସମାନ ରଥେକ ଚଢ଼ିଛି ।
ବାଛି ବାଛି ଶୂର ଯୋଡ ଶାର୍ଦ୍ଦୂଳ ଯୋଚିଛି ॥
ମହା ବାରୁଣି ସାରଥି ବାହୁଅଛି ରଥ ।
ସମର ଅବୋରିଲା ସେ ଦୈତ୍ୟ ସାମରଥ ॥
ନାରାୟଣୀଙ୍କ ଛାମୁରେ ହୁଙ୍କିଲା ଯାନ ।
ଲକ୍ଷେକେ ଘେନି ଚନ୍ଦ୍ରନଭମ ନନ୍ଦନ ॥
ଦେଖି କଂସାନ୍ତ୍ର ବାହନେ ଚଢ଼ି ନାରାୟଣୀ ।
ବୈଜୟନ୍ତୀ ମାଳା ଉରେ ଶଙ୍ଖଚକ୍ରପାଣି ॥
କରେ ଗାଣ୍ଡୀବ ଯେ କଉମୋଦୀ ଗଦା ଧରି ।
ଚତୁର୍ଭୁଜେ ଆୟୁଧ ହୁଂକାର ସେ କରି ॥
ରକ୍ତବୀଜକୁ ଅପଣେ ଅଗ ଓଗାଳିଲେ ।
ଅପଲେ ବୋଲି ଦେବୀଙ୍କି ଅଣ୍ଟେ ଡ଼ାକଦେଲେ ॥
ଯାଅଁ ଲୋ ବନ୍ଦନ ଗାଅ ଅସୁରଙ୍କ ଥାଟ ।
ନାରାୟଣୀ ଅଣ୍ଟା ପାଇ ଓଗାଳିଲେ ବାଟ ॥
ଗୋପାମଣୀଙ୍କ ଅଙ୍ଗରେ ସର୍ବ ଦେବୀମାନେ ।
ଶ୍ୟେନପକ୍ଷୀ ପ୍ରାୟେ ଘୋଟି ଅଇଲେ ଗଗନେ ॥
କେ ଗଜ ବାହନେ କରେ ଝପରର କାଣ୍ଡ ।
କେ ବ୍ୟାଘ୍ର ବାହନେ ଭଲ୍ଲୁକ କେ ଚଢ଼ିଛନ୍ତି ॥
କେ କରାଳୀ ଘୋରରୂପା କେ ରଣବେତାଳୀ ।
ଅସୁରବଳେ ମିଳିଲେ ହୋଇ ହୁଳହୁଳୀ ॥
ବିଭୁତି ଅଙ୍ଗେ କା ଲିପ୍ତ ଗଳେ ଚର୍ମ୍ମଟି ।
କାହା କଟି କାଛଟି କେ ହୋଇଛି ଲଙ୍ଗଟି ॥
ଝିଟିଲା କର୍ତ୍ତିକଟାରି କରରେ କେ ଧରି ।
ଶ୍ୟେନପକ୍ଷୀ ପ୍ରାୟେ ଦୈତ୍ୟ ବଳଙ୍କୁ ଅବୋରି ॥
କରେଣ ଧନୁ ଧରି ସେ ବିନ୍ଧନ୍ତେ ନାରାଜ ।
ଜଳଯାନ୍ତି ଦୈତ୍ୟେ ଲଗି ନାରାୟଣୀ ତେଜ ॥
ଅସ୍ତ୍ରସଙ୍ଗେ ବୁଲାଇଣ ମାରନ୍ତି ଯେ କୁନ୍ତ ।
କୁଟି କୁଟି ହୋଇ ମରି ଯାଆନ୍ତି ଦଇତ୍ୟ ॥
ଶର ଉପରେ ଶର କେ କୋପରେ ବିନ୍ଧନ୍ତି ।
ଦରଶି ଧରଣି ମୁଣ୍ଡ ମୋଡ଼ଣ ଛିଣ୍ଡାନ୍ତି ॥
ଶୁଣ ହୋ ପରୀକ୍ଷ ରାଜା ନିର୍ଭୟ ଦଇତେ ।
ସପ୍ତେ ସପ୍ତେ ଭିଡ଼ି ଲୁହା ଗଦାକୁ ତୁରିତେ ॥
ଧରି ବେନିକରେ ବେନି ବେନି ମହାକୋପେ ।
ଧାଇଁ ଦେବୀଙ୍କ ଉପରେ ପିଟନ୍ତି ପ୍ରତାପେ ॥
ଗଦାମାନ ପିଟନ୍ତେଣ ପାତି ଦେବୀ ମୁଣ୍ଡ ।
ଶିରେପଡ଼ି ଗଦାମାନ ହୁନ୍ତି ମହିଗୁଣ୍ଡ ॥
ଗଦାଭଙ୍ଗନ୍ତେ ଦଇତେ ହେଲେ ଶୂନ୍ୟ ହାତ ।
ଧାଇଁ ଯାଇଁ ମାହେଶ୍ୱରୀ ପ୍ରହାରିଲେ ମୁଥ ॥
ହାବୋଡ଼ା ହାବୋଡ ହୋଇ ପଡ଼ିଲେ ମହୀରେ ।
ହତଜ୍ଞାନ ପ୍ରାୟ ହୋଇଣ ଶୋଇଲେ ଧରାରେ ॥
ବକ୍ଷସ୍ଥଳରେ ମାଡ଼ିଣ ବସିଲେ ବାରାହୀ ।
ଘୋରରଡ଼ସାତେ ଥରହର ହେଲା ମହୀ ॥

ଶୁଣ୍ଡ ବସ୍ତ୍ରାରଣ ସେହୁ ଉଦେଲେ ଘୋରରଡ ।
ହେଳପାଳ କରଦେଲେ ଧରଣ ଦାମୋଦ ॥
ଅଞ୍ଜଳ ଅଞ୍ଜଳ କର ପିବନ୍ତି ରୁଧିର ।
ଏକ ନଉଡ଼ଇ ନେଇ ଅନେକ ଉପର ॥
କାକୁ ଧର ଦୁଲବନ୍ତି ଅନ୍ତରୀକ୍ଷ କର ।
ମାଂସମାନ ଖାନ୍ତି ସେ ଦନ୍ତରେ ବିଦାର ॥
ମୁଦ୍ଗର ନେଇ ପିଟନ୍ତି କେବଣ ଦନୁଜେ ।
ହେଲିଁ ଭଗବତୀ ଧରନ୍ତି ତା ହାତେଜେ ॥
ଖାଣ୍ଡକେ ଧର ହୃଅରେ ମାରନ୍ତି ଯେ ନାତେ ।
ଦୁଲାଇ ପିଟନ୍ତି ଗଦାବର ନରଘାତେ ॥
ନର୍ଘାତ ଜାଣି କରଣ ପଡ଼ୁ ନଶାଚରେ ।
ଧାଇଁଣ ଦେବୀଏ ମାଡ଼ ବସନ୍ତି ହୃଅରେ ॥
ଦନ୍ତରେ କୋମୋଡ଼ ଚିରଦ୍ୟନ୍ତି ତାଙ୍କ ବୁକୁ ।
ଖଣ୍ଡେ ଛଣ୍ଡାଇ ନେଇଣ ଦ୍ୟନ୍ତି ଅରକଙ୍କୁ ॥
ରକତ ମାଂସ ଖାଇଣ ଚୋବାନ୍ତି ସେ ହାଡ଼ ।
ଧରଣୀ କମ୍ପଇ ଶୁଭିବାକୁ ମଡ଼ ମଡ଼ ॥
ଲଟ୍ଟାଏ ରକତ ମାଂସେ କରନ୍ତି ସେ ଖେଡ ।
ପ୍ରଳୟ ମେଘ ପରାୟେ ଶୁଭେ ଘଡ଼ ଘଡ଼ ॥
ଧର ଅସୁର ଭକ୍ଷଣ କରଲେ ସେ ଗୃଣ୍ଡେ ।
ଅନ୍ୟ ଦୈତ୍ୟ ଗଦା ପିଟୁ ଦେବୀଙ୍କର ମୁଣ୍ଡେ ॥
ତହିଁକି ଯେ ଶଙ୍କାମାନ କଛି ନ କରନ୍ତି ।
ବାଜ ଗଦା ଭାଜିଣ ସେ ଚୂର ହୋଇଯାନ୍ତି ॥
ଲକ୍ଷ ଲକ୍ଷ କର ଦୈତ୍ୟେ ପେଶନ୍ତି ନାରାଜ ।
ଦେଖିଣ ଧାମନ୍ତି ଦେବୀ ହୋଇ ଉଗ୍ରତେଜ ॥
କୋପେ ଉଳୁସାନ୍ତି ତାଙ୍କ ଦେହ ରୋମାବଳୀ ।
ତହିଁରେ ନାରାଚମାନେ ପଡ଼ ହୁନ୍ତି ଧୂଳ ॥
ବନ୍ଧୁ ବନ୍ଧୁଣ ଅସୁରେ ହୁଅନ୍ତି ବିମୁଖ ।
ନସତ ହୋଇ ବୋଲନ୍ତି ଅମ୍ଭଙ୍କୁ ଗୋ ରଖ ॥
ଧନୁଶର ପକାଇଣ ପଳାନ୍ତି କେ ବେଗେ ।
ସମ୍ମୁଖେ ଯୁଦ୍ଧ କରିବ କେ ଦେବୀଙ୍କ ସଙ୍ଗେ ॥
କେହୁ ଯେ ପଳାନ୍ତି ଭୟେ ହୋଇଣ ବିକଳ ।
ପଛେ ଧାଇଁଣ ଧରନ୍ତି ଦେବୀ ତାଙ୍କ ବାଳ ॥
ଉଗ୍ରାନଶାୟୀ ହୋଇଣ ପଡ଼ନ୍ତି ଯେବେଳେ ।
ବେଳପାଛୁ ଅକ୍ଷୋହିଣୀ ଧରନ୍ତି ସେକାଳେ ॥
ଦନ୍ତେ ଗୃପି ଦଅନ୍ତେ ସେ ହୁଅନ୍ତି ବେନଖଣ୍ଡ ।
ରୁଧିର ବୃଷ୍ଟି ହୁଅଇ ତାହାଙ୍କର ପିଣ୍ଡ ॥

ମନ୍ଦାର ପୁଷ୍ପପରାୟେ ଦିଶେ ତାଙ୍କ କାୟେ ।
ବହବନ୍ତି ଦେବୀ ରଣେ ନ କରନ୍ତି ଭୟେ ॥
ସେ ସମରେ ଦାନବେ ଯେ ପାଇ ବଡ଼ଦୁଃଖ ।
ଭଙ୍ଗ ପଳାଇଲେ ସର୍ବେ ହୋଇଣ ବିମୁଖ ॥
କ୍ଷଣକେ ମୋହନୀ ରୂପ ହୋଇ କାମସେଣା ।
ମୋହ ପାଶ ଲଗାଇଣ କଲେ ଦୈତ୍ୟବଣା ॥
ଅସୁର ସୈନ୍ୟଙ୍କ ହେଲେ ସେ ନାନା ଅବସ୍ଥା ।
କହିଲେ ନ ସରେ ଦେବୀମାନଙ୍କର କଥା ॥
ପାଶୁପତ ବାବଲ ଯେ ବ୍ରହ୍ମଶକ୍ତି ଶର ।
ଶାବେଳୀ କୁନ୍ତ ଖଡ଼ଗ ଗଦା ମୁଦୁଗର ॥
ପରଶୁ କୁଠାର ବଜ୍ରଶକ୍ତି ଶର ଲଠ ।
ମାରନ୍ତେ ଦେବୀମାନଙ୍କ ଶରୀର ନ ଭୁଟି ॥
ଅମୋଘ ଶକତ କୁନ୍ତ ଲକ୍ଷିଅ ହିଣ୍ଡୁଳୀ ।
ଦେବୀମାନଙ୍କର ଅଙ୍ଗେ ପଡ ହୋଏ ଧୂଳି ॥
ଶସ୍ତ୍ରଭେଦ ନୁହଇ ଯେ ଦେବୀଙ୍କର କାୟେ ।
ଭାଜଲେ ଦାନବମାନେ ଛେଳ ପଲ ପ୍ରାୟେ ॥
ରଣେ ଭାଜଲେ ଦାନବମାନଙ୍କ ସଇନ୍ୟ ।
ରହ କରେ ଶର କେହ ନ ପାରନ୍ତି ଯେନି ॥
ଗୋଡ଼ାଇ ପିଟନ୍ତି ପଛେ ଦେବୀ କାତ୍ୟାୟନୀ ।
ଧର ଧର ବୋଲନ୍ତେଣ କମ୍ପଇ ମେଦିନୀ ॥
ଯେନିଲେ କରେ ବିକଟ ଯମଦାଢ଼ମାନ ।
ଅନ୍ତରୀକ୍ଷେ ଦୁଲାଇ ତା କରନ୍ତି କ୍ଷେପଣ ॥
ପଳାନ୍ତେଣ ବିଦାରନ୍ତି ଧର ବକ୍ଷସ୍ଥଳ ।
ରୁଧିରେ ମାଂସ ବୁଡ଼ାଇ ଖାନ୍ତି କୁତୂହଳ ॥
ସହସ୍ରକୋଟି ଦାନବ ପଡ଼ ମଲେ ରଣେ ।
ପ୍ରାଣଯେନି କର ସେହ ନ ଗଲେ ସେ ଜଣେ ॥
ରକ୍ତ ମାଂସ ଲଟାଏ ସେ ନ ପକାନ୍ତି ତଳେ ।
ଆହାର କରନ୍ତି ଦେବୀ ଅତି କୁତୂହଳେ ॥
ମହାଭଇରବୀ କ୍ଷଣେ ମହା ଯୋଗେଶ୍ୱରୀ ।
କ୍ଷଣେ ବାଳଭାବ କ୍ଷଣେ ଯୁବାରୂପ ଧର ॥
ହିପୁର ମେଖଳା ବିଷ୍ଣୁ ରୂପା ଭଇରବୀ ।
ନାଚନ୍ତି ଖେମଣ୍ଟା ନାଟ ଦେଇ ମହାବୋଳ ॥
କ୍ଷଣକେ ବିକଟାଳୀ ସେ କ୍ଷଣେ ମୋହନାକ୍ଷୀ ।
ରଣରଙ୍ଗ ଧନୋଳରେ ମନ୍ଥ ମାଂସ ଭକ୍ଷି ॥
ରକ୍ତବୀଜ ନାରାୟଣୀ ଦୁହିଁଙ୍କ ସଂଗ୍ରାମ ।
ନାରଚ ବନ୍ଧନ୍ତେ କ୍ଷଣେ ନାହିଁ ନା ବିଶ୍ରାମ ॥

ଗାଣ୍ଡିବ କୋଦଣ୍ଡ ଶର ନାରାୟଣୀ ହସ୍ତେ ।
ଆକାଶ ଅନ୍ଧାର ହେଲା ନାରାଚ ବନ୍ଧନ୍ତେ ॥
ରକ୍ତବୀଜ ବନ୍ଧଇ ଯେ ଅନୁକ୍ଷଣେ ବାଣ ।
ଶୂନ୍ୟ ଭୁବନ ଘୋଟିଲା ସେହୁ ବାଣଗଣ
ରଣରଙ୍ଗେ ଭଜେ କଲେ କଙ୍କାଳୀ ବେତାଳୀ ।
ଦଇତନ୍ତ ଧରି ସେହୁ ଖଣେ ଖଣେ ଗିଳି ॥
ଅତ୍ୟନ୍ତ ଦାରୁଣ ଶର ମାରେ ରକ୍ତବୀଜ ।
ଦହନ ହୁଅଇ ଲାଗି ନାରାୟଣୀ ତେଜ ॥
ଅଗ୍ନିଶର ପ୍ରହାର ଯେ କରିଲା ଦାନବ ।
ଲାଗିଲା ଅନଳ ଶିଖା ମଣ୍ଡଳୁ ନିଦ୍ଧବ ॥
ଲୁହାର କୋଟିଏ ଶର ରକ୍ତବୀଜ ବନ୍ଧି ।
ନାଶଇ ନାସ୍ତରେ ତାହା ନାରାୟଣୀ ଛେଦି ॥
ପର୍ବତାସ୍ତ୍ର ପୁଣି ଯେ ମାରେ ରକ୍ତବୀଜ ।
ଉଗ୍ରତାସ୍ତ୍ର ଗର୍ବେ ପଣି ହୋଇଲା ଦହଧ୍ୟ ॥
ପୁଣ ବନ୍ଧେ ରକ୍ତବୀଜ ବେନି କୋଟି ବାଣ ।
ହେଲେ ନାରାୟଣୀ ତାହା ଛେଦେ ତତକ୍ଷଣ ॥
କୋପେଣ ମେଘାସ୍ତ୍ରକୁ ଦୈତ୍ୟବୀର ମାରି ।
ତ୍ରୈଲୋକ୍ୟ କମ୍ପିଲା ମେଘ ଶବଦର ପରି ॥
ଦେଖି ନାରାୟଣୀ ବାୟୁ ଶରକୁ ପେଷିଲେ ।
ପବନ ବଘାତେ ମେଘମାନଙ୍କୁ ରୁନ୍ଧିଲେ ॥
ମୃତ୍ୟୁଲୋକ ମଧ୍ୟରେ ଯେ ବାୟୁଶର ଘୋଟି ।
ଦଶଦିଗ ମେଘମାନେ ସର୍ବେ ଗଲେ ଫାଟି ॥
ରୁଦ୍ରଶର ରକ୍ତବୀଜ ପ୍ରହାରିଲା ପୁଣି ।
ନାରାୟଣ ଶରେ ନିବାରିଲେ ନାରାୟଣୀ ॥
ଧାଇଁଣ ଦଇତ ବେଗେ ପର୍ବତାସ୍ତ୍ର ବନ୍ଧି ।
ନାରାୟଣୀ ବଜ୍ରଶର ବନ୍ଧଣ ନିବେଧି ॥
ପୁଣ ଦେବୀ ବନ୍ଧିଲେକ ଶର ତୀକ୍ଷ୍ଣମୁନା ।
ପଡିଣ ଫଟିଲା ରକ୍ତବୀଜ ବଜ୍ରସେନା ॥
ଅମୋଘ ଶର ବନ୍ଧିଲେ ପୁଣି ନାରାୟଣୀ ॥
ରଥ ଅଶ୍ୱ ସାରଥି ତା ଛେଦିଲେ ତକ୍ଷଣି ॥
ରଥ ସାରଥି ହସ୍ତୀକୁ ନାଶିଲେ ତାହାର ।
ପାଦଗତ ହୋଇ ପଳାଇଲା ମହାବୀର ॥
ଲୌହଶର ଧନୁରେ ସେ ପୁରିଇଣ ପୁଣ ।
ସେମନେ ନାରାଚ କରି ବନ୍ଧିଲା ତକ୍ଷଣ ॥
କୃତାନ୍ତକ ରୂପ ବାଣ ପେଷି ନାରାୟଣୀ ।
ରକ୍ତବୀଜାସୁର ଶର ପକାଇଲେ ହାଣି ॥

ଅର୍ଦ୍ଧଚନ୍ଦ୍ର ପେଷି ଦେଲେ ତହୁଁ ନାରାୟଣୀ ।
ରକ୍ତବୀଜ ଧନୁର୍ଗୁଣ ପକାଇଲେ ହାଣି ॥
ଶୁଣ ହୋ ପରୀକ୍ଷ ରାଜା ଏହି ପଟନ୍ତରେ ।
ଶତ ଶତବାର ଆନ ଧନୁ ଧରି କରେ ॥
ରକ୍ତବୀଜ ସମର ଯେ କରେ ଅତି ରାଗେ ।
ଶର ପ୍ରହାର କରଇ ପବନଙ୍କ ବେଗେ ॥
ଆହୋ ସୁଜ୍ଞଜନମାନେ ନିରୂପଣ କର ।
କହିବାକୁ ସମର୍ଥ ନ ହେବେ ହରି ହର ।
ସଂକ୍ଷେପେଣ କହିବାକୁ ମୁଁ କସ ବକତ ।
ଲେଖନ୍ତେ ନ ସରଇ ଏ ଚଣ୍ଡୀ ଯୁଦ୍ଧ କଥା ॥
ଧନୁ ହୋଣ ଛେଦ ଦ୍ୟନ୍ତେ ପୁଣି ଦୈତ୍ୟରାଜ ।
ଖଡ୍ଗଫଳା ଘେନିଲା ନସ କୋପେ ହୋଇ ତେଜ
ଦେବେ ଦୁର୍ଦ୍ଧର୍ଷ ଯାହାର ଅଙ୍ଗେ ସିଦ୍ଧଗତ ।
ଦେଖିଣ କୋପେ ଧାଇଁଲେ ଆଗେ ଭଗବତୀ ॥
ଅଜଗବରେ ବସାଇ ପାଞ୍ଚଗୋଟି ବାଣ ।
ରକ୍ତବୀଜ ଉପରକୁ ବିନ୍ଧିଲେ କୋପେଣ ॥
ଦେଖି ଦନୁଜ ଅତିଲା ଝଟିତ ଅଟ୍ଟେଣି ।
ନିବାରିଲା ବନ୍ଧିବାରୁ ଶରମାନ ପୁଣି ॥
ଏକ କରେ ଫର ଧରି ଅବରକରେ ଖଣ୍ଡା ।
ସମରେ ବିହରଇ ସେ ରକ୍ଷକୁଳ ଷଣ୍ଢ ॥
ଖଡ୍ଗ ବୁଲାଇ କରି ଧାଏଁ ରକ୍ତବୀଜ ।
ଅକ୍ଷୋଭି ହାଣିଲା ଭଗବତୀଙ୍କ ଉରଜ ॥
ନ ବାଜି ସେ ଭଗବତୀ ହେଲେ ଅନ୍ତର୍ଦ୍ଧାନ ।
ଚକିତ ଲୋଡ଼େ ଲୋଡ଼େ ଦୈତ୍ୟ ହତଜ୍ଞାନ ॥
ତରସ୍ତ ହୋଇଣ ଖଣ୍ଡା ଫଳା ପକାଇଲା ।
ଶୂନ୍ୟହସ୍ତ ଦେଖି ନାରାୟଣୀ ଯେ ଧାଇଁଲା ॥
ଅରେ ଅରେ ବୋଲି ଡାକ ଦେଲେ ନାରାୟଣୀ ।
ଧାଇଁଲା ଅସୁର ରୁଦ୍ରକାର ଭାଷା ଶୁଣି ॥
ଅତି କୋପ କରି ଧରି ଖଣ୍ଡା ପ୍ରହାରିଲା ।
ଝଟକେ ଗଡରେ ନାରାୟଣୀ ଫେରାଇଲା ॥
ବଜ୍ର ଶକତ ଧରଣ ମାଟେ ମାହେଶ୍ୱରୀ ।
ପଡ଼ିଲା ରକତବୀଜ ପରେ ଯାଇଁ କରି ॥
ପ୍ରଳୟରୂ ଉଡ଼୍ଧତ ପରାହ୍ନେ ଶୁଭିଲା ।
ରକ୍ତବୀଜ ଖଡ୍ଗଫଳା ଝଡ଼ିଣ ପଡ଼ିଲା ॥
ପୁଣି ଧାଇଁ କୁଠାରକୁ ମାରନ୍ତି ପ୍ରମଦା ।
ରକ୍ତବୀଜ ହାତେ ଲକ୍ଷେ ଲକ୍ଷେ ଭାର ଗଦା ॥

ଧାଇଁଣ ନାରାୟଣୀଙ୍କ ଉପରେ ନେଇ ପିଣ୍ଟ ।
ଲାଙ୍କ ବାହନ କଣ୍ଡ୍ର ପରେ ମସ୍ତ ଲୋଷ୍ଟ ॥
ବାହନ ବଳରେ ନାରାୟଣୀ ଶୂନ୍ୟମାର୍ଗେ ।
ଥାଇଁଣ ସିଂହ ପେଷିଣ ଦେଲେ ଦେବୀ ଦୁର୍ଗେ
ଶୁଣ ହେ। ପରୀକ୍ଷ ରାଜା ଜାଣି ନାରାୟଣୀ ।
କେଶରୀ ପିଠିରେ ଯାଇଁ ବଜେ କଲେ ଶୁଣି ॥
ରକ୍ତବୀଜ ସହିତରେ ଅତି ଘୋର ରଣ ।
କଲେ କରେ ଧରି ମହାଶର ଯେ କମାଣ ॥
ସହସ୍ରେ ସହସ୍ରେ ଶର ଲୌହ ଗଦା ଘେନ ।
ପିଟିଲା ଦଇତ ବଞ୍ଚାଇଲେ କାତ୍ୟାୟିନୀ ॥
ଫେରାଇଣ ବଜ୍ରେକର୍ଣ୍ଣ କଠୋର ପ୍ରହାର ।
ଧାଅ ପାଇଣ ଅସୁର ହଠେ କୋପ କରି ॥
ଶୁଣ ରାଜ୍ୟେ ପ୍ରହାରିଲା ସେହୁ ଲୌହଦଣ୍ଡ ।
ବାଣ ନାରାୟଣୀ ଦେହେଁ ହେଲା ଖଣ୍ଡ ଖଣ୍ଡ ॥
ଦେବଦଳନ ଗଦାଟି ଭାଜିଲା ତା ଯନ୍ତ୍ରୁଁ ।
ଦେଖି ମୂଥ ଟେକ ମରେ ଦଇତ ଯେ ତନ୍ତୁଁ ॥
ବଞ୍ଚାଇ ପ୍ରଚଣ୍ଡ ଖଣ୍ଡା ଘେନ ନାରାୟଣୀ ।
ରକ୍ତବୀଜ ଉପରେ ସେ କୋପେ ନେଇ ହାଣି ॥
ଯେସନେକେ ରମ୍ଭା ବୃକ୍ଷେ ଭେଦେ କରବାଳ ।
ରକ୍ତବୀଜ ଦାନବ ଯେ ହେଲା ବେନଫାଳ ॥
ବେନ ପର୍ବତ ଯେସନେ ଶୂନ୍ୟ ଖସି ପଡ଼ ।
ମେରୁ ଶୃଙ୍ଗ ମସ୍ତରେ କ ପଡ଼ିଲାକ ଝଡ଼ ॥
ଦଇତଙ୍କୁ ନିବାରିଲେ ଯନ୍ତ୍ରୁଁ କାଳରାତ୍ରି ।
ସ୍ୱର୍ଗେ ଦେବତାଏ ଦେଖି ଆରମ୍ଭିଲେ ସ୍ତୁତି ॥
ନମୋ ନାରାୟଣୀ ମାଗୋ ଅନାଦି ଶକତି ।
ରକ୍ତବୀଜଧ୍ୱଂସିନୀ ଗୋ ଅସୀମ କୀରତି ॥
ତୁ ଗୋ ଶ୍ରୀକୃଷ୍ଣ ଅଂଶରେ ହେଲୁ ଅବତାର ।
ଛେଦିଲୁ ତୁ ରକ୍ତବୀଜ ଦାନବର ଶିର ॥
ବୃନ୍ଦାରକ ଜନଙ୍କୁ ତୁ କଲୁ ସ୍ୱର୍ଗବାସୀ ।
ପୃଥ୍ୱୀ ଭାରହର ହେଲେ ପକାଇଲୁ ନାଶି ॥
ଦିବ୍ୟ ଅବତାର ମାଗୋ ଅନେକ ତୋ ଘର ।
ଶଙ୍ଖ ଚକ୍ର ଗଦା ପଦ୍ମ କୁନ୍ତ ଅସିବର ॥
ପରଶୁ କୁଠାର ପାଶୁପତ ମୋହ ବାଣ ।
ଗାଣ୍ଡିବ ଧନୁ ଶାରଙ୍ଗ ଧନୁ ଯେ କମାଣ ॥
ଅମୋଘ ଶକତି ବଜ୍ର ଶକତି ପଟ୍ଟିଶ ।
କମ୍ପିତ ସମରେ ନାଶ କଲୁ ଦୈତ୍ୟଗଣ ॥

ଯୋଗିନୀ ବଳ ଘେନ ଗୋ ମତୁଆଲେ ଖଟ୍ଟ ।
ରକ୍ତ ମାଂସ ଭୋଜନେ ଗୋ ମତ୍ତରଙ୍ଗେ ନାଟ୍ଟ ॥
ଖେଚରୀ ଭୂଚରୀ ମାଗୋ ଶବ୍ଦ କଳକଳା ।
ମତୁଆଲ ମାତଙ୍ଗୀ ତୁ ମଦ୍ୟପାନେ ଭୋଳା ॥
ଦନୁଜମାନ ସଂହାର ଶବ ପରେ ଖେଳ ।
ରଣରଙ୍ଗେ ତନାଶିଲୁ ଦୈତ୍ୟଙ୍କ କେବଳ ॥
ଯାତ ଅନ୍ତ ପାଳନ ତୁ କରୁ କାମରୂପୀ ।
ଡାକେଶ୍ୱରୀ କଙ୍କାଳୀ ବେତାଳୀ ସର୍ବ ବ୍ୟାପୀ ॥
ମେଦିନୀ ପୂରଇ ମାଗୋ କଳକଳା ଡାକେ ।
ଆକାଶ ପୂରି ଅଛଇ ତୋର ସ୍ପର୍ଦ୍ଧ ହାକେ ॥
ରକ୍ତ ମାଂସ ଭକ୍ଷଣ ତୁ କରୁ ବିଶ୍ୱରୂପା ।
ଶରଦ ଚନ୍ଦ୍ରବଦନୀ ମୋହିନୀ ସ୍ୱରୂପା ॥
କହନ୍ତେ ନ ସରଇ ଗୋ ତୋହର ମହିମା ।
ପ୍ରକୃତ ଅନ୍ତର କରି ନ ପାରିଲା ବ୍ରହ୍ମା ॥
ଏମନ୍ତ ବୋଲି ତେତିଶ କୋଟି ଦେବଗଣେ ।
ଶୂନ୍ୟରେ ନମିଲେ ନାରାୟଣୀଙ୍କ ଚରଣେ ॥
ମୁହିଁ ସେ ମାନବ ମାଗୋ ମୋର କ୍ଷସ ମତ ।
ଶରଣ ଦାତା ନର୍ମଦା ଦେବୀ ସରସ୍ୱତୀ ॥
ଝଙ୍କଡ଼ ପୁରବାସିନୀ ଶ୍ରୀ ଶାରଳା ଦେବୀ ।
ସେ ଚରଣରେ ଶରଣ ଶାରଳା ଯେ କବି ॥
ଏଥି ଅନ୍ତରେ ପରୀକ୍ଷ ନାମେ ମହାରାଜା ।
ଶୁକମୁନି ଚରଣରେ କଲେ ଦିବ୍ୟ ପୂଜା ॥
ହେ ମୁନି ଶୁଣିଲି ତବ ମୁଖୁ ଚଣ୍ଡୀଯୁଦ୍ଧ ।
ଅମୃତ ରସ ବଚନ କହିଲ ପ୍ରସିଦ୍ଧ ॥
ଶ୍ରୀଦୁର୍ଗା ଚରିତ ଶୁଣି କୃତାର୍ଥ ହୋଇଲି ।
ପ୍ରତିଜ୍ଞା ସମ୍ଭୁହିଁ କଲି ଦୁଃଖରୁ ତରିଲି ॥
ହେ ମୁନି ହେ ରକ୍ତବୀଜ ପଡ଼ିଲା ସମରେ ।
ପୁଣି କେବଣ କୃତ୍ୟ ସେ କଲେ ନଶାଚରେ ॥
କହେ ଶୁକମୁନି ଶୁଣ ହେ ପରୀକ୍ଷ ରାଜ୍ୟେ ।
ଶ୍ରୀ ଦୁର୍ଗା ଚରିତ ଶୁଣି ପାପ କରି କ୍ଷୟେ ॥
ପଢ଼ନ୍ତେ ଶୁଣନ୍ତେ ଘୋର ବିପତ୍ତି ଖଣ୍ଡଇ ।
ବିପୁଳ ଲକ୍ଷ୍ମୀ ମିଳଇ ରୋଗ ନାଶଯାଇ ॥
ରକତବୀଜ ଦଇତ ପଡ଼ିଲା ସମରେ ।
ରକତ ବୃଷ୍ଟି ହୋଇଲା ସମର ଭୂମିରେ ॥
ଯେତେ ରକତ ପଡ଼ିଲା ଅବନୀ ଉପରେ ।
ଶତ ଶତ ଦୈତ୍ୟ ଜାତ ମହା ମହା ବୀରେ ॥

ବିକଟାଳ ମୂର୍ତ୍ତି କେଶ ଲୋହିତ ବରନ ।
ପୃଥ୍ୱୀ ଉପରେ ପୂରିଲେ ସେ ପଞ୍ଚ ଯୋଜନ ॥
ଗଦା ମୁଦ୍ଗର କୁନ୍ତ କୁଠାର ଶକତି ।
ଅସିପଟ୍ଟ ଭିନ୍ଦିପାଳ ଯେ ପର୍ଶୁ ବଜ୍ର ଯଷ୍ଟି ॥
ଧରି ତର୍ଜନ୍ତି ଗର୍ଜନ୍ତି ରେ ରେ କାରି ନାଦେ ।
ମେଦିନୀ ଟଳମଳ ଯେ କମ୍ପେ ତାଙ୍କ ପାଦେ ॥
ଦିଶନ୍ତି ଦଇତେ ସାକ୍ଷାତେ କି ରକ୍ତବୀଜ ।
ସମୁଦ୍ର ଲହରୀ ପ୍ରାୟେ ଘୋଟିଲେ ଦନୁଜ ॥
ରହୁଗିରି ପରେ ଥାଇ ଦେବୀ ଦେଲେ ଡାକ ।
ଯାଅଁ ଲୋ ଅସୁର ବଳ ଶୀଘ୍ର ତୁମ୍ଭେ ଭକ୍ଷ ॥
ଦୁର୍ଗାର ଆଜ୍ଞାପାଇ ସେ ଚଉଷଠି ଯୋଗିନୀ ।
ରଣରଙ୍ଗ କଉତୁକେ ବଢେ କାତ୍ୟାୟିନୀ ॥
ମହୀମଣ୍ଡଳରେ ଓଷ୍ଠ ଆକାଶରେ ପାଟି ।
ବିଶ୍ୱରୂପ ପ୍ରକାଶିଲା ଦେବୀମାନେ ଘୋଟି ॥
ବିଜେକଲେ ନାରାୟଣୀ ଗଜେନ୍ଦ୍ର ପିଠିରେ ।
କୋପେ କରବାଳ ଝମକାନ୍ତି ଧରି କରେ ॥
ତୋଳି ପ୍ରହାର କରନ୍ତି ଅସୁରଙ୍କ ପର ।
ଶିର ଚରଣ ହୃଦୟ ଛିଡ଼ଇ କାହାର ॥
ତହୁଁ ଯେତେ ମହାରକ୍ତ ପଡ଼ୁ ଅଛି କ୍ଷିତି ।
ଶତ ଶତ ଦଇତ ଯେ ହୁଅନ୍ତି ଉତପତ୍ତି ॥
ରଣଭୂମି ପୂରିଅଛି ରକ୍ତବୀଜ କାୟେ ।
ଆକାଶରେ ଥାଇ ବୋଲୁଛନ୍ତି ଦେବତାଏ ॥
ଏମନ୍ତେ ଅସୁର ବଳ ନୁହନ୍ତି ଗୋ କ୍ଷୟେ ।
ମହୀରେ ରକ୍ତ ପଡ଼ିଲେ ହେବେ ଦୈତ୍ୟମୟେ ।
ଖଡ଼୍ଗେ ହାଣିଣ ତଳେ ପାତ ଗୋ ଖପର ।
ଉପରିକୁ ମୁଖକରି ପିଇବ ରୁଧିର ॥
ମହା ମୂରତି ଧରିଣ ରଣେ ସେ କାମାକ୍ଷୀ ।
ରକ୍ତମାଂସ ଅସ୍ଥି ଚର୍ମ ନ ଥୋଇଲେ ଭକ୍ଷି ॥
ଉପୁଜି ନାଚନ୍ତି ପୁଣ ପୁଣ ରକ୍ତବୀଜ ।
ମାଇଲେ ନ ସରଇ ସେ ଦର୍ପିଷ୍ଟ ଦନୁଜ ॥
ପଞ୍ଚଗୁଣ ପୂରିଅଛି ରକ୍ତବୀଜ କାୟ ।
ଆକାଶକୁ ଲାଗିଅଛି ଅସୁରଙ୍କ ଦେହ ॥
ଦେଖିଣ ବିମୁଖ ରଣେ ହେଲେ ମହାମାୟେ ।
କିଳକିଳା ଶବଦରେ ପୃଥ୍ୱୀ କମ୍ପିଯାଏ ॥
ଲକ୍ଷେ ଡାକିନୀ ଶାକିନୀ ଶୋଣେହା ମୂରତି ।
ହୃଦୟରୁ ଦୁର୍ଗା ଏହାଙ୍କ କଲେ ଉତପତ୍ତି ॥
ସନ୍ନିଧିକି ହକାରିଲେ ଦେବୀ ହି ପୂଷକୁ ।
କୋପେ ଆଜ୍ଞା ଦେଲେ ସଙ୍ଗେ ଘେନ ଏମାନଙ୍କୁ ॥
ଯାଅ ଅଲୋ ତୁମ୍ଭେମାନେ ହୁଅ ମହାଭକ୍ଷଣୀ ।
ପଡ଼ିଲେ ମହୀରେ ରକ୍ତ ନେଉଥିବ ବେଗି ॥
ଦୁର୍ଗାଙ୍କର ବଚନତ ଅଟେ ନସ୍ୱଧାର ।
ଆବର ବିଶେଷେ ଶୋଣେହା ଯେ ଅବତାର ॥
ପୃଥ୍ୱୀ ମଧ୍ୟେ ଘୋଟିଲେ ସେ ଦେଇ ଘୋରରଡ଼ି ।
ଅସୁର ସୈନ୍ୟ ପଡ଼ିଲେ ଦେବୀ ଯାଇ ମାଡ଼ି ॥
ଚଉଷଠି ଯୋଗିନୀମାନେ ଯାଉଛନ୍ତି ହାଣି ।
ତଳେ ଖପର ପାତନ୍ତି ବେଗେ ଦେବୀ ଆଣି ॥
ଯାହା ରକ୍ତ ପଡ଼ୁଅଛି ଖପରେ ଧରନ୍ତି ।
ଅମୃତ ସମାନ କରି ରକତ ପିବନ୍ତି ॥
ଦୈତ୍ୟ ବଳ ଅଟନ୍ତି ଯେ ଶୁଷ୍କ ତୃଣ ପ୍ରାୟେ ।
ତହିଁକି ଅଟନ୍ତି ଅଗ୍ନି ଦେବୀ ମହାମାୟେ ॥
ହାଣନ୍ତେ ଅସୁରେ ହେଲେ ଅତହୁଁ ଗହଳ ।
ମାରୁଁ ନ ମରନ୍ତି ସେହି ରକ୍ତବୀଜବଳ ॥
ଖଡ଼୍ଗରେ ହାଣନ୍ତି ସେ ପାତନ୍ତି ଖପର ।
ପଡ଼ିଲେ ତଳେ ନଅନ୍ତି ଶୋଣେହା ନିକର ॥
ଏମନ୍ତେ ଦିବସ ନିଶି ତିନ ଦିନ ଯାଏ ।
ସମର ହେଲା ଅସୁର ହୋଇଲେ ଅକ୍ଷୟେ ॥
ଲକ୍ଷେ କୋଟିଏ ମର୍ଦ୍ଦିତ କୋଟିଏ ପସର୍ଦ୍ଧି ।
ବିଶାଶତେ ଲକ୍ଷ ପୁଣି ଦୈତ୍ୟ ସୈନ୍ୟ ବୃନ୍ଦ ॥
ରକ୍ତବୀଜର ଯେ ବଂଶ ମିଶି ଅପ୍ରମିତା ।
ମହିଷାସୁର ସଇନ୍ୟ ହେଲେ ଅଗଣିତା ॥
ଦୁର୍ଗା ଦେଖିଲେ ଅସୁର ସଇନ ଅଲେଖା ।
ଖଡ଼୍ଗ ଝାଡ଼ନ୍ତେ ଜାତ ହୋଇଲେ କାଳିକା ॥
ଊର୍ଦ୍ଧ୍ୱବାହୁ ଦୀର୍ଘ କେଶ କଜ୍ଜଳ ସ୍ୱରୂପ ।
ନାରାୟଣୀଙ୍କ ଖଡ଼୍ଗେ କାଳୀ ହେଲେ ଗୋପ୍ୟ ॥
ଖଡ଼୍ଗରେ ହାଣି କାଳିକା ରକ୍ତ ମାଂସ ଭକ୍ଷି ।
ଅନ୍ତ୍ରପୁଷ୍ଟାମାନ ତହିଁ ନ ରହିଲା ଭକ୍ଷି ॥
ଦୁର୍ଗାଙ୍କର ଆଜ୍ଞା ପାଇ ଅନାଦି ଶକତି ।
ଧାଇଁଲେକ ନାରାୟଣୀ ହୋଇ ଶୂନ୍ୟ ଗତି ॥
ପୁଣ ଦୁର୍ଗା ଆଜ୍ଞା ଦେଲେ ଚାମୁଣ୍ଡାକୁ ଡ଼ାକି ।
ତୁମ୍ଭ ସଙ୍ଗେ ଘେନ ଏ କଙ୍କାଳୀ ବେତାଳୀକି ॥
ମାହେଶ୍ୱରୀ ମହାମାୟା ଡାକେଶ୍ୱରୀ ଯାଅ ।
ଚଣ୍ଡିକା ଭଦ୍ରା କାଳିକା ଅସୁରଙ୍କୁ ଖାଅ ॥

ଧାଆଁନ୍ତେ ଯୋଗିନୀମାନେ ମାରନ୍ତେ ଅସୁର ।
ଅସ୍ଥି ମାଂସ ସମସ୍ତ କଲେ କରନ୍ତି ଆହାର ॥
ଦୁର୍ଗାଙ୍କ ବଚନ ଏହିରୂପେ କର୍ଣ୍ଣେ ଶୁଣି ।
ମାହାଣ ପଡ଼ିଲେ ଯାଇଁ ସର୍ବ ଗୋସାମଣୀ ॥
ରଣରଙ୍ଗ ଧନ୍ଦୋଳରେ ଡ଼ାକେ ଡ଼ାକେଶ୍ୱରୀ ।
ସମରେ ଭୟ ନାହିଁ ନା ମନରେ କାହାର ॥
ସେହି ଠାବରେ ଚାମୁଣ୍ଡା ବିସ୍ତାରିଲ ପାଟ ।
ଗଗନ ମଣ୍ଡଳ ଯାଏ ଅଛି ଯୋଟ ॥
ପୃଥ୍ୱୀ ସର୍ବ ତଳପାଟ ଆକାଶ ଉପର ।
ସଂଗ୍ରାମ ଭୋଳ ବାଜିଲା ଚାମୁଣ୍ଡା ତୁଣ୍ଡର ॥
ମଧ୍ୟରେ ରକ୍ତପଡ଼ିଲେ ସିନା ଜାତ ହୁଏ ।
ଏଥିକି ଜଗତ ମାତା ରଚିଲେ ଉପାୟେ ॥
ଖାଉ ପିଉ ଲେହୁ ଯେବେ ବଳ ପଡ଼େ ଶୋଣି ।
ଉପଲହ୍ୟ କରନ୍ତି ଚାମୁଣ୍ଡା ଗୋସାମଣୀ ॥
ମରୁଅଳ ନାଟରେ ସେ ରକ୍ତମାଂସ ଭକ୍ଷି ।
ଖାଇଲେ ନ ପୂରେ ଦେବୀମାନଙ୍କର କୁକ୍ଷି ॥
ବିସ୍ତାର ପ୍ରଳମ୍ବ ତାହାଙ୍କର ଦେନ ବାହୁ ।
ଗ୍ରହନକରଣ ଶଶୀ ଘୋଟେ ଯେସନ୍ତେ ରାହୁ ॥
ଦଶ ବଂଶ ଚରଣ ସେ ଧରନ୍ତି ଦଗଣ୍ଡ ।
ଗିଳ ଅଟମ୍ଭନ୍ତି ମରୁଅଳ ନାଟ ଖଣ୍ଡି ॥
ଟହ ଟହ ହୋଇ ହସି ଗୃହାନ୍ତି ତସଟ ।
ରଟ ମଟ କରନ୍ତି ସେ ଘାଟେଦନ୍ତି ପାଟ ॥
ବେଗେ ଧରି ଅସୁରଙ୍କ ଶିରମାନ ମୋଡ଼ ।
ଖାଙ୍କର କେଶ ଉପରେ ରକତ ନହୁଡ଼ ॥
ହୁଁ ହୁଁ କାର ଗର୍ଜନ ଯେ କୁହୁ କୁହୁ ନାଦ ।
ଲହ ଲହ ଜିହ୍ୱା କହ କହ ଯେ ଶବଦ ॥
କଟ କଟ ମଟ ମଟେ ଖାଇ ଅସ୍ଥି ଖଣ୍ଡ ।
ରେ ରେ କାର ଶବଦ ସେ କରନ୍ତି ପ୍ରଚଣ୍ଡ ॥
କଳ କଳା ରବ ଦେଇ ମାତଙ୍ଗୀ ନାଚନ୍ତି ।
ଭୁମ୍ବରୁ ଆଳାପ କରି ସ୍ୱସ୍ୱରେ ଗାବନ୍ତି ॥
ଭରହ ସୁରହ କଳା ଅଷ୍ଟରସ ନାଟ ।
ବିକଟାଳ ଦୃଷ୍ଟି ଖାଙ୍କୀ ଭଦ୍ରକାଳୀ ପେଟ ॥
ମୁଣ୍ଡ ଯୋଡ଼ି ଧରି କାମୋଡ଼ନ୍ତି ସେ ଉପାଡହ ।
ଚରଣ ଠାରୁ ଗିଳନ୍ତି ବାହା ମୂଳ ଯାଏ ॥
କେ ଦେବୀସବ ଖସ୍ତରେ ଭରଛନ୍ତି ତୁଣ୍ଡ ।
ଗର୍ଭରୁ କାଢ଼ି କରି କେ ଖାଉଛନ୍ତି ମୁଣ୍ଡ ॥

କଙ୍କାଳୀମାନେ କେ ଦାନ୍ତେ ମୁଖେ ଆନ୍ତ୍ର ଧରି ।
ମୁଣ୍ଡ ପେଟ ରୁକ୍ତ ଦୂଇ ବାହା ଅଦ୍ଧ କରି ॥
ଅସୁରଙ୍କ ମୁଣ୍ଡ ମୋଡ଼ କେହୁ କାଖେ ଯାକି ।
ରୁଧିର ପିବନ୍ତି କେବା ମହାଘୋର ବ୍ୟାପି ॥
ଶୂନ୍ୟ ରୂପକୁ ଧରନ୍ତି ଷଟେଣ କେଉଁ ଦେବୀ ।
ମୁଁ ତାହା ଲେଖନ୍ତେ ଅନ୍ତ କରି କି ପାରିବ ॥
କହିଲେ ଅଭୟା କାତ୍ୟାୟିନୀ ମୋତେ ଯାହା ।
କେ ଅନ୍ତ କରିବ ପୁଣି ଲେଖା କରି ତାହା ॥
ଅପାର ଗହନ କଥା ଲେଖନ ନ ଯାଇ ।
ଶୁଣିଲେ ପ୍ରସନ୍ନ ନଷ୍ଟେ ହୁଅନ୍ତି ମହାମାଇ ॥
ଶତେ କୋଟି ଜନ୍ମର ସେ ପାତକ ଖଣ୍ଡଇ ।
ଆଦ୍ୟ ଅନ୍ନପୂର୍ଣ୍ଣା ଦେବୀ ଦାରିଦ୍ର୍ୟ ନାଶଇ ॥
ଶ୍ରୀ ଚଣ୍ଡିକା ଶାସ୍ତ୍ର ଏଯେ ହୃଦେ ଶୁଭୁଥାଇ ।
ଧର୍ମ ମୋକ୍ଷ କାମ ଅର୍ଥ ପ୍ରାପତ ହୁଅଇ ॥
ଧନ ସନ୍ତାନ ବହୁତ ଦିଏ ମହାମାଈ ।
ଯାହା ନାମ ଶ୍ରବଣରେ ଦୁଃଖ ନାଶ ହୋଇ ॥
ଶ୍ରୀ ଦୁର୍ଗା ଚରଣ ତଳେ ମମ ମନ ଲୟେ ।
ଶୂଦ୍ର ମୁନି ଶାରଳାକୁ କର ମା ନିର୍ଭୟେ ॥
ଶୁଣ ମହାରାୟେ ଏହି ଚଣ୍ଡୀ ଶାସ୍ତ୍ର ଗୋଟି ।
ଜ୍ୱର ରୋଗ ନ ବାଧଇ ନ ଲାଗେ ଅରିଷ୍ଟି ॥
ଏଥୁ ଅନନ୍ତ ଶୁଣ ରକ୍ତବୀଜର ବାରତ ।
ଚନ୍ଦ୍ର ଢନ ଚନରାଦେ ନାଶ ଗଲେ ଦୈତ୍ୟ ॥
ଶୁଣିଣ ସେ ପରୀକ୍ଷିତ ନୃପତି ବୋଇଲା ।
ବଡ଼ ଦୁର୍ଲଭ ମୁନି ହେ ନାହିଁନା ଶୁଣିଲା ॥
କହିଲ ଯେ ମୈଷାସୁର ସୈନ୍ୟ ଅପ୍ରମିତ ।
ରକ୍ତବୀଜ ରକ୍ତୁଁ କୋଟି କୋଟି ହେଲେ ଜାତ
କହ ପୂର୍ବେ କାହୁଁ ସେବା କଲା ରକ୍ତବୀର୍ଯ୍ୟ ।
ରକ୍ତ ଟୋପିକରେ ଶତେ ଶତେ ଜାତ ତେଜ ।
ଏହା ମୋତେ ସଂକ୍ଷେପେଣ କହ ବ୍ୟାସଶିଷି ।
ମମ ଭ୍ରାନ୍ତି ଫିଟିବ ମୁଁ ହେବି ସ୍ୱର୍ଗବାସୀ ॥
ରାଜାର ବଚନ ଶୁଣି ପରାଶର ନାତି ।
ବ୍ୟାସଙ୍କୁ ଧ୍ୟାନ କଲେ ସେ ଶୁକ ବ୍ରହ୍ମଯତି ॥
ବ୍ୟାସଙ୍କ ପ୍ରସାଦୁଁ ତାଙ୍କୁ ସବୁ ହୋଏ ଦୃଶ୍ୟ ।
ବର୍ତ୍ତମାନ କଥା ଆଉ ଭୂତ ଯେ ଭବିଷ୍ୟ ॥
ଶୁକମୁନି କହିଲେକ ସତ୍ୟଯୁଗ କଥା ।
ଶୁଣ ରାୟେ ଚୂରି ଲକ୍ଷ ପୁରାଣ ବାରତା ॥

ଦଇତେ ବିଷ୍ଣୁଙ୍କୁ ସର୍ବକାଳେ ଭସ୍ମ କର ।
ଈଶ୍ୱରଙ୍କୁ ସର୍ବରୂପେ ଆତ୍ମ ସେବା କର ॥
ପିତାଙ୍କୁ ଅନେକ ତପ କଲା ରକ୍ତବୀଜ ।
ନବ ସପ୍ତ ବରଷରେ ପ୍ରସନ୍ନ ପଦ୍ମଜ ॥
ଷୋଳେଣ ବରଷ ତାଙ୍କୁ ହୋଇଲେ ପ୍ରସନ୍ନ ।
ବୋଇଲେ ବର ମାଗ ରେ ଯେ ତୋହର ମନ ॥
ରକ୍ତବୀଜ ବୋଇଲା ତୁ ଦେବୁ ଯେବେ ବର ।
ତୋହ୍ମ ବିଷ୍ଣୁ ଭସ୍ମ ମୋତେ ନ ମରେ ତା କର ॥
ବିଷ୍ଣୁ ସୁଦର୍ଶନେ ଚକ୍ରେ ନୋହିବ ମୁଁ ବଧ ।
ନ କାଟନ୍ତୁ ଅଙ୍ଗେ ତାହାଙ୍କ ସକଳ ଆୟୁଧ ॥
ବଜ୍ରେ ନିର୍ମିତ ହୋଇବ ମୋହର ଶରୀର ।
ନ କାଟିବ ବଜ୍ର ପାଶୁପତ ବ୍ରହ୍ମ ଶର ॥
ନାରାୟଣ ଶସ୍ତ୍ରଘାତେ ନୋହିବ ମୁଁ କ୍ଷୟେ ।
ରୁଦ୍ର ଶୂଳ ପରଶୁ ନ କାଟୁ ମୋର କାୟେ ॥
ଅନଳରେ ନ ପୋଡ଼ିବ ଜଳେ ନ ବୁଡ଼ିବ ।
ଦେବଙ୍କର ଶାପରେ ମୁଁ କେବେ ନ ମରିବ ॥
ଏହିପରି ଯୁଗେ ଯୁଗେ ଚିରଜୀବୀ ହୋଇବ ।
ତିନି ଲୋକରେ ଏକାଙ୍ଗ ଚକ୍ରବର୍ତ୍ତୀ ହେବ ॥
ସର୍ବକାଳେ ଯୁବା ହୋଇଥିବ ମୋର ପିଣ୍ଡ ।
ଚନ୍ଦ୍ର ସୂର୍ଯ୍ୟ ଜିଣିବ ନ ଲାଗୁ କାଳଦଣ୍ଡ ॥
ଅବର କଥାଏ ଦେବ ମାଗୁଛି ମୁଁ ତୋତେ ।
କାଳେ ନ ମରିବ ମୁହିଁ ପୁରୁଷଙ୍କ ହସ୍ତେ ॥
ଯଦ୍ୟପି ବଧ ହୋଇବ ଅବା ଅହେତୁରେ ।
ମୋହର ରୁଧିର ଯେବେ ପଡ଼ିବ କ୍ଷିତିରେ ॥
ମନ୍ଦାକ୍ଷରେ ଶତେ ଶତେ ହେବ ଉତପତ୍ତି ।
ମୋହର ସମାନେ ମହା ପ୍ରଚଣ୍ଡ ମୂରତି ॥
ଦେବ ଦାନବଙ୍କୁ ଭୟ ନ ଥିବ ତାଙ୍କର ।
ରକତ ପଡ଼ିଲେ ଜାତ ହେବ ସେହିପର ॥
ମୋହର ରକତ ଯେବେ ହେବ ମୋର ବୀଜ ।
ଅଦାସରେ ଉପୁଜିବ ଅନେକ ଅସୁଜ ॥
ଅସୁର ଅନାଇ କର ମାଗୁଅଛି ଯାହା ।
ଷୋଳେଣ ବରଷ ପୁଣି ଦେଉଥାନ୍ତି ତାହା ॥
ଏମନ୍ତେ ଅନେକ ବର ରକ୍ତବୀଜ ନେଲା ।
ବର ଦେଇ ବ୍ରହ୍ମା ନିଜ ସଦନକୁ ଗଲା ॥
ତହୁଁ ଦାନବ ହୋଇଲା ଅତି ଅନର୍ଗଳ ।
ଏକା ହୋଇ ଭୋଗ କଲା ପଞ୍ଚଶ ମଣ୍ଡଳ ॥

ତପ କରି ବ୍ରହ୍ମା ବର ପାଇଁଲା ସେ ପୂର୍ବେ ।
ସେହି ବର ଅନ୍ୟଥା କି ହେବ ପୁଣି ଏବେ ॥
ଏହା ଶୁଣି ସାନନ୍ଦିତ ହେ ପରୀକ୍ଷ ରାଜା ।
ଶୁକ ବ୍ରହ୍ମାଙ୍କ ଚରଣେ କଲେ ଦ୍ରବ୍ୟ ପୂଜା ॥
ବୋଲନ୍ତି ସାଧୁ ମହିମା ଅହେ ମୁନିବର ।
କୃତାର୍ଥ କଲ ଶୁଣାଇ ଅମୃତ ଭଣ୍ଡାର ॥
ପୁଣ କେମନ୍ତ ହୋଇଲା କହ ସେ ବାରତା ।
ଶୁଣିବି ତବ ବଦନୁ ଚଣ୍ଡୀ ଯୁଦ୍ଧ କଥା ॥
ଶୁକ ମୁନି ବୋଲନ୍ତି ହେ ରକ୍ତବୀଜ ମଲା ।
ତିନି ଦିନ ତିନିରାତ୍ର ମହା ଯୁଦ୍ଧ ହେଲା ॥
ଶେଷ ରହିଲେ ରକତବୀଜର ସନ୍ତତି ।
ଶତ ଅଷ୍ଟୋତ୍ତର ଜଣ ହୋଇବ ଗଣତି ॥
ଦେଖି ତାଙ୍କୁ ଦୁର୍ଗା ମହାଘୋର କୋପ କଲେ ।
ଶୋଣିହା ମୂରତି କାତ୍ୟାୟନୀଙ୍କି ଡାକିଲେ ॥
ବୋଇଲେ ଲୋ ଜଣେ ଜଣେ ଯାଇ ମାଡ଼ିବସ ।
ବାହନ କର ଲୋ ରକ୍ତବୀଜର ଏ ବଂଶ ॥
ଠାକୁରାଣୀ ଆଜ୍ଞା ଶୁଣି ଯାଇଁଲେ ଡାକିନୀ ।
ମାଡ଼ି ବସିଲେ ଶତାଷ୍ଟୋତ୍ତର ପିଶାଚିନୀ ॥
ଚଳି ଯାଇ ନ ପାରିଲେ ଅସୁର ସଇନ ।
ସେହିମାନେ ହୋଇଲେଟି ଅସୁରବାହନ ॥
ଶୁକ ମୁନି ବୋଇଲେକ ଶୁଣ ଅହେ ରାୟେ ।
ଦୁଃସହ ସଂଗ୍ରାମେ ରକ୍ତବୀଜ ଗଲା କ୍ଷୟେ ॥
ରକ୍ତବୀଜ ବଧ ଏକମନେ ଯେ ଶୁଣନ୍ତି ।
କପାଇଁ କରବେ ନାଶକରନ୍ତୁ ସେ ଭୀତ ॥
ରକ୍ତବୀଜବାହିନୀ ଗୋ ଅଷ୍ଟୋତ୍ତର ଶତେ ।
ଚଣ୍ଡୀ ମୂର୍ତ୍ତି ଜୟ ଦେବୀ ନମସ୍ତେ ନମସ୍ତେ ॥
ଜୟ ଅନ୍ନପୂର୍ଣ୍ଣା ରଖ ଦୁଃଖମାନ ଛିଣ୍ଡି ।
ଅନାଦି ସାଧବୀ ତୁ ଗୋ ଦୈତ୍ୟକୁଳ ଦଣ୍ଡି ॥
ଜୟ ମାତଙ୍ଗୀ ସିନ୍ଧରେ ବଦନ ମଣ୍ଡନୀ ।
ଜୟ ସଙ୍କଟ ନାଶିନୀ ଜୟ କାତ୍ୟାୟିନୀ ॥
ଜୟ ସିଦ୍ଧ ମୁନି ଦେବ-ବନ୍ଦିତ-ଚରଣା ।
ଜୟ ଭକତ ଜନରେ ଉଦିତ କରୁଣା ॥
ଜୟ ଭୁଂଦକର କୋକନଦ ପଦାମ୍ବୁଜେ ।
ଶୂଦ୍ର ମୁନି ଶାରଳା ତୋ ପାଦପଦ୍ମ ଭଜେ ॥
ଶୁଣ ହେ ରାଜେ ଦଇତମାନଙ୍କ ସଂଗ୍ରାମ ।
ସ୍ତ୍ରୀ ବୃନ୍ଦ ଦେଖିଣ ସେହି କଲେ ମହାତମ ॥

ଅଶୀ ଲକ୍ଷ ଘୋଡ଼ା ସୈନ ଦୈତ୍ୟ ବୀରଘଣ୍ଟ ।
ନାରସିଂହୀ ଉପରକୁ ଧାଇଁଲା ଦର୍ପିଷ୍ଟ ॥
ଦେଖି କୋପ କରି ଅଙ୍ଗ ଦେଲେ ନାରସିଂହୀ ।
ଧାଇଁଲେ ମାରି ଦୈତ୍ୟଙ୍କ ଅସ ନେଲେ ଡାକିନୀ ॥
ଶୁଣି ଅଙ୍ଗ ଛିଗ୍ରଛତ କରିଣ ଧାଇଁଲେ ।
ଶ୍ୟେନ ପକ୍ଷୀ ପ୍ରାୟେ ଦୈତ୍ୟ ଥାଟକୁ ବେଢ଼ିଲେ
ଏମାନେ ଦଇତ୍ୟ ସେ ଯେ ଅଟନ୍ତି ପିଶୁଣୀ ।
ରକ୍ତମାଂସ ଅସ୍ଥି ଚର୍ମ ସବୁ ଦେଲେ ଛାପି ॥
ଦୁର୍ଗା ଡାକିଲେ ମେଖଳା ଅଗୋ ଡାକେଶ୍ୱର ।
ଧାଅଁ ଖାଅ ଅସୁରର ବଳ ବେଢ଼ି କରି ॥
ପାଶ ପରଶୁ କୁଠାର ଛେଲ ଚକ୍ର କାତି ।
ମାରି ଅସୁରଙ୍କ ଦେହ କାଟି ନେଲେ ବକୋତ ॥
ବିଧାତାର ବରେ ବଜ୍ର ସବୁଙ୍କର କାୟେ ।
ଦେବୀଙ୍କର ଶସ୍ତ୍ରକୁ ସେ ନ କରନ୍ତି ଭୟେ ॥
ଅସ୍ତ୍ରେ ମାରନ୍ତି ଛେଲ ଚକ୍ର ଯେ ଭୁଷଣ୍ଡି ।
ଯେ ଶସ୍ତ୍ରକୁ ଦେବୀମାନେ ଧରନ୍ତି ଦରଣ୍ଡି ॥
ଅମାନୁଅ ଦାନବ ଯେ ନ ଦୂଷନ୍ତି ରଣେ ।
ନାରଚ ବନ୍ଧନ୍ତି ପୁଣ ପୁଣ ଜଣେ ଜଣେ ॥
ଜଣେ ଜଣେ ପଡ଼ିଲେ ସେ ଦଶଦଂଶ ଉଠି ।
ମାରନ୍ତି ଲକ୍ଷିଅ ଅହିଦେହ କ୍ରୁନ୍ତ ଯଷ୍ଟି ॥
ଦେବୀଙ୍କର ଶରୀରତ ଅଟେ ବଜ୍ରସେନା ।
କପାଁ ସେ ଶସ୍ତ୍ରମାନଙ୍କୁ କରିବେ ଗଣନା ॥
ଝାଅନ୍ତି ଆହିଁ ଧାଇଁ ସେ ଗିଳନ୍ତି ଦୈତ୍ୟଙ୍କୁ ।
ଏହି ପ୍ରାୟେ ରକ୍ତମାଂସ ନ ଅଣ୍ଟଇ ତାଙ୍କୁ ॥
ମେଦା ମେନ୍ଦ ମାଂସ ତ ନ ଅଣ୍ଟେ ଖାଦ୍ୟାଖାଦ ।
ମାର୍ଗ ଅମାର୍ଗ ସମସ୍ତ ଯାଉଛନ୍ତି ଖେଦ ॥
ଘୋରରୂପା ବଜ୍ରଟାଳୀ ଅକାଶରୁ ଉଡ଼ି ।
ବେନି ପାଟି ଗୃହନ୍ତି ସେ ଦୈତ୍ୟମୁଣ୍ଡ ମୋଡ଼ି ॥
ଲହ ଲହ ଜିହ୍ୱା ଚିନ୍ଦୂରରେ ମୁଖ ମଣ୍ଡି ।
ଦୈତ୍ୟଙ୍କୁ ଧରି କରନ୍ତି କେତେ ଖଣ୍ଡି ଖଣ୍ଡି ॥
ପିଶାଚୁଣୀ ବଳ ସବୁ ଉଠିଲେ ଗଲ୍‌ଗାଜ ।
ମହାଭୟ କରି ଦୈତ୍ୟ ପଳାଇଲେ ଭାଜ ॥
ସୈନ୍ୟ ପଳାବନ୍ତେ ଏକା ରହେ ବୀରଘଣ୍ଟ ।
ଲହେ ନାରଚ ଯେଜଣ ବନ୍ଧିଲା ଦର୍ପିଷ୍ଟ ॥
ନାରସିଂହୀ ବୋଇଲେ ଲୋ ଶୁଣ ଭଦ୍ରକାଳୀ ।
ବୀରଘଣ୍ଟ ସମରେ ଲୋ ତୋହର ଏ ପାଳି ॥
ଚର୍ଚ୍ଚିକା ଚାମୁଣ୍ଡା କାଳଞ୍ଜାଇ ଉଗ୍ରତାରା ।
ଅମ୍ବିକା କଙ୍କାଳୀ ଘଣ୍ଟବନ୍ଧ ଯେ ତ୍ରିପୁରା
ବେତାଳୀ ବାଟପେଳୀ ଆଦି ଦେବୀଗଣ ଯେତେ ।
ଭଦ୍ରକାଳୀଙ୍କର କୁଟିଲ ଗଲେ ଏ ସମସ୍ତେ ॥
କଳ କଳା ରବ ଦେଇ ଅକାଶେ ଖେପିଲେ ।
କୃତାନ୍ତକ ରୂପ ଧରି ଦୈତ୍ୟଙ୍କୁ ଚାପିଲେ ॥
ଯେସନେ କଦଳୀ ବନ ଛେଦଇ ବାରଣ ।
ଅସୁର ବଳରେ ଦେବୀ ତେସନ୍ତେ କଲେ ହାଣ ॥
ସହସ୍ରେ ଯୋଦ୍ଧାର ଭୁଲେ ଯେଉଁ ବୀରଘଣ୍ଟ ।
ଦେବୀଙ୍କ ଉପରେ ଶର ମାରିଲା ଦର୍ପିଷ୍ଟ ॥
ମହା ମହା ଅସୁରେ ଯେ ସର୍ବେ ବଳବନ୍ତା ।
ଧାଡ଼କାରେ ଧାଇଁଲେ ସେ ହୋଇ ମଦମତ୍ତା ॥
ରଥ ଚଢ଼ି ତ୍ରିପୁରାଙ୍କ ଅଗେ ଦୈତ୍ୟ ନିଳ ।
ପଞ୍ଚ ସହସ୍ର ବାଣକୁ ମାରେ ମହାବଳୀ ॥
ବାଣ ଅସ୍ତ୍ରଣୁଁ ଜଗତ ଅନ୍ଧକାର ଦିଶି ।
ଏକା ନାରଚକେ ତାହା ତ୍ରିପୁରା ବନାଶି ॥
ଅସୁରଙ୍କ ଘୋର ଦର୍ପ ଦେଖିଣ ଚାମୁଣ୍ଡା ।
ଅକାଶରେ ବୁଲାଇଣ ନେଇଁ ପିଟେ ଖଣ୍ଡା ॥
ଯେସନେ ଅକାଶପରୁ ପଡ଼େ ବଜ୍ର ତାଳ ।
ବୀରଘଣ୍ଟ ରଥ ହୋଇଗଲା ବେନିଫାଳ ॥
ରଥ ଭାଜନ୍ତି ତାହାର ହେଲା ପାଦଗତ ।
ଚୌଷଠି ଯୋଗିନୀ ଧାଇଁଲେକ ପଛକତ ॥
ବାମଭୁଜ ଧଇଲେକ ଦେବୀ ଯେ ତ୍ରିପୁରା ।
ଦକ୍ଷିଣ କର ଧଇଲେ ଧାଇଁ ଉଗ୍ରତାରା ॥
ଚୂଳକୁ ଧଇଲେ ଘଣ୍ଟବନ୍ଧ ଯେ ବାସେଳୀ ।
ଖଣ୍ଡ ଖଣ୍ଡ କରି ହାଣି ଦେଲେ ଭଦ୍ରକାଳୀ ॥
କାଳଞ୍ଜାଇ ବାଘେଶ୍ୱରୀ ଏ ମିଶି ହାଣିଲେ ।
ଅସୁରକୁ ଭୂଳାରଣି ପରାୟେ ମଣିଲେ ॥
ବେନି ଚଣ୍ଡୀ ଧରି ବେନି ଭୁଜକୁ ଉପାଡ଼ ।
ଯେସନ୍ତେ ମୁଣ୍ଡା ବୃକ୍ଷ ଶିଖେ ରଙ୍ଗପାଟ ଖଣ୍ଡି ॥
ଖଣ୍ଡଗିରି ଝର ଜାଣି ବହଇ ଶୋଣିତ ।
ମନ୍ଦାର କୁସୁମ ପ୍ରାୟ ଦିଶଇ ଦଇତ ॥
ଦେଖି ଅରେ ୨ ବୋଲି ଧାଇଁଲେ ଚାମୁଣ୍ଡା ।
ଅସୁର ଉପରେ ନେଇ ପ୍ରହାରିଲେ ଖଣ୍ଡା ॥
ବେନି ଖଣ୍ଡ ହୋଇ କରି ପଡ଼େ ମହାବଳୀ ।
ଧରି ଅଟ୍ଟହାସେ କଙ୍କାଳୀ ଦେଲା ତାଙ୍କୁ ଗିଳି ॥

ତନପୁର ଜଣି ପାରେ ଯେଉଁ ବୀରଘଣ୍ଟ ।
ଇନ୍ଦ୍ରକୁହିଁ ନ ଡ଼ରଇ ଅତହିଁ ଦର୍ପିଷ୍ଟ ॥
ତେତେ଼ବଳ ଦୈତ୍ୟଯୋଦ୍ଧା ପଡ଼େ ଯହିଁ ରଣେ ।
ପଳାଇଲେ ଅପରେ ନ ରହି ଏକ ଜଣେ ॥
ଅମ୍ବରେ ଯାନ୍ତେ ଯୋଗିନୀ ପଛେ ପିଶାଚୁଣୀ ।
ଧରଣ ଗିଳ ଢ଼ଅନ୍ତି ଜୀବନ୍ତା ସେକ୍ଷଣି ॥
ଶୋଣିତା ଦେବୀ ଯୋଗିନୀ ତାଙ୍କ ପଛକତ ।
ହାଣି ହଳ ମେଦ ମେଦା ମାଂସକୁ ଭକ୍ଷନ୍ତି ॥
ନବ କୋଶ ପରଯନ୍ତେ ପାସ୍ନେଡ଼ା ପଡ଼ିଲା ।
ଘାମୁରେ କେହି ଜଣେହେଁ ବହନ୍ତା ନୋହିଲା ॥
ପନର ପଞ୍ଚାଶ ଗିଳ ଦ୍ୟନ୍ତି ଅବହେଳେ ।
ମୁଣ୍ଡ ପିଣ୍ଡ ଗୋଟିଏକ ନ ପଡ଼ିଲେ ତଳେ ॥
ରୁଧିର ମନ୍ଦାଏ କାହିଁ ନ ପଡ଼ିଲା କ୍ଷିତ ।
ଷଷ୍ଠ ସେନାପତ ରଣେ ହେଲେ ବିନଶ୍ୟତ ॥
ସେ ଦେବୀଙ୍କ ପାଦତଳେ ରହୁ ମୋର ମତ ।
ଶାରଳାଦାସ ଏ କଥା ଭଣିଲେ ଭବାଗତ ॥



ବୈଲୋଚନ ଚରିତ ।

ବଦସୃନ୍ତି ଶୁକମୁନି ଶୁଣ ମହାରଥା ।
ତଦପରେ ହୋଇଲାକ ପୁଣି ଯେଉଁ କଥା ॥
ପଶ୍ଚତେ କାଳ ବିକାଳ ଦୂତେ ଲୁଚିଥିଲେ ।
ପଳାଇ ମହିଷାସୁର ଅଗ୍ରତେ କହିଲେ ॥
ଶୁଣ ଦେବ ସାବଧାନେ ଦୈତ୍ୟକୁଳଶ୍ରେଷ୍ଠ ।
ସମରେ ପଡ଼ିଲେ ତୋର ଯେତେ ଥିଲେ ଆଷ୍ଟ ॥
ରକ୍ତବୀଜ ମଧୁ କଇଟଭ ବୀରଘଣ୍ଟ ।
ବିଡ଼ାଳାକ୍ଷ କାନ୍ତିମାଳା କାଳଦଣ୍ଡ ଭଟ୍ଟ ॥
ଏମାନଙ୍କ ସଙ୍ଗେ ଯେତେ ବଳ ଘେନିଗଲେ ।
ସମସ୍ତେ ଦେବୀମାନଙ୍କ ରଣେ ପ୍ରାଣ ଦେଲେ ॥
ଅସ୍ଥି ଚର୍ମ ପିଣ୍ଡ ରକ୍ତ ନ ରହିଲା କିଛି ।
ରକ୍ତ ଶୋଷାକଠାରୁ ସେ ଲେହି ଗଲେ ପୋଛି ॥
ଏମନ୍ତ ବାରତା ପାଇ ଦୈତ୍ୟକୁଳସ୍ୱାମୀ ।
ଜଗତରୁ ପଡ଼ିଲା ସେ ନିର୍ଘାତ ପରାୟେ ॥
କୋଳ କରି ଧଇଲା ସେ କାଳବିମୋଚନ ।
ମୁଖେ ଜଳ ସିଞ୍ଚି ବିଞ୍ଚି କଲା ସଚେତନ ।
ସୁସ୍ଥ ହୋଇ କରି ପୁଣି ମୈଷାସୁର ବସି ।
ଶେଷ କାଳ ପରାୟେକ ନିଶ୍ୱାସ ପ୍ରକାଶି ॥

ଘନ ଘନ ଛାଡ଼ଇ ଯେ ନିଶ୍ୱାସ ପବନ ।
ପେଣ୍ଡୁ ଏହିକ୍ଷଣି ଛାଡ଼ିଯିବ କି ଜୀବନ ॥
ମୁଖରେ ସିଞ୍ଚିଲେ ଆଣି ସୁଶୀତଳ ପାଣି ।
ଅସ୍ଥାନ ଉପରେ ନେଇ ବସାଇଲେ ପୁଣି ॥
ଅସ୍ଥାନ ତଳରେ ଲୋକ ପ୍ରବୃତ ଗହଳ ।
ମେଘ ଉର୍ମିଳା ଏମାନେ ବସିଲେ ସକଳ ॥
ଦ୍ୱିଜଗନ୍ଧ ନମିସ୍ୱଦ ସକଳେ ବସିଲେ ।
ସବୁଲୁହିଁ ଗୃହିଁକରି ମୈଷାସୁର ବୋଲେ ।
ଅଶ୍ରୁ ମାଡ଼ି ବସି ଭୂମିପରେ କର ହାଣି ।
ଅପଣାର ଲଲାଟରେ ତାଡ଼େ ବେନି ପାଣି ॥
ବୋଲେ ଉତ୍ପତ୍ତିହେଲି ମୁଁ ବ୍ରହ୍ମଅଂଶ ଘେନି ।
କୁଳ ଶୁଦ୍ଧ ପିତାମହ କଶ୍ୟପ ଯେ ମୁନି ॥
ଦକ୍ଷଙ୍କ ସୁତା ସିହିକାନାମେ ଅଦ ପାଟ ।
ଦଇବ ବପାଙ୍କୁ ହେଲେ ସୁରସେ ଦର୍ପିଷ୍ଟ ॥
ପୁଣି ବବାଘ ହୋଇଲେ ଚନ୍ଦ୍ର ଅଉ ସୂର୍ଯ୍ୟ ।
ତେଣୁତରି ଛାଡ଼ିଗଲା ସ୍ୱର୍ଗ ମୁଖାମ୍ବୋଜ ॥
ଜମ୍ଭ ଦଇତକୁ ବଧକଲା ମଘବାନ ।
ତେଣୁ କରି ଘେନିଲା ସେ ଅମର ଭୁବନ ॥
ଅମର ସ୍ୱର୍ଗକୁ ମନେ କରିଲି ମୁଁ ବାଞ୍ଛା ।
କାମ୍ୟ କନ୍ଦର୍ପ କରଣ ମାଗିଲି ସେ ଇଚ୍ଛା ॥
ଅମର ବର ପୁଣି ଯେ ମାଗିଲି ବ୍ରହ୍ମାଙ୍କୁ ।
ବିଷ୍ଣୁ ହସ୍ତେ ନ ମରିବ ବୋଇଲି ତାହାଙ୍କୁ ॥
ରୁଦ୍ର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ପବନ ହସ୍ତେ ।
ଯମ ଅନଳ ରୁ ଅପେ ନ ଜିଣିବୁ ମୋତେ ॥
ପ୍ରଳୟ କାଳ ପର୍ଯ୍ୟନ୍ତେ ନ ହେବ ମୁଁ ବୃଦ୍ଧ ।
କେହି କରି ନ ପାରିବେ ମୋର ରୁଲେ ଯୁଦ୍ଧ ॥
ନାଗପାଶ କାଳପାଶ ଜଳପାଶ ତନ ।
ଏମାନଙ୍କେ ବଧ ମୁଁ ନ ହେବ ପଦଯୋନି ॥
ସୁଦର୍ଶନ ଚକ୍ର କାଳଚକ୍ରାଦ ଭୁଷଣ୍ଡି ।
ଏମାନ ପଡ଼ ମୋ ଦେହ ନୋହିବାକ ଖଣ୍ଡି ॥
ବ୍ରହ୍ମଶର ପାଶୁପତ ନାରାୟଣ ଶର ।
ଏମାନେହେଁ ନ ଭେଦିବେ ମୋହର ଶରୀର ॥
ବ୍ରହ୍ମା ସତ୍ୟ କରିଦେଲା ମୁଁ ଯାହା ମାଗିଲି ।
ସ୍ତ୍ରୀ ହସ୍ତେ ବଧ ନୋହିବ କଥା ନ ବୋଇଲି ॥
ଏହା ଶୁଣି ବୋଇଲାକ ସେ ଅନ୍ଧକ ମନ୍ତ୍ରୀ ।
ନରୁ ଗର୍ବେ କରିବ ତୁ ନ କଲୁ ନୃପତି ॥

ଶଙ୍ଖାସୁର ବୋଲି ଥିଲା ତୋ ଉପର ବଂଶେ ।
ହରିଲା ବ୍ରହ୍ମାଙ୍କ ବେଦ ପୋଥି ଗର୍ବବଶେ ॥
ଲୁଚି ରହିଲା ଯେ ଯାଇଁ ସମୁଦ୍ର ଭିତରେ ।
ତହିଁକି ମତ୍ସ୍ୟ ରୂପଟି ହେଲେ ଦାମୋଦରେ ॥
ମହାମତ୍ସ୍ୟ ହୋଇ ବିଦାରିଲେ ତାର ବୁକୁ ।
ବେଦ ପୋଥି ଦେଲେ ନେଇ ସେ ପିତାମହଙ୍କୁ ।
ଶଙ୍ଖାସୁର ପୁତ୍ର ଥିଲା ସେ କୁଣ୍ଡଳାସୁର ।
କୂର୍ମ ରୂପେ ମାତ୍ର ବଧିଲେକ ତା ଉପର ॥
କୁଣ୍ଡଳାସୁର କୁମର ଅବନ କୌଣପ ।
ବାଳରୂପେ ନାରାୟଣ ଭାଙ୍ଗିଲେ ତା ଦର୍ପ ॥
ଅବନ ଦଇତ ପୁତ୍ର ହିରଣ୍ୟକଶିପୁ ।
ନରସିଂହ ରୂପେ ବିଦାରିଲେ ତାର ବପୁ ॥
ହିରଣ୍ୟର ପୁତ୍ର ଉପୁଜିଲା ପ୍ରହ୍ଲାଦ ।
ମହା ବଇଷ୍ଣବ ସେହୁ ଘଟେ ଅବକାଦ ॥
ଅନେକ ହିଂସା ତାକୁ କଲା ହିରଣାକ୍ଷ ।
କୋପେ ସ୍ତମ୍ଭୁ ବାହାରିଣ ବିଦାରିଲେ ବକ୍ଷ ॥
ସେ ପ୍ରହଲ୍ଲାଦର ତହିଁ ଏମନ୍ତ ବୁଝିଲୁଁ ।
ଅସୁର ବଂଶ ବୁଡ଼ିଲା ଅଟମ୍ଭ ନସ୍ତରିଲୁଁ ॥
ସେ ପ୍ରହଲ୍ଲାଦର ପୁତ୍ର ହେଲା ବୈରୋଚନ ।
ତା ଯୁଦ୍ଧରେ ପଳାଇଲେ ଦେବଗଣମାନ ॥
କରତାଙ୍କୁ ସେବାକରି ମାଗିଲା ସେ ବର ।
ନୋହିବି ମୁଁ ଦେବ ଦାନବରେ ଅପହାର ॥
ବୋଇଲା ବିଷ୍ଣୁ ଯେ ସ୍ୱୟଂ ଅଛି ଅବତର ।
ତାହାକୁହିଁ ସମରେ ମୁଁ ଜିଣିବାଇଁ ଧର ॥
ସ୍ୱପନରେ ନ ମରିବି ମୁଁ ଦିନେ ନ ମରିବି ।
ଘରେ ନ ମରିବି ବାହାରରେ ନ ମରିବି ॥
ଏମନ୍ତ ବର ମାଗିଲା ବ୍ରହ୍ମାଙ୍କୁ ସେବିଣ ।
ତଥାସ୍ତୁ ହେଉ ବୋଇଲେ ସାବିତ୍ରୀରମଣ ॥
ଇନ୍ଦ୍ରଯମ ପବନାଦି କବା ବିଷ୍ଣୁ ହେଉ ।
ପୁରୁଷ ରୂପରେ ତୋତେ ଜିଣନ୍ତା କେ ନୋହୁ ॥
ଏତେ ଦୁରପଦ ବର ମାଗି ବୈରୋଚନ ।
ତାହା ଭୟେ ପଳାଇଲେ ଦେବଗଣମାନ ॥
କରି କଲବଲ ଲୁଚି ହେଲେ ମହାଜଳେ ।
ବିଷ୍ଣୁଙ୍କୁ ଗୁହାରି କଲେ ଜୀବନ ବିକଳେ ॥
ଦେବତାଙ୍କର ବିକଳ ଶୁଣି ଦାମୋଦର ।
ସ୍ତ୍ରୀ ରୂପ ହୋଇଣ ଦେବ ହେଲେ ଅବତାର ॥
ସ୍ୱରୂପେ ତ୍ରୈଲୋକ୍ୟ ମୋହୁଅଛି ସେ ଯୁବତୀ ।
ନାମକୁ ବନ୍ଧବେ ସେହୁ ଅଦ୍ଭୁତେ ମାଳତୀ ॥
କଳେନ୍ଦ୍ରୀ ନାମ ବନରେ ମାୟାରୂପ ଧରି ।
ମହା ଆନନ୍ଦରେ ସେହୁ ବନେ ଅବତରି ॥
ବୈରୋଚନ ଅଇଲା ମୃଗୟା ବନେ ହାଦେ ।
ଶୁଭେ ପ୍ରବେଶ ହୋଇଲା ସେହୁ ବନେ ହାଦେ ॥
କୁମ୍ଭ ଶୁକ୍ଳପକ୍ଷ ତ୍ରୟୋଦଶୀ ଅର୍କବାର ।
ପୁଷ୍ୟା ଭୋଗାନ୍ତେ ଅଶ୍ଳେଷା ଦେଖି ଯେ ପ୍ରହର ॥
ଗର ନାମରେ କରଣ ପ୍ରୀତି ନାମେ ଯୋଗ ।
ମାଳତୀକୁ ଅସୁର ଯେ ଦେଖି ବନମାର୍ଗ ॥
ନାରାୟଣ ହୋଇ ଛନ୍ନ ତ୍ରିସ୍ୱରୂପାଶ୍ୱ ।
ପୁରୁଷ ମାନଙ୍କ ଜୀବ କେ ତହିଁ ଉରୁର ॥
ତ୍ରଇଲୋକ୍ୟ ମୋହୁଅଛି ରୂପେଣ ମାଳତୀ ।
ଦେଖି ତାକୁ କାମ ମୋହ ଲାଗିଲା ତତତ ॥
କାମର ଲୁବୁଧେ ହେଲା ବହୁତ ବିନୟେ ।
ଦନ୍ତେ ତୃଣ ଘେନି ପ୍ରଣିପତ୍ୟ ମହାବିନୟେ ॥
ଅସ୍ତ୍ରାବେ ଅନ୍ଧକ ମନ୍ତ୍ରୀ କହିଲା ଏ କଥା ।
ତୁମ୍ଭ ବଂଶେ ହୋଇଛନ୍ତି ଏମନ୍ତ ବ୍ୟବସ୍ଥା ॥
ମଲେଣି ଏବେ ସମସ୍ତେ ଚଣ୍ଡ ମୁଣ୍ଡ ବେନି ।
ଶୁମ୍ଭ ନିଶୁମ୍ଭ ନଇଲେ ଶଣି ଦେହ ଘେନି ॥
ଷଷ୍ଟ ସେନାପତି ଗୁଣ ହୋଇଲେ ନିଧନ ।
ମତ୍ତଗର୍ବ ହୋଇଣ ଯେ ସରିଲେ ଏମାନ ॥
ମୋହ ପାଶରେ ଏମାନ ହୋଇଲେ ବନ୍ଧନ ।
ଆପଣେ ଏବେ ଲଢ଼ିବୁ ମରାଇଣ ସୈନ୍ୟ ॥
ବୁଝି ନ ପାରିଲୁ ରାଜା ଏତେନେକ କୃତ୍ୟ ।
ଅଦ୍ଭୁତେ ନାରୀଏ କାହିଁ ବସିଛି ପର୍ବତ ॥
ଏତେ ଏତେ ଯୋଦ୍ଧାମାନେ ପଡ଼ିଲେଣି ରଣେ ।
କାମେ ଲୋଭ କରଣ ସେ ନାଶ ଗଲେ ପ୍ରାଣେ ॥
ତୁମ୍ଭଙ୍କୁ କି କହିବି ବା ନ ଜାଣ ଅପଣ ।
ମନ୍ତ୍ରୀମନ୍ତ୍ରଣ ତୁ ହରାଇଲୁ ବଡ଼ ପଣ ॥
ଏହା ଶୁଣିଣ ମହିଷା ଅସୁର ବୋଇଲା ।
ମାଳତୀ ବୈରୋଚନର କେମନ୍ତ ହୋଇଲା ॥
ଅନ୍ଧକ ମନ୍ତ୍ରୀ ତା ଶୁଣି ବୋଇଲା ଏମନ୍ତ ।
ଗୁରୁଯୁଗରେ ଦୁର୍ଲଭ ନାରୀଙ୍କ ଚରିତ ।
ଶୁଣ ହୋ ମହିଷାସୁର ଏ ମୋର ଉତ୍ତର ।
ଅନେକ ଚାତୁର୍ଯ୍ୟ ଦେଖି ସେ ଅସୁରେଶ୍ୱର ॥

ବଇଲୋଚନ ବଚନ୍ତୁ ଦେଖିଣ ମାଳତୀ ।
ବୋଇଲେ ତୁ ସତ୍ୟକଲେ ହେବ ତୋ ଯୁବତୀ ॥
ଏ ସତ୍ୟ କରହ ସଖି ବେଗକର କହ ।
ଦହୁ ପକାଉଛି ମୋର ଦେହକୁ ବଦେହ ॥
ମାଳତୀ ବୋଇଲା ତୁହେ। ଶୁଣ ଦଣ୍ଡଧାର ।
ମୋହ ବିନା ନ ଛୁଇଁବୁ କେବେ ଅନ୍ୟ ନାରୀ ॥
ସତ୍ୟ କର ବୋଲେ ସେହୁ ଏକା ତୁ ଭାରଯା ।
ଆଉ ଯୁବତୀମାନଙ୍କୁ କଲି ମୁହିଁ ତେଜ୍ୟା ॥
ଏମନ୍ତ କହି ସେ କନ୍ୟା ଅଇଲ ଯେନାଇଁ ।
ଆଶ୍ୱାସ କରି ହାନ୍ଦୋଳାଉପରେ ବସାଇ ॥
ଶୁଣ ଯେତେକ ଅବସ୍ଥା ହେଲା ବୈଲୋଚନ ।
କହିବୁକେ କହିବାକୁ ବେଳ ନାହିଁ ଜାଣ ॥
ସେ ରାଜାର ମନ୍ତ୍ରୀ ମୁହିଁ ହୋଇଥିଲି ଏକା ।
ମୋତେ ଦେଖାଇଲା ନାରୀ ରତନ ନାୟିକା ॥
ମୁଁ ମୋହେ ବଶ ହୋଇଲି ତାର ରୂପ ଦେଖି ।
ଜଗତମୋହନୀ ସେହି ଶରଚନ୍ଦ୍ରମୁଖୀ ॥
ନବଦ୍ୱୀପ ସାଧିଲାକ ଯେଉଁ ମହାରଥୀ ।
ଛାଡ଼ିଲାକ ସେ ରାଜନ ରାଜ୍ୟରାଷ୍ଟ୍ର ଚିନ୍ତା ॥
ମୋତେ ସମର୍ପିଲା ସବୁ ତାର ରାଜ୍ୟଭାର ।
ମୁହିଁ ପାଳୁଥିଲି ତାହା ଅଧୀନ ସଂସାର ॥
ଅନ୍ତରତେ ବନ୍ଧିଲା ସେ ମାଳତୀର ବଶେ ।
ଦିବ ରାତ୍ର ନ ଛାଡ଼ଇ ଥାଇ ତାର ପାଶେ ॥
ଏସନେକ ଭାବରେ ଯେ ବଢ଼ିଲା ପୀରତି ।
ସମୟରେ ଗର୍ଭବତୀ ହୋଇଲା ମାଳତୀ ॥
ଏକେହେଁତ ସଉଭାଗୀ ପୁଣି ଗର୍ଭବାସୀ ।
ଅନେକ ଭାବେ ଦଇତ ମାଳତୀକୁ ତୋଷି ॥
ଅନେକ ଉତ୍ସବ ସେହୁ କଲା ନରନାଥ ।
ବହୁତ ସମ୍ପତ୍ତିମାନ ଦେଲା ଅଭ୍ୟାଗତ ॥
ଯଜ୍ଞ ହୋମକର୍ମ ଆଉ ବନ୍ଦାପନା ବିଧି ।
ଅରିଷ୍ଟି ଶାନ୍ତି କରାଇ କଲା କର୍ମ ସିଦ୍ଧି ॥
ଦେବା ଦେବୀଙ୍କି ଶୀତଳ ଦେଲା ବଳଭୋଜା ।
ଅନେକ ଦାନ ଧ୍ୟାନ ସେ କଲା ମହାରାଜା ॥
ଏଭିଥିରେ ମାଳତୀ ଯେ କରେ ଗୃହବାସ ।
ଅତି ଉତ୍ସବେ ହୋଇଲା କ୍ରମେ ନବମାସ ॥
ବୃଷମାସ କୃଷ୍ଣପକ୍ଷ ଏକାଦଶୀ ଦିନ ।
ଦୋଳେ ବସାଇ ମାଳତୀ ବଦେ ବୈଲୋଚନ ॥

ପ୍ରୀତି ଉପୁଜାଇ କରି ବୋଇଲା ମାଳତୀ ।
ମୋତେ ମୁଗ ଚଉଁରଏ ଦେବ ପ୍ରାଣପତି ॥
ବୈଲୋଚନବୋଲେ ତୋତେକେମନ୍ତେ ଛାଡିବ ।
ଏକାକର ସଖି ବେଣ୍ଟ ବନୋଦକୁ ଯିବ ॥
ମାଳତୀ ବୋଇଲା ତୁମ୍ଭେ ଶୁଣ ଅହେ ନାଥ ।
ତୋତେ ଛାଡ଼ିବାକୁ ମୋର ନ ବଳଇ ଚିତ୍ତ ॥
ତୁମ୍ଭେ ଯେବେ ବେଣ୍ଟ ବନୋଦକୁ ଯିବ ବନ ।
ଆସିବାଯାଏତ ନାହିଁ ମୋ ସ୍ନାନ ଭୋଜନ ॥
ଶୁଣ ହୋ ମହିଷାସୁର ନାରୀଙ୍କ ଚରିତ ।
ପ୍ରୀତିକରି ପଛେ ହୁଅନ୍ତି ସେ ବିଶ୍ୱାସଘାତ ॥
ମାରିବା ନିମନ୍ତେ ସେହୁ ପାଞ୍ଚ କୁଟ ଛନ୍ଦ ।
ଅବୋଧେ ବୋଧ ହୋଇଲା ସେ ଅସୁରଇନ୍ଦ୍ର ॥
ଭୋନାଥ ତୁ ଯେବେ ଯିବୁ ଅଗମ୍ୟ ବନସ୍ତେ ।
ତୋର ପ୍ରମାଦକୁ ମୁହିଁ ଜାଣିବି କେମନ୍ତେ ॥
ବୈଲୋଚନ ବୋଲେ ମୋତେ ଧାତାଦେଲାବର ।
ବ୍ରହ୍ମାଣ୍ଡ ଧାରଣା ମୁହିଁ ଅଟେ ବୀରବର ॥
ଅସ୍ତ୍ର ଶସ୍ତ୍ର ଅଘାତରେ ମୋର ନାହିଁ ମୃତ୍ୟୁ ।
କହିବି ବିଶ୍ୱାସ କଥା କରିଥାଅ ହେତୁ ॥
ଯେଉଁ ଦିନ ବ୍ରହ୍ମା ଆସି ମୋତେ ଦେଲା ବର ।
ବୋଇଲା ଚାରିଯୁଗେ ତୁ ହୋଇବୁ ଅମର ॥
ଯମର କାଳଦଣ୍ଡରେ ତୁ ହେବୁ ଅବଧ ।
ଇନ୍ଦ୍ର କୁବେର ଜିଣିବୁ କଲେ ମଧ ଯୁଦ୍ଧ ॥
ଅନଳରେ ନ ପୋଡ଼ିବୁ ଶସ୍ତ୍ରେ ନ ଛିଡ଼ିବୁ ।
ପ୍ରଳୟ କାଳେ ଅଗାଧ ଜଳେ ନ ବୁଡ଼ିବୁ ॥
ଚନ୍ଦ୍ରମା ତପନ ବାୟୁ ଦେବ ଅଧିକାର ।
ନର ଲୋକରେ କେ ତୋତେ ନୋହିବେଟି ସର
ଅକାଟ ଅଭୁଟ ପୁଣି ହୋଇବ ତୋ କାୟା ।
ଭୂତ ଭବିଷ୍ୟ ଜାଣିବୁ ମାୟା କି ଅମାୟା ॥
ରାତିରେ ନ ମରିବୁ ତୁ ଦିନେ ନ ମରିବୁ ।
ଘରେ ନ ମରିବୁ ବାହାରରେ ନ ମରିବୁ ॥
କେବେହେଁ ବଧ ନୋହିବୁ ତୁ ବିଷ୍ଣୁର ହସ୍ତେ ।
କେ ମୋତେ ସମାନ ଆନଜଣ ପାରିବଥେ ॥
ବଇଲୋଚନ ବୋଇଲା ଶୁଣ ଗୋ ପଙ୍କାତ ।
ପିଙ୍ଗଳ କେଶ ଯେ ଅଛି ଏ ମୋହର ମାଥ ॥
ନୋହିବ ଦିବସ ରାତ୍ର ଘର ବାହାରହିଁ ।
ସ୍ତ୍ରୀ ହୋଇଣ ଯେବେ ତାହା ଉପାଡ଼ି ପାରଇ ॥

ତେବେ ସେ ମୋହର ପ୍ରାଣ ନେବ ଜଳୁରାଣ ।
ଆନ ରୂପରେ ମୋହର ବାଞ୍ଛିନା ମରଣ ॥
ତୁ ମୋ ପ୍ରିୟତମା ଯେଣୁ କହିଲଇଁ ତୋତେ ।
ଏସନ କରଣ ଯାବା ସନ୍ଦଅଛି ମୋତେ ॥
ଶୁଣିଣ ଅତି ଆନନ୍ଦ ହୋଇଲା ମାଳତୀ ।
ସେ ବୋଲେ ଯାଅହେ ରାଜା ପଣ୍ଡିଲା ମୋ ଭ୍ରାନ୍ତି ॥
ଶୁଣି ରାଜେନ୍ଦ୍ର ମାଳତୀର ମୁଖେ ଚୁମ୍ବ ଦେଲା ।
ଆଲିଙ୍ଗନ କରି ଇଚ୍ଛାସୁଖେ ଚେନ୍ଦ୍ର ଗଲା ॥
ଅଶ୍ବେକ ବନ୍ଧିଣ କରେ ଘେନିଣ କୃପାଣ ।
ଭ୍ରୁକୁ ରଙ୍ଗ ନାରାଚ ଯେ ଆଚର କମାଣ ॥
ଶୁଣ ନୈଷଧୁର ମାୟାକଲା ସେ ମାଳତୀ ।
ବନଜୀବମାନଙ୍କୁ ନ ଦେଖିଲା ନୃପତି ॥
ଏସନେକ ବଧିକଲା ଦଇବ ନିର୍ମାଣି ।
ବଇଲୋଚନ ମାଥକୁ ପେଷିଲା ଉକୁଣି ॥
ସୁକୁମାର ଶରୀର ତା କମ୍ପିଲା ସେକ୍ଷଣି ।
ନଗ ଦ୍ୱାର ମୁଣ୍ଡ କୁଣ୍ଡିଅଛି ନୃପମଣି ॥
ଜୀବ ଲୋଡ଼ି ନ ପାଇଣ ବହୁ ବନ ଭ୍ରମି ।
ବାହୁଡ଼ି ଆଇଲା ବେଗେ ଦୈତ୍ୟକୁଳ ସ୍ୱାମୀ ॥
ବନୁ ଆସିଣ ଅସୁର ହେଲା ନିଜ ପୁର ।
ପ୍ରବେଶ ହୋଇଲା ଯାଇଁ ମାଳତୀ ଅଗର ॥
ବୋଇଲା ସଖି ରେ ନ ଦେଖିଲି ଜୀବମାନ ।
ନ ରହିଲି ତୋହଠାରେ କହିବା ବଚନ ॥
ଶୁଣି ସେ ବଚନ ଧୀରେ ବୋଇଲା ମାଳତୀ ।
ମୋତେ ମୃଗ ହିଂସାତ ନୋହିଲା ପ୍ରାପତି ॥
ଏବେ ସ୍ନାନ ଭୋଜନାଦି କର ନରସାଇଁ ।
ଶୁଣି ମାଳତୀ ବଚନେ ଗଲା ବେଗ ହୋଇ ॥
ସ୍ନାନ ଭୋଜନ ସାରିଣ ଅମେନ କଲା ।
ସୁଖେ ଯାଇଁ ମାଳତୀର କଡ଼ରେ ବସିଲା ॥
ବଇଲୋଚନ ମାଳତୀ ଆଗେ ବସି କହି ।
ଚିତ୍ତ ମୋର କମ୍ପମନ ଶୁଣ ପ୍ରାଣସହି ॥
ପ୍ରଣୟ ରସରୁ ମନ ଛାଡ଼ିଲା ନୃପତି ।
ବୋଲେ ମୋ ମଥାରେ କସ କଣ୍ଡ ଗୋ ମାଳତୀ ॥
ମାଳତୀ ବୋଲେ ବିଶ୍ରାମ କର ଦେବାଶ୍ରେଣ୍ଡେ ।
ଉକୁଣୀତ ଉଡ଼ପଡ଼ି ହେଲା ଭୁମ୍ବ ଝୁଣ୍ଡେ ॥
ଶ୍ରୀହସ୍ତେ ଦାନ୍ତ ପାନ୍ତିଯୁ ସେନ ଉକୁରାଣୀ ।
କେଶ ମଧ୍ୟ ବଦାଇଣ ମାରନ୍ତି ଉକୁଣୀ

ଘରର ବାହାର ଅନ୍ଧାରକୁ କଲ ପିଠି ।
ମାଳତୀ ଦ୍ୱିଜାନୁ ମଧ୍ୟେ କାଳନିଦ୍ରା ଘୋଟି ॥
ନଖପୃଷ୍ଠେ ଥୋଇଣ ସେ ଉକୁଣୀକୁ ମାରି ।
ବେଲଅସ୍ତ୍ର ହେବାକୁ ଯେ ଅଛି ଏକ ଧୂଇ ॥
ଏକୁଁ ଏକ ପାବଚ୍ଛରେ ବସିଅଛି ସଖୀ ।
ଦୁହିଣା ତଳକୁ ବୋଲି ବଣେଷି ଅସୁର ॥
ଗଣ୍ଡିଠାରୁ ଅଙ୍ଗ ଦେଖାଇଲା ବାହାରକୁ ।
କଟିଭଙ୍ଗ ମାନ ପଡ଼ିଅଛି ଭିତରକୁ
ମାଳତୀ ବୋଲଇ ହେଲା ଗୋଧୂଳିର ବେଳା ।
ବଇଲୋଚନ ବୋଇଲା ନ କର ତୁ ହେଳା ॥
ମାରି ମାରି ସଖି ଆଗୋ ହୋଇ ଦୃଢ଼ ମନ ।
ସହି ନ ପାରେ ମୁଁ ଉକୁଣୀର ତାପମାନ ॥
ଉକୁଣୀ ଲୋଡ଼ୁ ଲୋଡ଼ୁ ସେ ଖୋଜ ମୁଣ୍ଡବାଳ ।
ଠାବ କରି ମାଳତୀ ଯେ ପାଇଲା ପିଙ୍ଗଳ ॥
ମୁଖ ପୋତ ଶୋଇଛି ସେ ହୋଇ ମତ୍ତଗଜ ।
ଭଲ କରି ମାଳତୀ ଯେ ବାଳ କଲା ଠାବ ॥
ନଖରେ ବଇଲୋଚନ ହଏ ଠାରି କରି ।
ମାରି କନା ସଙ୍ଗାତ ଗୋ ତାକୁ ଦୃଢ଼େ ଧରି ॥
ରହ ରହ ଅହେ ସ୍ୱାମି ମାରୁଅଛି ମୁହିଁ ।
ବଇଲୋଚନ ବୋଲେ ତୋ ପରମୁଣ୍ଡା ଯାଇଁ ॥
ଶୁଣ ରାଜେନ୍ଦ୍ର ଘର ନୁହେ ନୁହଇ ବାହାର ।
ରାତି ନୁହଇ ଦିବସ ନୁହଇ ସେଠାର ॥
ମାଳତୀ ବୋଲେ ମାରୁଛି ଉଉଣୀକ ମୁହିଁ ।
ବଇଲୋଚନ ବୋଲେ ଗୋ ମାରି ପ୍ରିୟସହି ॥
ଶୁଣ ପରୀକ୍ଷ ରାଜନ ଶୁକଦେବ ବୋଲେ ॥
ମହିଷାସୁର ଅଗ୍ରେ ଅନ୍ଧକ କହିଲେ ॥
ବିଶ୍ୱରୂପ ପ୍ରକାଶିଲା ଗଗନ ମଣ୍ଡଳ ।
ଶ୍ରୀକରେ ଶୁକ୍ରଅଇଲେ ମୁଖଭେଦ ବାଳ ॥
ଅଚେତନ ବେଲୋଚନ ମଦ୍ୟରସ ଖାଇ ।
ମାଳତୀ ଉରେ ତା ପିଠି ପରେ ପାଦଦେଇ ॥
ହୁଁକାର ଶବଦ ଘାତେ କମ୍ପିଲା ବ୍ରହ୍ମାଣ୍ଡ ।
ଗୃପନ୍ତେ ପ୍ରାଣ ତାର ଛାଡ଼ିଗଲା ପିଣ୍ଡ ॥
ବିଶ୍ୱରୂପ ଧରି ଉପାଡ଼ିଲା ତାର କେଶ ।
ଗର୍ଜନ ନାଦ କରିଣ ପଡ଼ିଲା ରାକ୍ଷସ ॥
ଶୁଣ ନୃପତି ଅନ୍ଧକ ମନ୍ତ୍ରୀ ଯେ କହିଲା ।
ସ୍ତ୍ରୀର ବିଶ୍ୱାସରେ ବୈଲୋଚନ ନାଶଗଲା ॥

ତେବେ ଏମନ୍ତ କରଣ ଦିଅନ୍ତି ସେ ବର ।
ଦେଖିଲୁ କଥା ନେ ଏହୁ ଅଟଇ ମୋହର ॥
ଦେବଙ୍କ ଦୁର୍ଲଭ ଶୁମ୍ଭ ନିଶୁମ୍ଭଙ୍କ ବର ।
ଏକକର ଦିଅନ୍ତେ ସେ ଅରେକର ଶିର ॥
ତେବେ ସେ ନିଧନ ହୁଅନ୍ତି ଯେ ଶୁମ୍ଭ ନିଶୁମ୍ଭ ।
ଏକଥା ଜାଣିବାକୁ ସେ ସକ୍ଷମ ହୋଇବ
ଏ ଦୁହିଙ୍କ ମୃତ୍ୟୁ କରାଇଲା ସେ କପଟେ ।
ଶିରେ କର ଦିଆଇଣ ମରାଇଲା କୂଟେ ॥
ତ୍ରୈଲୋକ୍ୟେ ଅଶକ୍ୟ ରକ୍ତବୀଜର ମହିମା ।
ତାକୁ ବଧ କରିବାକୁ ଆନ ନାହିଁ କ୍ଷମା ॥
ଦାନବ ବୋଲି ଜନ୍ମନ୍ତୁଁ ନୋହୁ ଅମ୍ଭେ କଛ ।
ଜାତ ହୋଇଲେ ଅବଶ୍ୟ ମୃତ୍ୟୁ ଏକ ଅଛ ॥
ସଢେକ ହେଲେ ଅବଶ୍ୟ ହୁଅଇ ଦିବସ ।
ସମ୍ପଦେକ ହୋଇଲେ ବିପଦେକ ଅବଶ୍ୟ ॥
ଅନ୍ଧକ ମନ୍ତ୍ରୀ ବୋଇଲା ଦେବଙ୍କ ଚତୁର ।
ସ୍ତ୍ରୀ ରୂପରେ ହୁଅନ୍ତି ଯେ ବିଷ୍ଣୁ ଅବତାର ॥
ମନ୍ତ୍ରୀ ବଚନେ ମହିଷାଅସୁର ବୋଇଲା ।
ଏଯେତନକ ହିତଯାତ ଜାଣନ୍ତା ନୋହିଲା ॥
ସ୍ତ୍ରୀରୂପ ହୋଇକରି ଯେ ସୈନ୍ୟ ମୋର ଭକ୍ଷି ।
କେ ରଖନ୍ତା ନୋହିଲା ମୁଁ ହେଲି ନିରମାଣି ॥
ମହିଷା ବୋଲଇ ମୋତେ କେ କରିବ ରକ୍ଷା ।
ସେ ସ୍ତ୍ରୀକୁ ମାରି ପୂରିବ ମୋର ମନବାଞ୍ଛା ॥
ନୋହିଲେ ରାଜ୍ୟଭାର ମୁଁ ତେଜି ପଳାଇବି ।
ଯାଇଁ କେବଣ ସମୁଦ୍ରେ ଲୁଚଣ ରହିବି ॥



## ଧୂମ୍ରଲୋଚନ ପ୍ରଭୃତି ଅଷ୍ଟାବିଂଶତି ସେନାପତିଙ୍କର ଯୁଦ୍ଧେ ଗମନ ଓ ମୃତ୍ୟୁ ।

ରାଜାର ବିକଳ ଦେଖି କାଳବିମୋଚନ ।
ଯମଘଣ୍ଟ କମ୍ବାସୁର ସେ ଧୂମ୍ରଲୋଚନ ॥
ଚଣ୍ଡାସୁର ସୁପ୍ରଚଣ୍ଡାସୁର ଧକ୍କାସୁର ।
ଶତଶିର ଯେ ସହସ୍ରଶିର ରକ୍ତାସୁର ॥
ଜପାସୁର ଧପାସୁର ଭସ୍ମର ଦଇତ ।
ବଜ୍ରାଙ୍ଗ ମହାଗର୍ଜନ କରି ନିରଘାତ ॥
ବାଣାସୁର ସହ ବାତାସୁର ମଣ୍ଡପାଳ ।
ଘୋଡ଼ା ଗଜମୁଖା ଓଷ୍ଠମୁଖା ଅନ୍ତ୍ରମାଳ ।
ଶୃଗାଳ ବଦନାସୁର ଗଧମୁଖା ବୀର ।
ମଞ୍ଜାରମୁଖା ଶଶାଣ୍ଡୋ ମୁଖ ଧନ କେଶ ॥
ଏମନ୍ତ ସଙ୍ଗତେ ଅଠାଇଶ ସେନାପତି ।
ସେନ କାଳବିମୋଚନେ ଉଠିଲା ତତ୍ପତ ॥
ବୋଇଲେ ଅନ୍ଧକ ମନ୍ତ୍ରୀ ଭୂଲାଏ ତୁମ୍ଭଙ୍କୁ ।
ଅମ୍ଭେ ଏବେ ଯିବୁ ସ୍ତ୍ରିଶରକୁ ଆଣିବାକୁ ॥
ମହିଷାସୁର ବୋଲେ ମୁଁ ଜାଣିଁ ଜାଣିଁ ପୋଡ଼ ।
ଯାହାକୁ ଯା ବୋଲଇ ସେ ନ ଅସେ ବାହୁଡ଼ ॥
ଅହୋ ଅହୋ ମୋର ଆଜ୍ଞା ନାହିଁ ନା ତୁମ୍ଭଙ୍କୁ ।
ଯେ ଯାହାର ଯେମନ୍ତଟି ପାଏ ଚତୁରକୁ ॥
ରାଜା ଆଜ୍ଞା ଶୁଣି ଗଲେ ଅଠାଇଶ ସେନା ।
ଦେବ ଦାନବଙ୍କୁ ସେ ନ କରନ୍ତି ଗଣନା ॥
ଘୋରନାଦ କରି ବାହାରିଲେ ଦୈତ୍ୟବଳ ।
ପ୍ରଳୟ କାଳରେ ଯେସନ୍ତ ସମୁଦ୍ର ଉଚ୍ଛୋଳ ॥
ଗଜ ଅଶ୍ୱ ବାହନେ କେ ଚଢ଼ି ବ୍ୟାଘ୍ରପିଠି ।
କରେ କୃପାଣ ଗୁରୁଜ ଧରି କୁନ୍ତ ଯଷ୍ଟି ॥
ଧର ଧର ମାର ମାର ପଡ଼ୁଅଛି ବୋବ ।
ତାଙ୍କର ଶବଦେ କମ୍ପି ଉଠେ ମହୀଦେବୀ ॥
ଅସୁର ବଳରେ ଅଗର୍ଗଳ ମହାବୀର ।
ସେନାପତି ହୋଇଲେକ ସେ ସହସ୍ରଶିର ॥
ସହସ୍ରେକ ଶିରେ ବେନି ସହସ୍ର ତା ଭୁଜ ।
ଶସ୍ତ୍ର ଚକ୍ରାଦି ସହସ୍ରେ କରଣର ତେଜ ॥
ସହସ୍ରେକ ଭୁଜେ ଧନୁ ସହସ୍ରେ ଭୁଜେ ଶର ।
ଗୁଣ ଘୋଷ ଶବଦରେ କମ୍ପେ ସ୍ୱର୍ଗପୁର ॥
ମଣ୍ଡି ଦଳି ଦଳି ହୋଏ ଗଲନ୍ତେ ସେ ଥାଟ ।
ନବଯୋଜନ ପର୍ଯ୍ୟନ୍ତେ ନ ଦିଶଇ ବାଟ ॥
ବଳବନ୍ତ ରାଜତେ ଯେ ଧନୁର୍ଗୁଣ ଟାଣି ।
ବକପନ୍ତି ପ୍ରାୟେ ଦେଖାଯାନ୍ତି ସର୍ବେ ପୁଣି ।
ବୀରତୂର ବୀରଢୋଲ ଦାରୁଣ୍ଡି ଦୁମ୍ପସ ।
କାହା ମର୍ଦ୍ଦଳ ବଜାନ୍ତି ମାରି ଗାଲ ତୁରୀ ॥
ଖାଙ୍କର କେଶ କାହାର ଶିରେ ଏକଜଟା ।
ଘୋର ଅନ୍ଧାର ପରାୟେ ଦୈତ୍ୟଥାଟ ଘୋଟା ॥
ମତୁଆଳ ରୂପରେ ଯେ ମଦଖାଇ ମତ୍ତ ।
ବିଦ୍ୱେରନ୍ତି ଗାବନ୍ତି ଯେ ନବରଙ୍ଗେ ଗୀତ ॥
ତ୍ରୈଲୋକ୍ୟ କମ୍ପୁଅଛଇ ଦୈତ୍ୟଙ୍କର ରଡ ।
କି ଅବା ମେରୁରୁ ଟଳିଲା ପଡ଼ିଲାକ ଝଡ଼ ॥

ଅସ୍ତ୍ରବଳ ଯେ ରକ୍ତବିଜ ବେଢ଼ିଲେକ ।
ମହୀରେ ଚରଣ ଅଛି ଗଗନେ ମସ୍ତକ ।
ପର୍ବତରେ ଥାଇ ଦେଖି ତାହା କାତ୍ୟାୟିନୀ ।
ମଦିରା ପାନ କରନ୍ତି ବହୁତଠି ଯୋଗିନୀ ॥
ରକ୍ତବିଜ ଶତେକ ଯୋଜନ ସ୍ତମ୍ଭପରେ ।
ବହଇନ୍ତି କାତ୍ୟାୟିନୀ କଳ୍‌କଳା ଶବଦରେ ।
ଅସୁରେ ଦେଖିଲେ ବହୁ ଯୋଗିନୀବୃନ୍ଦ ଆଣ୍ଟ ।
ଜିହ୍ୱାଗ୍ରରେ ମାତଙ୍ଗୀଙ୍କ ମତୁଆଳ ନାଟ ॥
ଯହୁଁ ସ୍ତ୍ରୀବେଶ ଉଠିଲା ପର୍ବତରେ ବେଗେ ।
ପ୍ରତିଜ୍ଞା କରି ମିଳିଲା ନାରାୟଣୀ ଆଗେ ॥
ବୋଲଇ ଅସୁର ବୀର ଶୁଣ ରେ ଯୁବତୀ ।
କେଉଁଣ ଦେଶୁଁ ଆଇଲୁଁ ଅଦ୍ଭୁତ ଦେବତୀ ॥
ଚଣ୍ଡାଳପଣେ ମାରିଲୁ ଆମ୍ଭ ସେନାପତି ।
ସ୍ତ୍ରୀ ହୋଇ ତୁମ୍ଭର ଏଡ଼େ ନିର୍ଦ୍ଦୟ ପ୍ରକୃତି ॥
କ୍ଷଣ କ୍ଷଣକେ କହଇ ଉଚ୍ଚସ୍ୱରେ ବାଣୀ ।
ତା ବଚନ ଶୁଣି ବଦଯନ୍ତି ନାରାୟଣୀ ॥
ସର୍ବ ସମୟେ ପ୍ରାଣୀଙ୍କୁ ନ ଥାଏ ସମ୍ପଦ ।
ଯେ ବଡ଼ ସେ ଛାଡ଼ଇ ପଡ଼ଇ ପ୍ରମାଦ ॥
ତୁମ୍ଭଙ୍କୁ ରେ ବରଦେଲା ଯେଉଁ ମହାତମା ।
କୋଟିବାର ପ୍ରାଣତ୍ୟାଗ ହେଲଣି ସେ ବ୍ରହ୍ମା ॥
ଈଶ୍ୱରଙ୍କୁ ବୋଲନ୍ତି ଯେ ଅନାଦିଯୋଗୀଶ୍ୱରେ ।
ସହସ୍ରେ ବାର ତାଙ୍କର ଶରୀର ବନାଶି ।
ଇନ୍ଦ୍ରଦେବହିଁ ପଦ୍ମେକ ବାର ନାଶଗଲା ।
ଦିଗପାଳମାନଙ୍କର କେ ତାହା ଗଣିଲା ॥
ଯେ ବ୍ରହ୍ମାର ବର ପାଇ ଏଡ଼େ ତୁମ୍ଭ ଗର୍ବ ।
ସେ ବ୍ରହ୍ମା ବିନାଶୀ ହୋଇ କେତେଦିନ ଥିବ ॥
ଆମ୍ଭଙ୍କୁ ନ ଜାଣି ତୁମ୍ଭେ ଅଜ୍ଞାନି ଦିଅବା ।
ଏ ମୃତ୍ୟୁମଣ୍ଡଳେ ସର୍ବେ ଅବଶ୍ୟ ମରିବା ॥
ତୁମ୍ଭେ ରେ ଅନେକମତେ ବର ପାଇଅଛ ।
ଯେଉଁ ବର ଦିଅଇ ରେ ସର୍ବ ତାର ମିଛ ॥
ଅନେକ କାଳରେ ତୁମ୍ଭେ ପୃଥ୍ୱୀ ଭୋଗକଲ ।
ଏତେକାଳେ ଆମ୍ଭଙ୍କରେ ମରଣ ପାଇଲ ॥
ଯେତେ ଗର୍ବ କରୁଛ ରେ ଏହି ରଣସ୍ଥାନେ ।
ସମସ୍ତ ଦାନବ ଆରେ ମରିବ ଏକ୍ଷଣେ ॥
ଶୁଣି ଏ ବଚନ ବୋଲେ କାଳକେତମୋଚନ ।
ଆଜ ଏବେ ରହିବ କି ତୁମ୍ଭର ଜୀବନ ॥

ସ୍ତ୍ରୀ ଜନ୍ମ ତୁମ୍ଭର ଅଟେ ଅଟଇ ପାପିଷ୍ଠା ।
ସଦା ଅଶୁଚିରେ ଥାଅ ବଡ଼ମନ୍ଦ ନଷ୍ଟା ॥
ଆମ୍ଭର ରାଜା ତହିଁକି ଗୃହେ ଦେବୀ ଅପଣେ ।
ସ୍ତ୍ରୀ ପାମରୀ ମରିବ କେଁ ଛପିଁ ଅକାରଣେ ॥
ନାରାୟଣୀ ବୋଇଲେ ରେ ଶୁଣ ଦୈତ୍ୟବୀର ।
ଆମ୍ଭେ ନାହିଁ ଜନ୍ମମରେ ନୋହୁଁ ପାମର ॥
ଅରେ ଜ୍ଞାନ ବୁଡ଼ାଇଲୁ ତୋହର ଶରୀରେ ।
ମତ୍ତଗର୍ବ ଭାବେ ପଡ଼ିଅଛ ଅନ୍ଧକାରେ ॥
ଜାତ କାଳରେ ଆମ୍ଭେ ଯେ ମାତାରୂପ ହେଉ ।
ରତକାଳେ ଭାର୍ଯ୍ୟାରୂପେ ଶୃଙ୍ଗାର କରାଉଁ ॥
ଅନ୍ତକାଳେ ହେଉଁ ଆମ୍ଭେ କାଳକା ମୂରତି ।
ଶେଷକାଳେ ଦହୁଁ ହୋଇ ଅନଳ ଆକୃତି ॥
ଅରେ ଆମ୍ଭେ ଜାତ ଅନ୍ତ ମଧ୍ୟେ ଅବସାନ ।
ଜାତହିଁ କରାଉଁ ଅନ୍ତ କରୁଁ ଦେହ ଘେନ ॥
ଅରେ ଜାତକାଳେ ଆମ୍ଭେ କରୁଁ ଉତ୍ପତ୍ତି ।
ଅନ୍ତକାଳେ କାଳୀରୂପେ ଭକ୍ଷୁଁଟି ସବୁନ୍ତି ॥
ଅଜ୍ଞାନ ମନ୍ଦପଣେ ରେ ମର ଦୁଷ୍ଟ ବାଇ ।
ଆମ୍ଭେ ସେ ପରମ ଯୋଗ୍ନଦେବୀ ମହାମାୟୀ ॥
ଅରେ କାଳକେତମୋଚନ ଆମ୍ଭେ କରୁଁ ଜାତ ।
ମଧ୍ୟେ ପ୍ରତିପାଳୁଁ ପ୍ରାନ୍ତେ କରୁଁ ଆମ୍ଭେ ହତ ॥
ଆମ୍ଭର ଚରିତରେ ନ ପାର ତୁମ୍ଭେ ଜାଣି ।
ଗ୍ରହୁଁ ଗ୍ରହୁଁ ଭକ୍ଷିବୁ ଯେ ସବୁଙ୍କୁ ଏକ୍ଷଣି ।
ଏ ବଚନେ କାଳକେତମୋଚନ ଗଳଗାଜି ।
ନାରାୟଣୀ ଉପରକୁ ଧାଇଁଲା ତରଜି ॥
ଧାଅଁ ଧାଅଁ ରେ ଦଇତେ ମାରି ତ୍ରିଶୂଳ ।
ରାଜାର ଅପଦ ଖଣ୍ଡ ବାଣ ଚକ୍ରଜାଳ ॥
ଯହୁଁ ଆଜ୍ଞାଦେଲେ ରାଇ ଆଠ ସେନାପତି ।
ଧାଇଁଲେ ଦାନବ ବଳ ଅନନ୍ତ ମୂରତି ॥
ପର୍ବତ ଉପରକୁ ସେ ଉଠି ବେଗେ ଧାଇଁ ।
ଅମାପ ବଳ ସେଠାରେ ଯେ କଳନା ନ ଯାଇ ॥
କାଳକେତମୋଚନର ଯେ ପଞ୍ଚାର୍ବୁଦ ରଥୀ ।
ଛଅର୍ବୁଦ ଧୂମ୍ରଲୋଚନର ସେନାପତି ॥
ଯମଘଣ୍ଟ ମୁକେ ସାତ ଅର୍ବୁଦ ଯୋଦ୍ଧା ।
କାଳଘଣ୍ଟର ଯେ ପଞ୍ଚାର୍ବୁଦ ବୀର ସିଦ୍ଧା ॥
ନବମର୍ବୁଦ ଭସ୍ମର ଦଇତର ତୁଲେ ।
ଅଠ ଅର୍ବୁଦ ଘେନଣ କଙ୍କାସୁର ବଳେ ॥

ବ୍ୟାଘ୍ର ବାହାନରେ ପଞ୍ଚଅର୍ବୁଦ ଯେ ଯୋଦ୍ଧା ।
ବଳଶ୍ୱ ବାହନେ ପଞ୍ଚଅର୍ବୁଦ ପ୍ରସିଦ୍ଧା ॥
ଶଙ୍ଖାସୁର ଦଇତର ଅନେକ ଯେ ଯୋଧୀ ।
ଇନ୍ଦ୍ର ଚନ୍ଦ୍ରଙ୍କୁ ସମରେ ପାରନ୍ତି ଯେ ବାନ୍ଧି ॥
ବଳାସୁର ତୁଲେ ଏକ ପଦ୍ମ ମହାବୀର ।
ଶଙ୍ଖାସୁର ତୁଲେ ଛନ୍ତି ବୃନ୍ଦେକ ଅସୁର ॥
ଭେଖାସୁର ଗଲା ପାଞ୍ଚପଦ୍ମ ଯୋଦ୍ଧା ସେନ ।
କଙ୍କାସୁର ସଙ୍ଗତରେ ଛପଦ୍ମ ସଇନ ॥
ସାତଲକ୍ଷ ସେନ ଲଙ୍କାସୁର ଯେ ଉଠିଲା ।
ସାତ ମେଘଛ ତୁଲରେ ଚଣ୍ଡାସୁର ଗଲା ॥
ତଉଅର୍ବୁଦ ଯୋଦ୍ଧାରେ ଅସୁର ଗୃମଣ୍ଡା ।
ବାମକରେ କୋଦାଳ ତା ଦକ୍ଷକରେ ଖଣ୍ଡା ॥
ପିଣ୍ଡି ଅସୁରର ତୁଲେ ନବପଦ୍ମ ଯୋଦ୍ଧା ।
କାର୍ତ୍ତିକାସୁରର ପଞ୍ଚ ପଦ୍ମାର୍ଦ୍ଧ ପ୍ରସିଦ୍ଧି ॥
ନବସାଗର ବଜ୍ରାଙ୍ଗ ଦଇତର ତୁଲେ ।
ଅନ୍ତକର ନୋହେ ଅଉ କେତେକେତେ ଅସିଲେ ॥
ଉତପାତ ଅସୁର ଯେ ମହିଷାସୁର ନାତି ।
ତାହାର ସଙ୍ଗରେ ପଞ୍ଚପଦ୍ମ ରଥୀ ଛନ୍ତି ॥
ତାହାର ମାତୁଳ ଯେ ସାରଙ୍ଗାସୁର ବୋଲି ।
ତିନକୋଟି ସଇନ ତା ସଙ୍ଗେ ଛନ୍ତି ବଳୀ ॥
ମଞ୍ଜୁସୁରର ତୁଲେ ଦଶଲକ୍ଷ ବୀର ।
ରଣରଙ୍ଗେ ସେହୁ ବୀରେ ଅଟନ୍ତି ଯେ ଧୀର ॥
ନବସାଗର ସଇନ ହେଠାସୁର ତୁଲେ ।
ଲକ୍ଷପୂର କରଣ ସେ ପର୍ବତ ବେଢ଼ିଲେ ॥
ଏକୋଇଶ ସାଗର ଯେ ସପ୍ତଶିର ତୁଲେ ।
ଗୃହପଦ୍ମ ଜଳମଗ୍ନା ଅସୁରର ମେଳେ ॥
ବେଗାସୁର ସଙ୍ଗେ ନବ ସାଗର ସଇନ ।
ରେଙ୍ଗାସୁର ଉଠିଲା ଅର୍ବୁଦ ପାଞ୍ଚ ସେନ ॥
ପଞ୍ଚଲକ୍ଷ ଯୋଦ୍ଧା ମଧ୍ୟ ଯୋକଡ଼ା ଅସୁର ।
ଲୁହାର ଧନୁ ଧରଣ ଧାଏଁ ମହାବୀର ॥
ଶୁଣ ହୋ ପରୀକ୍ଷ ରାଜା ମହିଷାସୁର ବଳ ।
ପଞ୍ଚବିଂଶ ଅର୍ବୁଦ ଯେ ଅତି ଅଗର୍ଗଳ ॥
ପଦାତି ସଇନମାନ ନୁହଇ ଗଣିତ ।
କୋଟିଏ ସାଗରେ ସେହୁ ଗୋଟିଏ ରାଉତ ॥
ହସ୍ତୀ ଗଜ ରଥମାନଙ୍କୁ ନୁହଇ ଗଣନ ।
ବାଦ୍ୟକାରମାନଙ୍କ ତା କେ କରୁ ବର୍ଣ୍ଣନ ॥

ମହାଯୋଦ୍ଧାମାନଙ୍କର ଶୁଣ ସ୍ୱସ୍ଥ ମନ ।
ତନପୁର ଜଣିବାକୁ ଏବେ ଏକେ କ୍ଷମ ॥
କାକମୁଖ ଘୋରମୁଖ ଗୋମୁଖ ଶଗଡ଼ ।
ଜମ୍ବୁକମୁଖ ବରାହମୁଖ ଯେ ଯୋକଡ଼ ॥
ଗଜମୁଖ ବକ୍ରମୁଖ ଅବର ହିଁ ଯେତେ ।
ଜଣେ ଜଣେ ସଂକ୍ଷେପି ତା କହିବ ମୁଁ କେତେ ॥
ଏମାନଙ୍କେ କାଳବିମୋଚନ ଚକ୍ରବର୍ତ୍ତୀ ।
ସହସ୍ରତ୍ରିଶ ଦାନବ ଅନ ସେନାପତି ॥
ମୁକୁଟ ଯୋଦ୍ଧାମାନଙ୍କ ଅନ୍ତ କେହୁ ଜାଣି ।
ପଦାତି ସଇନମାନ କେ ପାରିବ ଗଣି ॥
ହେ ବୁଧଜନେ ଅପାର ଯେସନେ ଏ ହେରୁ ।
ଲେଖନ କର ଜାଣିବ ଏଥିର କେ ତତ୍ତ୍ୱ ॥
ଦୁର୍ଗା ବିଜେ କରଛନ୍ତି ରତ୍ନଗିରି ପରେ ।
ବେଢ଼ିଲେ ଦାନବବଳ ପର୍ବତେ ବ୍ୟଗ୍ରରେ ॥
ସୈନ୍ୟ କଳନା ନ ଯାଇ ଯାହାର ଗଣନ୍ତେ ।
ଲକ୍ଷ୍ମୀଭଦ୍ରାଠାରୁ ସରସ୍ୱତୀ ପରଯନ୍ତେ ॥
ପଞ୍ଚଷଠି ଯୁଣ ଦୀର୍ଘ ପଞ୍ଚ ଯୁଣ ପ୍ରସ୍ଥ ।
ପୂରିଲେ ରାକ୍ଷସ ବଳ ହୋଇ ଯନ୍ତ୍ରାଯନ୍ତ୍ର ॥
କଳକଳା ନାଦେ ଘୋର କୋଳାହଳମାନ ।
ଉଛୁଳ ପଡ଼ୁଛି ତଳ ଅବନୀ ଗଗନ ॥
ଶୁଣ ହେ ପରୀକ୍ଷ ରାଜା ଦୁର୍ଗାଙ୍କ ମହିମା ।
କହିଲେ ତ ନ ସରଇ ତାହାଙ୍କ ବଡ଼ିମା ॥
ବୃନ୍ଦାରକେ ହାସ କଲେ ଦୈତ୍ୟବଳ ଦେଖି ।
ଭୟଙ୍କର ପଳାଇଲେ ଗଗନ ଉପେକ୍ଷି ॥
ଶପ୍ତନ ଗିରି ଦକ୍ଷିଣ ସାଗରର ଅନ୍ତେ ।
ତହିଁ ଯାଇଁ ରହିଲେକ ଶ୍ରୀହରି ସହିତେ ॥
ଯାଇଣ ବ୍ରହ୍ମା ଅଗରେ କହେ ମଘବାନ ।
ପିତାମହ ! ଜୟ ହେବ ଏ ଥାଟ କେସନ ॥
ଅମ୍ଭେ ସର୍ବେ ପଳାଇଲୁଁ ଗଗନ ଉପେକ୍ଷି ।
ସ୍ତ୍ରୀବୃନ୍ଦ ନପୁଣ ହାସ କରନ୍ତି ଯେ ଦେଖି ॥
ଧାତାଏ ବୋଇଲେ ହୋ ନ ଜାଣ ତୁମ୍ଭେ କିଛି ।
ଏକ ନିମେଷକେ ପାରନ୍ତି ସେ ସର୍ବ ଭକ୍ଷି ॥
ଦେବତାଙ୍କୁ ସମ୍ମାର୍ଜନା କରି ଦେବରାଜ ।
କଉତୁକ ସମରତ ହେବ ଦେଖ ଆଜ ॥
ଏମନ୍ତ ବଚନ କହିଲେକ ସେ ବିଧାତା ।
ଚ ରହିବେ ଭଳ ମାନ ଅସୁରଙ୍କ ସତ୍ତ୍ୱ ॥

ପଶ୍ବରନ୍ତି ଯଶସ୍ୱିନ ଶୁଣ ମୁନିବର ।
ବିସ୍ତାର କହ ମୋ ଆଗେ ଦୁର୍ଗା ସମାଗୁର ॥
ଅସୁର ବଳ ପର୍ବତ ବେଢ଼ିବା ଦେଖିଲେ ।
ଦୁର୍ଗା କେମନ୍ତେ ତହିଁଙ୍କ ବୁଝି ଭିଆଇଲେ ॥
ଶୁଣ ପରୀକ୍ଷ ବଦନ୍ତି ଶୁକ ମହାମୁନି ।
ଦୈତ୍ୟବଳ ଦେଖି କୋପକଲେ କାତ୍ୟାୟନୀ ॥
ଚଉଷଠି ଯୋଗିନୀ ହୋଇଥିଲେତ ସମ୍ଭୂତ ।
ପୁଣି ସେ ଅନେକ ଦେବୀ ଅଙ୍ଗୁ କଲେ ଜାତ ॥
ବ୍ରହ୍ମାୟଣୀ ମୂର୍ତ୍ତି ନବ ପଦ୍ମ ଚଣ୍ଡୀ ଲେଖି ।
ଚନ୍ଦନ ଭୂଷିତା ଅଷ୍ଟଭୁଜା ଚତୁର୍ମୁଖୀ ॥
ହଂସ ବାହନୀ ଅଷ୍ଟାକ୍ଷି କରେ ବ୍ରହ୍ମଶର ।
ଅଜଗବ ଧନୁ ବ୍ରହ୍ମଶକ୍ତି ସୁନ୍ଦର ॥
ପଦ୍ମେକ ଚଣ୍ଡୀ ହୋଇଲେ ନାରାୟଣୀ ମୂର୍ତ୍ତି ।
ଚତୁର୍ଭୁଜା ଇନ୍ଦ୍ରନୀଳମଣି ତନୁ କାନ୍ତି ॥
କରେ କାଳାନ୍ତକ ଗଦା କାଳଚକ୍ର ଶର ।
କୁନ୍ତ ପରଶୁ ମୁଦ୍ଗର ଧନୁ ଅସିବର ॥
ଗଳେ ବୈଜୟନ୍ତୀ ମାଳା ଗରୁଡ଼ବାହନୀ ।
ଦିବ୍ୟାଙ୍ଗ ଭୂଷଣ ହୋଇ ବଜ୍ରହସ୍ତେ ଭବାନୀ ॥
ଛପନ କୋଟି ଚଣ୍ଡିକା ଭୈରବୀ ମୂରତି ।
ଏକ ଚରଣ ଦ୍ୱିଭୁଜେ କେତେ ବିରାଜନ୍ତି ॥
ପିନାକ ପରଶୁ ପାଶୁପତ କୁନ୍ତ ଧର ।
ଖଡ୍ଗ ଖପର ଟଙ୍କ ଧନୁ ଅଭୟକର ॥
ଶୁକ୍ଳାମ୍ବର ପରିଧାନ ଶୁକ୍ଳ ତନୁ କାନ୍ତି ।
ଶୁଦ୍ଧ ସ୍ଫଟିକ ସଦୃଶେ ତନୁ ବିରାଜନ୍ତି ॥
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ପ୍ରକାଶିତ ତ୍ରିନୟନୀ ।
ସର୍ପର ମେଖଳା ଶୁଦ୍ଧ ଭସ୍ମ ବିଲେପନୀ ॥
ଚକୋରନୟନୀ ଶିର ଉପରେ ଶୀତାଂଶୁ ।
ବାମେ ଡମ୍ବରୁ ଡାହାଣେ କୁଠାର ପରଶୁ ॥
ବୃଷଭବାହନୀ ସେହୁ କରେ ଧର ଶୂଳ ।
କାଳାନଳ ଅଧର ଯେ ଅଧିକ ଶୁକଳ ॥
ହବ ହୁବ କମ୍ପାଇଲେ ଘୋର ଡାକେ ଡାକ ।
ଧର ଧର ମାର ମାର ବୋଲି ହକାହକ ॥
ନବକୋଟି ଚଣ୍ଡୀ ହେଲେ ବାରାହୀ ମୂରତି ।
କରରେ ମୁଦ୍ଗର ଯଷ୍ଟି କୋଦାଳ ଶକତି ॥
ନବପଦ୍ମ ଦେବୀ ହେଲେ କୃତାନ୍ତକ ମୂର୍ତ୍ତି ।
ଶବତ ଶିର ବେନଧ୍ୱଜ ଗଗନେ ଗମନ୍ତି ॥
କାଳାନଳ ସମାନରେ ପ୍ରକାଶନ୍ତି ତେଜ ।
ରତ୍ନମଣି ମୁକୁଟରେ ଶମ୍ବର ବିରାଜ ॥
ପଞ୍ଚଲକ୍ଷ ଦେବୀ ହେଲେ ଯେ ଜଳ ଦେବତା ।
କରେ ଜଳପାଶ ନଖେ ମଣି ବିରାଜନ୍ତି ॥
ନବପଦ୍ମ ଚଣ୍ଡୀ ହେଲେ ଇନ୍ଦ୍ରାୟଣୀ ମୂର୍ତ୍ତି ।
ଗଜବାହନୀ ସେ କରେ ଧରି ବଜ୍ରଶକ୍ତି ॥
ଏହାଙ୍କ ସଙ୍ଗରେ ନବକୋଟି କାତ୍ୟାୟନୀ ।
ଲହ୨ ଜିହ୍ୱା ମୁକ୍ତକେଶୀ ସେ ଭବାନୀ ॥
ପଞ୍ଚଲକ୍ଷ ମହାମାୟା ଶୋଣେହା ଉପୁଜ ।
ଜଣେ ଜଣେ ପାରନ୍ତି ସେ ବ୍ରହ୍ମାଣ୍ଡକୁ ଗଞ୍ଜି ॥
ଦୁର୍ଗା ଆଜ୍ଞା ଦେଲେ ନାରାୟଣୀଙ୍କି ଅନାଇ ।
ଏ ଦେବୀମାନଙ୍କୁ ତୁମ୍ଭେ ସମ୍ଭାଳ ଗୋ ନେଇ ॥
ମହିଷାସୁର ଥାଟେ ଯେ ଛନ୍ତି ସେନାପତି ।
ତୁମ୍ଭେ ଦେବୀନ୍ତ ଅଘୋର ଚଳ ଗୋ ତଡ଼ିତ ॥
ଦୁର୍ଗା ଆଜ୍ଞା ଶୁଣି ବୋଇଲେକ ନାରାୟଣୀ ।
ହେବେ ଅଠସେନାପତି ଚଉଷଠି ଯୋଗିନୀ ॥
ତହିଁ ନବପଦ୍ମ ଚଣ୍ଡୀ ମୂରତି ଡାକିନୀ ।
ସେ ଆଠରେ ସେନାପତି ହେଲେ ନାରାୟଣୀ ॥
ଶୋଣେହା ମୂରତି ପଞ୍ଚଲକ୍ଷ ଅବତରି ।
ହେଲେ ସେନାପତି ତହିଁ ଦେବୀ ଯେ କୋଠାରୀ ॥
ରେରେ ଶବଦ କରଣ କୃତାନ୍ତକ ମୂର୍ତ୍ତି ।
ସେ ଆଠରେ ଭଇରବୀ ହେଲେ ସେନାପତି ॥
ପିଙ୍ଗୁଣୀ ଦେବୀ ପଞ୍ଚ ସାଗର ମୂରତି ।
ଉଗ୍ରତାରା ସେ ଆଠରେ ହେଲେ ସେନାପତି ॥
ତିନସାଗର ମୂରତି ଦେବତୀ କଙ୍କାଳୀ ।
ସେ ଆଠରେ ସେନାପତି ହୋଇଲେ ବାସେଳୀ ॥
ସାତପଦ୍ମ ଦେବୀଗଣ ଗଗନ ବେତାଳୀ ।
ସେନାପତି ତହିଁ ମେଖଳା ଯେ ଚନ୍ଦ୍ରକାଳୀ ॥
ନବକୋଟି ମୂର୍ତ୍ତି ଯେ ଚଣ୍ଡୀ ମହାଖଳା ।
ସେ ଆଠରେ ସେନାପତି ହୋଇଲେ ହିଙ୍ଗୁଳା ॥
ଦଶସାଗର ଦେବୀ ଯେ ମେଖଳାର ମୂର୍ତ୍ତି ।
ଅଷ୍ଟବସୁ ଦେବୀ ହେଲେ ସେଥି ସେନାପତି ॥
ତିନି ସାଗର ସମ୍ପାତି ମୂରତି ଯେ ଦେବୀ ।
ତହିଁ ସେନାପତି ଗରୁଡ଼ା ଯେ ମହାଦେବୀ ॥
ପଞ୍ଚପଦ୍ମ ଯେ କାଳୀରୂପୀ ଅବତରି ।
ସେ ଆଠରେ ସେନାପତି ହେଲେ କାଳଞ୍ଜରୀ ॥

ସାତଲକ୍ଷ ଗଜମୁଖୀ ମନୁଷ୍ୟର କାୟ ।
ସେ ଥାଟରେ ସେନାପତି ହେଲେ ଛାୟା ମାୟା ॥
ପଦ୍ମେ ଶୂକର ବଦନରୂପୀ ଯେ ମୂରତି ।
ସେ ଥାଟରେ ସେନାପତି ହେଲେ ଭଗବତୀ ॥
ତିନିପଦ୍ମ ଦେବୀ ବ୍ୟାଘ୍ର ବାହନୀ ତାଡେଣୀ ।
ସେ ଥାଟରେ ସେନାପତି ହୋଇଲେ ତାରିଣୀ ॥
ଉଲୂକ ବଦନୀ ଦେବୀ ପଦ୍ମେକ ଉତ୍ତମା ।
ସେ ଥାଟରେ ସେନାପତି ହେଲେ ମାରକମା ॥
ସିଂହ ବଦନୀ ଯେ ପଞ୍ଚମୂର୍ତ୍ତି ବାସେଳୀ ।
ସେ ଥାଟରେ ସେନାପତି ହେଲେ ରୁଦ୍ରାଣୀ ॥
ଶାର୍ଦ୍ଦୂଳ ବଦନୀ ସାତକୋଟି ଦେବୀଯାଏ ।
ସେ ଥାଟରେ ସେନାପତି ଗୋଳକମା ହୁଏ ॥
ନବକୋଟି ପଦ୍ମଚଣ୍ଡୀ ଉଲୂକ ରୂପିଣୀ ।
ତହିଁ ସେନାପତି ହେଲେ ସେ ଅଶ୍ୱମୁଖିଣୀ ॥
ନବଲକ୍ଷ ଚଣ୍ଡୀ ପୁଣ ବହୁରୂପା କେଶରୀ ।
ଷଠ୍ୟଟିର ମହାମାୟା ସେ ଥାଟ ଅଘୋର ॥
ନବପଦ୍ମ ଦେବୀ ଥିଲେ ବିକଟାଳ ମୁଖୀ ।
ସେ ଥାଟରେ ସେନାପତି ହେଲେ ସହସ୍ରାକ୍ଷୀ
କାକମୁଖୀ ଦେବୀ ଥିଲେ ସଭୁର ଅଯୁତ ।
ବିରଜାଈ ସେନାପତି ତହିଁ ହେଲେ ପ୍ରାପ୍ତ ॥
ଚଉଷଠି ସହସ୍ର ଦେବୀ ନୃଥ ଅବତର ।
ସେ ଥାଟରେ ସେନାପତି ହେଲେ ଯୋଗେଶ୍ୱରୀ ॥
ଯମଦୂତ ମୂର୍ତ୍ତି ସାତସାଗର ବୋଲାଏ ।
ସେ ଥାଟରେ ସେନାପତି ଜୟଚଣ୍ଡୀ ହୋଏ ॥
ଷୋଳଲକ୍ଷ କୋଟି ଅଷ୍ଟବକ୍ର ମୁଖୀ ରହି ।
ଜୟା ବିଜୟା ତହିଁରେ ସେନାପତି ହୋଇ ॥
ଦକ୍ଷିଣାଈ ଉତ୍ତରାୟୀ ପଶ୍ଚିମୀ ବାରସୀ ।
ପାତାଳବାସୀ ପୂର୍ବାୟୀ ସଞ୍ଜାୟୀ ବର୍ଦ୍ଧାୟୀ ॥
ଏହାଙ୍କର ମୂଳେ ହେଲେ ଅନେକ ଦେବତୀ ।
ସଂକ୍ଷେପେଣ କହିବାକୁ କସ ମୋ ଶକତି ॥
ଚଉଷଠି ଯୋଗିନୀ ନବକୋଟି କାତ୍ୟାୟନୀ ।
ସେ ସମସ୍ତ ଦେବୀଙ୍କର ଚରଣେ ଦଣ୍ଡିନୀ ॥
ସେ ଦେବୀମାନଙ୍କର ମୁଁ ଚରଣେ ଲୋଟଇ ।
ଶୂଦ୍ର ମୂଢ ଶାରଳା ଯେ ମୂକତି ମାଗଇ ॥
ଶୁଣ ହୋ ପରୀକ୍ଷ ରାଜା କହେ ଶୁକବ୍ରହ୍ମା ।
ଏଣୁଁ ଅନେକ ଉତ୍ପତ୍ତି କଲେ ଦେବୀ ଉମା ॥

ପାତାଳୁ ଆକାଶଯାଏ ଶୋଭେ ସର୍ବକାୟେ
ଏକ ଶରୀରରୁ ବହୁମୂର୍ତ୍ତି ଜାତ ହୁଏ
ଅସୁର ସଇନକୁ ସେ ପ୍ରତିରୁଦ୍ଧ କଲେ ।
ହେ ରେକାର ଶବଦରେ ପୃଥ୍ୱୀ କମ୍ପାଇଲେ ॥
ବହୁଚିର ଷଠ୍ୟଟିର ମଳୟ ଚିହ୍ନରେ ।
କୁଣ୍ଡଳ ଚିରବେ ପୂର ବହିଲେ ହର୍ଷରେ ॥
ମୁକୁଳିତ କେଶ କରେ କାତି ଯେ ଖପର ।
ଦୁର୍ଗା ମୁଖ ଚାହିଁ ମାଗୁଅଛନ୍ତି ଆହାର ॥
ଅସୁର ବଳକୁ ଦୁର୍ଗା ଦେଖାଇ ଅଙ୍ଗୁଳି ।
ଆଜ୍ଞା ଦେଲେ ଏମାନଙ୍କୁ ଖାଅ ଅଳ୍ପେ ବାଣ୍ଟି ॥
ମେଦ ମେଦା ମାଂସ ତୁମ୍ଭେ ସର୍ବେ ବାଣ୍ଟି ଖାଅ ।
ନ ଅଣ୍ଟଇ ବୋଲି ଅତୃପ୍ତ କିଛି ନୁହ ॥
ଆଜ୍ଞା ଦେଲେ ଭ୍ରାନ୍ତି ନ କର ଗୋ ଏତେଣିକି ।
ଅସୁର ତୁମ୍ଭପାଇଁ ଲୋ କେତେ ସୈନ୍ୟ ଅଛି ॥
ଏମନ୍ତ ବୋଲି ବୋଇଲେ ସର୍ବ ମହାମାୟୀ ।
ଯାଇଁ ଦେବୀମାନେ ଶ୍ୟେନପକ୍ଷୀପ୍ରାୟେ ହୋଇ ॥
ପର୍ବତ ତଳରେ ଥିଲେ ଅସୁର ସଇନ ।
ତେଉଁ ପଡ଼ିଲେ ପର୍ବତୁଁ ସକଳ ଯୋଗିନୀ ॥
ଦୁର୍ଗା ଆଜ୍ଞାଦେଲେ ଶଇ ନାରାୟଣୀ ଥକେ ।
କାଳ ବିମୋଚନ ଥାଟ ହେଲା ତୋର ଭାଗେ ॥
ବାସେଳୀକୁ ଶଇ ବୋଇଲେକ ଦେବୀ ଦୁର୍ଗେ ।
ସହସ୍ରଟିଗ ସଇନ ହେଲା ତୋର ଭାଗେ ॥
ଦୁର୍ଗା ହକାରି ବୋଇଲେ ଅଗୋ ଉଗ୍ରତାରା ।
ତୋହର ଭାଗେ ହୋଇଲା ଭସ୍ମର ଅସୁର ॥
ତ୍ରିପୁରକୁ ହକାରି ସେ ବୋଇଲେ ଭବାନୀ ।
ତୁ ଯାଇଣ ଭକ୍ଷ ଅଳ୍ପେ ପିଙ୍ଗଳା ସଇନ ॥
ଦୁର୍ଗା ବୋଇଲେ କୁଠାରୀ ଯାଅ ଗୋ ବହନ ।
ଭକ୍ଷଣ କର ସହସ୍ର ମୁଖର ସଇନ ॥
ପୁଣ ଆଜ୍ଞା ଦେଲେ ମାୟେ ଶୁଣ ଗୋ ତ୍ରିପୁରା ।
ତୁମ୍ଭେ ଭକ୍ଷଣ କରବ ଯାଇଁ ଲୋହଶର ॥
ଇନ୍ଦ୍ରାୟଣୀ ଦେବୀଙ୍କ ଯେ ହକାରି ପାଶକୁ ।
ଆଜ୍ଞା ଦେଲେ ଖାଅ ଯମଦଣ୍ଡର ସୈନ୍ୟକୁ ॥
ଦୁର୍ଗାଦେବୀ ଆଜ୍ଞା ଦେଲେ ଶୁଣ ଗୋ ମଙ୍ଗଳା ।
ଜୟସିଂହ ଥାଟକୁ ତୁ ଖାଅ ଯାଇଁ ଧାଇଁ ॥
ସନ୍ନିଧିକୁ ହକାରଣ ବୋଇଲେ ଚର୍ଚ୍ଚିକା ।
ଯୋଜନବାହୁ ଥାଟକୁ ଖାଅ ତୁହେ ଏକା ॥

ଗୋଳକମାଙ୍କୁ ବୋଇଲେ ଦେଖି ତୋ ମହିମା ।
ଜଟାସୁର ଆଦି ଖାଅ ଦେଖାଇ ଗାରମା ॥
ପାଶକୁ ଡାକ ବୋଇଲେ ଅଲେ ଘଟବର ।
ଝରୁସ ଝରୁର ସୈନ୍ୟ ଖାଅ ଯା ଲୋ ମାର ॥
ଜଣେ ଜଣେ ନାମଧର ଯୋଗିନୀ ଚଉଷଠି ।
ଦୁର୍ଗା ଅଜ୍ଞାଦେଲେ ଖାଅ ଅଲେ ଯାନ୍ତୁ ବାଡି ॥
ପୁଣି ବୋଇଲେ ଅସୁର ଦେଖିଲୁ ଅଳପ ।
ତେଣୁକର ଜାତ ମୁହିଁ କଲ ସୈନ୍ୟ ସ୍ୱଳ୍ପ ॥
ସମୁଦ୍ର ପର୍ବତ ଗିଳିଦେଲେ ନ ଅଣ୍ଟଇ ।
ଏ ଛାର କେତେମାତର ଅସୁର ଆଟହିଁ ॥
ଏସନକ ବାକ୍ୟ ଦୁର୍ଗାଠାରୁ ତହୁଁ ଶୁଣି ।
ଗରୁଡ଼ ଅବେହ ବାହାରିଲେ ନାରାୟଣୀ ॥
ଦେବୀଙ୍କି ଦେଖିଲେ ଯହୁଁ ଅସୁର ସଇନ ।
ଧାଇଁଲେ କୋପରେ କରେ ଗଦାବର ଘେନ ॥
ପିଟନ୍ତେଣ ଯୋଗିନୀମାନେ ପାତନ୍ତି ଯେ ମୁଣ୍ଡ ।
ପଡ଼ି ଲୋହସାର ଗଦା ହୋନ୍ତି ଖଣ୍ଡ ଖଣ୍ଡ ॥
ଗଦାବର ଭାଜନ୍ତେଣ ଦୈତ୍ୟ ଶୂନ୍ୟ ହସ୍ତ ।
ଧାଇଁଣ କଙ୍କାଳୀ ଦେବୀ ଧରନ୍ତି ହୁଦ୍ରତ ॥
ମୋଡ଼ଣ ବେଳଖଣ୍ଡ ସେ କରନ୍ତି ତାହାଙ୍କୁ ।
ବଡାର ଅନ୍ତ କାଢ଼ନ୍ତି ଅସୁରଙ୍କ ବୁକୁ ॥
ରୁଧିର ପିଇ ସେ ମାଂସ ସୁଖେଣ ଖାଅନ୍ତି ।
ନାନାରଙ୍ଗରେ ନାଚଣ ଗୀତ ସେ ଗାବନ୍ତି ॥
ଅପାର କଉତୁକ ଯେ ଦେବୀଙ୍କର ନାଟ ।
ମେଦ ମେଦା ମାଂସରେ ସେ ବସାଇଲେ ହାଟ ॥
ନିର୍ଦ୍ଦୟ ଅସୁରଗଣ ନ ଦୁଝନ୍ତି ରଣେ ।
ଏକଜଣେ ପଡନ୍ତେଣ ଧାଇଁ ଶତେଜଣେ ॥
ଯେସନେ ଗଗନୁ ଝଡିପଡ଼େ ଜଳଧାର ।
ତେସନକ ସେ ଅସୁରେ ବର୍ଷୁଛନ୍ତି ଶର ॥
ଲକ୍ଷେ କୋଟି କୋଟି ବାରେ ବର୍ଷୁଛନ୍ତି ତୋଳ
ଗଗନରେ ଅଦୃଶ୍ୟ ଯେ ହେଲେ ଅଂଶୁମାଳୀ ॥
ଦେବୀଙ୍କର ସମରତ ଦେବେ ଅଗୋଚର ।
ଶରୀରେ ପଡ଼ଣ ଅସ୍ତ୍ର ହେଉଛନ୍ତି ଚୂର ॥
କୁନ୍ତ ମୁଦ୍ଗର ଚକ୍ର ବାବଲ ଶାବେଳ ।
ଦେବୀଙ୍କ ଶରୀରେ ପଡ଼ି ହେଉଛନ୍ତି ଧୂଳ ॥
ବର୍ଷନ୍ତେ ଶିଳ ଦଅନ୍ତି ଶର ତୀକ୍ଷ୍ଣ ମୁନା ।
ଅଙ୍ଗରେ ନ ଭେଦନ୍ତି ସେ ଯେଣୁ ବଜ୍ରସେଣ୍ଡା ॥

ସମର ସ୍ଥଳରେ ଦେବୀ ଅଟନ୍ତି ନର୍ତ୍ତନ୍ତେ ।
ଅସୁରଙ୍କ ମଣନ୍ତି ସେ ଛେଳପୃଥ ପ୍ରାୟେ ॥
ଦନ୍ତ୍ରି ଧରି ଅକାଶ ମାର୍ଗେ ପିଙ୍ଗିଦ୍ୟନ୍ତି ।
ତୁଣ୍ଡ ତଳେ ପାଡ଼ି ଗିଳିଦ୍ୟନ୍ତି ବେଗି ବେଗି ॥
ଏକ ଗିଳନ୍ତେ ଅନେକ ଉଠନ୍ତି ଉଛୁଡ଼ି ।
ପ୍ରଳୟ ଘଟଣ ପ୍ରାୟେ ଶୁଭୁଅଛି ରଡ଼ି ॥
ଭୂମିରେ ଚରଣ ଟିକି ଅକାଶ ମାର୍ଗରେ ।
ରଙ୍ଗମଞ୍ଚ କରି ପାଟ ଲେହନ୍ତି ଦନ୍ତରେ ॥
ଧକ୍କାସୁର ସୈନ୍ୟ ଅଶୀଲକ୍ଷ ଘୋଡ଼ା ଭୁଲେ ।
କୋଠାସ୍ତ ଦେବୀ ମୁଖରେ ସମସ୍ତେ ପଡ଼ିଲେ ॥
ଅଶୀଲକ୍ଷ ଯୋଦ୍ଧା ସେହୁ ବନ୍ଧ ଏକ ମୁଖେ ।
ଅଗ୍ନି ଝଲକଇ ନାସରଙ୍କ ମହା ତୀକ୍ଷ୍ଣେ ॥
ପ୍ରଳୟ ଅନଳ ପ୍ରାୟେ ସର୍ବେ ମହାଚଣ୍ଡ ।
ସବୁ ଶର ପଶନ୍ତି ସେ ଦେବୀଙ୍କର ତୁଣ୍ଡ ॥
ଏଳମା ଗୋଳମା ହରକମା ମାରକମା ।
ଦୈତ୍ୟବଳ ଭିତରେ ଯେ ଏହାଙ୍କ ଗାରିମା ॥
ଯୋଜନେ ଯୋଜନେ ବାସ୍ତୁ ବଢ଼ାଇ ଦନ୍ତ୍ରି ।
ଖାଅନ୍ତି କେ ପାଞ୍ଚଶତ କେ ଶତେକ ଗଣ୍ଡି ॥
ଶୁଣ ହେ ପରୀକ୍ଷ ରାଜା ଦେବୀଙ୍କ ମହିମା ।
ଏକେ ଏକେ କେତେ କାହା ମହିମା ଗଣିମା ॥
ଏକେ ଏକେ ପରବତ ସମାନ ରାକ୍ଷସେ ।
ଶତ ଦୁଇଶତ ଯାନ୍ତି ଦେବୀଙ୍କ ଗରାସେ ॥
ତୁଣ୍ଡରେ ଲଗନ୍ତେ ଚୁପିଦ୍ୟନ୍ତି ବେନିପାଟ ।
ଅସ୍ଥି ମାଂସ ଚର୍ମ ସବୁ ଗୁଣ୍ଡା ହୋଇ ଉଠି ॥
ଏସନକ ଅନର୍ଯ୍ୟାପ ଦେବୀଙ୍କର କଥା ।
ସଂକ୍ଷେପି କହିବାକୁ କେ ପୁଣି ସାମରଥା ॥
ନାଚନ୍ତି ଗାବନ୍ତି ଧାମନ୍ତି ସେ କୁତୂହଳେ ।
ବଦରନ୍ତି ବିକଟାକ୍ଷୀ ମହେଶ୍ୱ ବହୁଳେ ॥
ମହା କୁତୂହଳେ ହୁଳହୁଳୀର ଶବଦେ ।
ପୃଥିବୀ କମ୍ପିଲା ଡାକେଶ୍ୱରଙ୍କର ନାଦେ ॥
ରଥ ଗଜ ଅଶ୍ୱ ଅନ୍ତସଳ କରି ଗିଳି ।
ରଣରଙ୍ଗ ରସରେ ସେ ସର୍ବେ ମରୁଅଳି ॥
କେ ଗଜ ଗିଳନ୍ତେ ଥୋର ରହଇ ବାହାରେ ।
କେ କଙ୍କାଳ ଖଣ୍ଡ ଗୁଡ଼େ ବାହାଡ଼ାଦାନ୍ତରେ ॥
କେ କାହାର ପାଦଠାରୁ ଧରି ଗିଳି ଦେଇ ।
ହାତ ଛଟପଟ କରୁଥାନ୍ତି ସୁହିଁ ସୁହିଁ ॥

କେ କାହା ବୁଲୁ ଭକ୍ତନ୍ତେ ହୋଏ ଛଟଫଟ ।
ଦନ୍ତେ ଧରି ଗୃପନ୍ତ୍ରେଣ ଶୁଭେ ଝଟମଟ ॥
ଅଶୀଲକ୍ଷ ଯୋଦ୍ଧା ତୁଲେ ଧଙ୍କାସୁର ଥିଲା ।
ପ୍ରହରକ ମଧ୍ୟରେ ତା ଥାଟ ନମକ୍ଷିଲା ॥
ଏଳମା ଗୋଳମା ମାରିକମା ଯେ କୁଠାଶୀ ।
ଏ ଗୃରହେଁ ଅଶୀଲକ୍ଷ ଥାଟ ଭକ୍ଷ କରି ॥
ସଇନ ହତ ଦେଖିଣ ଧଙ୍କାସୁର ଉଠି ।
କୁଠାଶୀ ଉପରେ ଲକ୍ଷେଶ୍ୱର ଗଦା ପିଟି ॥
ଦାନବ ପିଟନ୍ତେ ଦେବୀ ପାତଲେ ମଉଳ ।
ପର୍ବତ ସମାନ ଗଦା ପଡ଼ ହେଲା ଧୂଳ ॥
ଗଦାବର ଭାଜନ୍ତେ ସେ ହେଲା ଶୂନ୍ୟହସ୍ତ ।
ଭୁଷ୍ଣ୍ଡି ବସ୍ତ୍ରାଈ ଧାଇଁଲା କ୍ରୋଧରେ ଦଇତ ॥
ସେ ଗୃହ ଦେବୀଙ୍କି ଧରି ଧଙ୍କାସୁର ଟିଳ ।
ନାସିକା ବାଟେ ବାହାର ହୋଇଲେ ସେ ବାଳୀ ॥
ଧାଇଁଅସି ଚରଣକୁ ଧଇଲେ ଗୋଳମା ।
ଓଠାର ଅର ଚରଣ ନେଲେ ମାରିକମା ॥
ବେଳଭୁକ ଝିକନ୍ତ୍ରେଣ ଷ୍ଟାଣରେ ଏଳମା ।
ବେଳଫାଳ ହୋଇଲା ସେ ଅସୁର ବଇମା ॥
ଗୃହଜଣ ଟିଳଲେ ଯେ କରି ଗୃହ ଖଣ୍ଡ ।
ଉଲ୍ଲାସ ହୋଇଲା ତହିଁ ଚଉଦ ବ୍ରହ୍ମାଣ୍ଡ ॥
ଅକାଶରେ ଥାଇଣ ସେ ଦେବ ବେଦପତ ।
କୁଠାଶୀଙ୍କୁ ବହୁରୂପେ କଲେ ନତ ସ୍ତୁତ ॥
ଜୟ ତୁ କୁଠାଶୀ କରବାଳୀ ବିକଟାକ୍ଷୀ ।
ପ୍ରପନ୍ନ ଜନରକ୍ଷିଣୀ ମାତଙ୍ଗୀ କାମାକ୍ଷୀ ॥
ଭକ୍ତଜନବତ୍ସଳା ଗୋ ଅଟୁ କାମସେଣା ।
ଦେବୀମାନଙ୍କ ମଧ୍ୟରେ ଅଟୁ ତୁ ଦୁଲଣା ॥
ଅପଦ ଦୁଃଖ ଅରିଷ୍ଟି ତୁହି ହାଦେ ଖଣ୍ଡ ।
ତୋହର କୁଠାରେ ମାତ ଭୁବନକୁ ମଣ୍ଡ ॥
ଇଶ୍ୱର ହୃଦୟରୁ ତୁ ଅନଙ୍ଗମୋହନୀ ।
ପ୍ରସନ୍ନ ମାହେଶ୍ୱରୀ ଗୋ ପାତକନାଶିନ
ମାଗୋ ଧଙ୍କାସୁର ଗିଳୁଥିଲା ତପିମାନ ।
ସେ ହେତୁ ନଷ୍ଟ ହୋଇଲା ଜପ ତପ ସ୍ଥାନ ॥
ତପିମାନଙ୍କୁ ସେ ଗିଳୁଥିଲାଟ ଅଦ୍ୟାପି ।
ଧଙ୍କାସୁର ଦର୍ପେ ନାଶ ଗଲେ ସର୍ବ ତପୀ ॥
ତପିମାନଙ୍କ ଅଶ୍ରମ କଲୁ ତୁ ଗୋ ରକ୍ଷା ।
ଭକ୍ତଜନଙ୍କର ପୂରିଇଲୁ ମନୋବାଞ୍ଛା
ଧଙ୍କାସୁର ଦୈତ୍ୟ ଯହିଁ ହୋଇଲା ନିଧନ ।
ତପିମାନେ ରହିବେଟି ଯେଝା ତପଃସ୍ଥାନ ॥
ସେ ଧଙ୍କାସୁରକୁ ପେଷିଦେଲୁ ଯମପୁର ।
ଚୌଦ ବ୍ରହ୍ମାଣ୍ଡକୁ ଦେଲୁ ତୁ ଅଭୟ ବର ॥
ତେଣୁ ତୋତେ ଚତୁର୍ମୁଖ କଲେ ବହୁସ୍ତୁତ ।
ମୁହିଁ ମାନବ ଜନ୍ମେ କି ହୋଇବି ଭକତ
ଶ୍ରୀକୁଠାଶୀ ଦେବୀଙ୍କର ପାଦପଦ୍ମେ ସେବା ।
ନୂତ୍ୟମୁନ ଶାରଳାକୁ ଗତ ମୁକ୍ତ ଦେବା ॥
ଶୁଣ ହୋ ପରୀକ୍ଷ ରଜା କୁଠାଶୀ ମହିମା ।
ମୋହନମନ୍ତ୍ର ତାହାଙ୍କୁ ଦେଲେ ବେଦବ୍ରହ୍ମା ॥
ଧଙ୍କାସୁର ନାଶ ଦେଖି ଦୈତ୍ୟ ନିଅମ୍ବକା ।
ଅଷ୍ଟବଜ୍ର ହୋଇ ବେଗେ ଧାଇଁଇଁ ସେ ଏକା ॥
ଅକାଶରେ ଲାଗିଅଛି ନିଅମ୍ବକା ଶିର ।
ଯୋଜନେ ଯୋଜନେ ଲମ୍ବ ତାର ବେନିକର ॥
ମଞ୍ଚପୁରେ ଓଷ୍ଠ ତାର ଅକାଶରେ ପାଟ ।
ଶୂନ୍ୟ ଭୁବନ ସକଳ ତାର ଦେହ ଘୋଟ ॥
ଅଧଚ୍ୟ ଅଦୃଶ୍ୟ ହେଉଛନ୍ତି ଶୂନ୍ୟମାର୍ଗେ ।
ନିଅମ୍ବକା ମୂରତକୁ ଦେଖି ଦେବୀ ଦୁର୍ଗେ ॥
ବରିହିଲେ ଅସୁରଙ୍କ ମଧ୍ୟେ ଏ ଗାରିମା ।
ନିଅମ୍ବକାସୁରକୁ ମାର ଅଳ୍ପେ ମାରିକମା ॥
ଦୁର୍ଗା ଅଜ୍ଞାରେ ସେ ମାରିକମା ବେଗେ ଉଠି ।
ବାମକରେ ତ୍ରିଶୂଳ ଯେ ଦକ୍ଷକରେ ଯଷ୍ଟି ।
ଧନୁଶର କୁଠାର ଯେ ଖଡ୍ଗ ଗଦା ଧରି ।
ମହାମନ୍ତ୍ର ବ୍ୟାଘ୍ର ପିଠିପରେ ବିଜେ କରି ॥
ଲହ ଲହ ଜିହ୍ୱା କରି ଧାଏଁ ଶାକମ୍ବସା ।
ନିଅମ୍ବକାସୁର ସମ କାୟାକୁ ବିସ୍ତାରି ॥
ବ୍ରହ୍ମାଣ୍ଡ ଘୋଟିଛି ସେହି ଦୈତ୍ୟ କାମରୂପୀ ।
ତା ଉପରେ ବଜ୍ରଶୂଳ ଘେନି ଦେବୀ କ୍ଷେପି ॥
କୋଟିଏ ସୂର୍ଯ୍ୟର ତେଜ ଦେଖି ଦୁଷ୍ଟଦୈତ୍ୟ ।
ପଦ୍ମନ୍ତ୍ରେଣ ଶୂଳକୁ ସେ ଧରେ ବେନି ହାତ ॥
ସେହି ଶୂଳ ନେଇଉଠାଇ ବୁଲାଇ ପିଟିଲା ।
ମାରିକମାର ଲଲାଟ ପାଟିରେ ପଡ଼ିଲା ॥
ପର୍ବତେ କମ୍ପିଲେ ପଡ଼ନ୍ତେଣ ମହା ଶୂଳ ।
ସହିଷ୍ଣେ ଖଣ୍ଡ ହୋଇଣ ପଡ଼େ ଭୂଜ ତଳ ॥
ଶୂଳ ଭାଜନ୍ତେଣ ପ୍ରସରଇ ସେ ପାପିଷ୍ଠ ।
ବଜ୍ର ମୁଦୁଗର ଘେନି ପିଟିଲା ଦର୍ପିଷ୍ଠ ॥

ମାରକମା ରୂପରେ ପଞ୍ଚ ବଜ୍ରବାଣ ।
ଗୃଣ୍ଠଁ ଗୃଣ୍ଠଁ ଉପୁଡ଼ ସେ ପଡ଼ିଲା ତତ୍କ୍ଷଣ ॥
ରଥେକ ଧର ଧାଇଁଲା ତ୍ରିଅମ୍ବିକା ପୁଣ ।
ଦେବୀଙ୍କ ଉପରେ ନେଇ ପେଷି ତତକ୍ଷଣ ॥
ଲୋହସାର ପରସ୍ତ୍ୟେକ ଦେବୀ ବଜ୍ରଦେହା ।
ଅଭେଦ କବଚେ ପଡ଼ ଶସ୍ତ୍ର ହୋନ୍ତି ଚୂନା ॥
ଅନଳବାଣ ପେଷିଲା ତ୍ର୍ୟମ୍ବକା ପ୍ରାଭବ ।
ମାରକମା ଶରୀରରେ ପଡ଼ ଅଗ୍ନି ଲଭ ॥
ଲୁହା ଗଦା କୋଟିଏକ ସହସ୍ର ଯେ ଭାର ।
ତାହାସେନ ପେଷିଲାକ ଦେବୀଙ୍କ ଉପର ॥
ଯେ ଗଦା ପଡ଼ଇ ଯାଇଁ ଦେବୀଙ୍କର ପିଠି ।
ଗିରିବର ସମ ଗଦା ପଡ଼ ଧୂଳି ଉଠି ॥
ପବନୁ ବେଗେ ପାବେଳ ସେନଣ ପ୍ରହାର ।
ଯଷ୍ଟି କୁନ୍ତ ମୁରୁଜ ତ୍ର୍ୟମ୍ବକାସୁର ମାର ॥
ସମର କରନ୍ତେ ହେଲା ଚନ୍ଦ୍ରଗଡ ସନ୍ଧି ।
ଶସ୍ତ୍ରମାନଙ୍କ ଘଷାତେ ଅଗ୍ନି ଝଲକନ୍ତି ॥
ଲୋହିତ ବର୍ଣ୍ଣ ପରସ୍ତ୍ରେ ଦଶେ ରଣଭୂମି ।
ସ୍ଖଳନ୍ତି ଦାନବ ବଳ ବଳେ ଉତକର୍ମୀ ॥
ସହସ୍ରେ ବାର ପ୍ରହାର କଲା ତ୍ରିଅମ୍ବିକା ।
ବିଫଳ ହୋଇବା ଦେଖି ହୋଇଲା ତାଟକା ॥
ଶସ୍ତ୍ରସବୁ ଭଙ୍ଗନ୍ତେଣ ହେଲା ଶୂନ୍ୟହସ୍ତ ।
ପର୍ବତ ପ୍ରାୟେକ ଉଭା ହୋଇଛି ଦଇତ ॥
ନବନଖିକୁନ୍ତ ମାରକମା ଯେ ମାଇଲେ ।
ଅସୁର ଦେହେ ପଡ଼ନ୍ତେ ଚେତାଶୂନ୍ୟକଲେ ॥
ଯେତେବେଳେ କୁନ୍ତ ଯାଇ ତା ଦେହରେବାଜ ।
ଛତ ହୋଇ ପଡ଼ିଲାକ ଦୈତ୍ୟ ଗଳଗାଜ ॥
ମାରକମା ମାଡ଼ବସେ ତାର ବକ୍ଷସ୍ଥଳେ ।
ବୁକୁ ଚୀରି ଅନ୍ତ୍ର କାଢ଼ି ଲମ୍ବାଇଲା ଗଳେ ॥
ପାଦେ ପାଦ ମାଡ ଅର ପାଦ ଉଚ୍ଚିଡ଼ିଲା ।
କୋପେ ବେଣ ଫାଳ କରି ଚୀରି ପକାଇଲା ॥
ଅସ୍ଥି ଚର୍ମ ମାଂସ ରକ୍ତ କ୍ଷେପି ଗର୍ଭଗତେ ।
ଅସୁର ସୈନ୍ୟ ସହିତେ ଗିଳିଲା ତ୍ୱରିତେ ॥
ତ୍ରିପୁର ଜିଣିପାରଇ ଯେଉଁ ତ୍ରିଅମ୍ବିକା ।
ମାରକମା ଦେବୀ ତାକୁ ଗିଳିଦେଲେ ଏକା ॥
ଅନେକ ରୂପେ ଉସତ ହେଲା ମସ୍ତଦେବୀ ।
ଅମୃତ ବୃଷ୍ଟି କରଇ ମାରକମା ସେବ ॥
ଜୟ ତୁ ମାରକମା ଗୋ ରଖିଲୁ ସଂସାର ।
ଅଡବଡ ତୋର ଏ କୌତୁକ ସମର ॥
ଜୟ ତୁ ମାରକମା ଗୋ ଅସୁର ବିନାଶି ।
ଜୟ ତୁ ମାରକମା ଗୋ ଦେବଙ୍କୁ ଉଶ୍ୱାସି ॥
ଜୟ ତୁ ମାରକମା ଗୋ ତ୍ର୍ୟମ୍ବକା ସଂହାରି ।
ଜୟ ତୁ ମାରକମା ଗୋ ଅଦ୍ଧ ଶାକମ୍ଭରୀ ॥
ମାରକମା ଦେବୀଙ୍କର ଚରଣ ଯୁଗଳେ ।
ଶୂଦ୍ରମୁନ ଶାରଳାର ଶିର ସଦା ଲୁଳେ ॥
ତ୍ରିଅମ୍ବିକା ଅସୁର ଯେ ପଡ଼ିଲାକ ରଣେ ।
ଅନେକ ଉସତ ହେଲେ ଦେଖି ଦେବଗଣେ ॥
ପଞ୍ଚଷଷ୍ଠି ସାଗର ଯେ ତ୍ରିଅମ୍ବିକା ଥାଟ ।
ଏକୁ ଏକ ଦାନବ ସେ ଅତ୍ୟନ୍ତ ଗରିଷ୍ଠ ॥
ପାଶ ପରଶୁ କୁଠାର ଗଦା ଘେନ ଉଠି ।
ନାନା ଅସ୍ତ୍ର ମାରକମା ଉପରେଣ ପେଷ୍ଟି ॥
ଦେଖିଲେ ସେ ଦୈତ୍ୟ ବଳ ମହାତେଜାସ୍ୱାନ ।
ଚଉଦକୋଶ ଓସାରରେ ଛନ୍ତି ପରିପୂର୍ଣ୍ଣ ॥
ଦନ୍ତ୍ୟଚିରୁ ପଢ଼ିଲେ ଦେବୀ ତହୁଁ ହେଇଁ ।
ଗୃଣ୍ଠଁ ଗୃଣ୍ଠଁ କ୍ଷଣକରେ ସବୁ ଦେଲେ ଖାଇ ॥
ଯେସନେକ ପର୍ବତରୁ ପଡ଼େ ଜଳ ଖସି ।
ନିଶ୍ୱାସ ଟାଣନ୍ତେ ଗର୍ଭ ମଧ୍ୟେ ଯାନ୍ତି ପଶି ॥
କେ ଶର ମାରନ୍ତି ହାଣନ୍ତି କେ ଧରି ଖଣ୍ଡା ।
କେ କୁନ୍ତ ଶକ୍ତି ମାରଇ କେବଣ ଗୃମଣ୍ଡା ॥
ମାରବା ଶସ୍ତ୍ର ସମସ୍ତ ପଶୁଛନ୍ତି ଗର୍ଭେ ।
ତୁଣ୍ଡ ନ ଶୁଣାନ୍ତି ପୁଣ ଥାନ୍ତି ମଉଗର୍ବେ ॥
ଏକାକେ ଖାଅନ୍ତି ପାତାଳରେ ଦେଇ ପାଟ ।
ଗର୍ଭେ ପଶନ୍ତି ଅସୁର ବଳ ଲକ୍ଷ କୋଟି ॥
ପଞ୍ଚଷଠି ସାଗର ଯେ ତ୍ରିଅମ୍ବିକା ବଳ ।
ନବଘଡ଼ିର ମଧ୍ୟରେ ପଡ଼ିଲେ ସକଳ ॥
ରକତ ମହାଏ ନାହିଁ ହାତ ଗୋଡ଼ ମୁଣ୍ଡ ।
ଭୂମିରେ ପଡ଼ିବା ନାହିଁ କାହାର ସେ ପିଣ୍ଡ ॥
ଅସ୍ଥି ଚର୍ମ ଅନ୍ତ୍ର ଅଦ୍ଧ ରକତ ଯେ ମାଂସ ।
ସମସ୍ତ ଭକ୍ଷଣ କଲେ ନ ରହିଲା ଶେଷ ॥
ଏମନ୍ତ ପ୍ରକାର ଅଟେ ଚଣ୍ଡୀଯୁଦ୍ଧ କଥା ।
ମାନବ ଜନମ ହୋଇ କେ ଏହା ଲେଖନ୍ତା ॥
ବଜ୍ରାଙ୍ଗ ଦଇତ ପୁଣି ଭସ୍ମର ଅସୁର ।
ଏ ଦୁହିଙ୍କ ତୁଲେ ଯୋଦ୍ଧା ପଦର ସାଗର ॥

ରଣରଙ୍ଗରେ ଅସୁରେ ମହାମତ୍ତେ ଗର୍ଜି ।
ବଜ୍ରାଙ୍ଗ ଭସ୍ମାସୁର ଦୁହେଁ ଗଲଗାଜି ॥
ଯେସନେକ ସିନ୍ଧୁ ଅମ୍ବ ଅଟକାଇ କୂଳ ।
ତେସନ ବେଢ଼ିଲେ ଯାଇଁ ସେ ଦେବୀ ମଣ୍ଡଳ ॥
ଦେଖିଲେ ଅସୁରଙ୍କର ଦର୍ପ ମହାତେଜ ।
ବିଚାରିଲେ କାହିଁ ନାଶ ହୋଇବେ ଦନୁଜ ॥
ଏମନ୍ତ ଭାଳି ଶ୍ରୀଦୁର୍ଗା ଦେବୀ ପରଚଣ୍ଡୀ ।
କଟୀଭାଗୁଁ ଜାତ କଲେ ଦେବୀ ରାମଚଣ୍ଡୀ ॥
ଜୟଚଣ୍ଡୀ କୁମାରୀ ମାରୁଣୀ ଅମ୍ବରାକ୍ଷୀ ।
ସୁନାକ୍ଷୀ ରୂପାକ୍ଷୀ କାମନାକ୍ଷୀ ବଜୁଳାକ୍ଷୀ ॥
ଝଂଝାଶୁଣୀ ଶୂଳେ ଦଶଟଗୋଟି ଜନମିଲେ ।
ଶ୍ରୀ ଦୁର୍ଗତି ତାରଣୀ ଯେ ତାଙ୍କୁ ଆଜ୍ଞା ଦେଲେ ॥
ତୁମ୍ଭେ ଦଶଜଣ ଅଟଲ ଏହକ୍ଷଣି ଯାଅ ।
ବଜ୍ରାଙ୍ଗ ଭସ୍ମର ଦୈତ୍ୟ ବଳ ସବୁ ଖାଅ ॥
ମିଶିଲେ ମା ଆଜ୍ଞାପାଳ ଦଶ ଗୋସାମଣୀ ।
ବ୍ରହ୍ମାଣ୍ଡ ଘୋଟିଲେ ଶ୍ୟେନପକ୍ଷୀ ଯୂଥ ଜାଣି ॥
ଶୁଣ ପରୀକ୍ଷ ରାଜା ଏ ଚଣ୍ଡୀଙ୍କ ମହିମା ।
ଯୁବା ବୟସ ପରାୟେ ହେଲେ ସର୍ବ ବାମା ॥
ନାଗରୀ ଯେମନ୍ତେ ଅସେ ନାଗରର ସଙ୍ଗ ।
ନାନାରୂପେ ଆରମ୍ଭ ସେ କରନ୍ତ ପ୍ରେମରଙ୍ଗ ॥
ସେହିରୂପେ ଦେଖାଇଲେ ସେ ଅଙ୍ଗ ବିଭଙ୍ଗ ।
କାମଶର ଭେଦିଲା ସେ ଅସୁରଙ୍କ ଅଙ୍ଗ ।
ମଦନ ବାଣରେ ସେହୁ ହେଲେ ଅସାକ୍ଷମ ।
ଶସ୍ତ୍ର ପକାଇ ଅସୁରେ ହେଲେ ମତିଭ୍ରମ ॥
ମାତଙ୍ଗୀ କାମାକ୍ଷୀ ମୋହନୀ ଯେ କାମସେଣା ।
ଦେଖି ଦୈତ୍ୟେ କାମେଅନ୍ଧ ହେଲେ ସର୍ବେଜଣା
ଶୃଙ୍ଗାର ଦେବ ବୋଲି ସେ ଅଣିଲେକ ଭଣ୍ଡି
ଝନ୍ଧ୍ୟଗିର ଝୋଟନେଇ ଉରଲେନ ଚଣ୍ଡୀ ॥
ସଙ୍ଗାତ ସଙ୍ଗାତ ବୋଲି ଭ୍ରେଟଲ କଲେ କୋଳ ।
ନଖ ବୁଡାଇ ବୁକୁରେ କଲେ ବେନଫାଳ ॥
ଆକାଶକୁ ଫିଙ୍ଗି ତଳେ ଦେଲେ ପାତି ତୁଣ୍ଡ ।
ଗୃପଟେ ଦନ୍ତେଣ ଧରି ହୋନ୍ତି ଗୋଡ଼ମୁଣ୍ଡ ॥
ହସ୍ତେ ହସ୍ତ ଧରି କେହୁ ମୁଖେ ଚୁମ୍ବ ଦ୍ୟନ୍ତି ।
ତୁଣ୍ଡ ଭିତରେ ଭରଣ ମୁଣ୍ଡକୁ ଗୃବାନ୍ତି ॥
ଆଉଜଣେ ଅସି ଖଣ୍ଡେ ଉଚ୍ଛୁଡ ଦେଇ ।
ତାହାଙ୍କଠୁଁ ଅସି ଅନ୍ୟ ଉଚ୍ଛୁଡଣ ନେଇ ॥

ଏକ ଜନ୍ତୁହସ୍ତେ ଅନ୍ୟ ଭୂମିକୁ ପାତଇ ।
ନାନା କୌତୁକ ଲଗାଇ ଯାଆନ୍ତି ସେ ଖାଇ ॥
ଏକା ଗରାଏକେ ଲକ୍ଷେ ଲକ୍ଷେ ଜଣ ଖାଇ ।
ତଥାପିହିଁ ତାହାଙ୍କର କ୍ଷୁଧା ତ ନ ଯାଇ ॥
ସୈନ୍ୟବଳ ସମସ୍ତେତ ପାଇ ଅପଚୟେ ।
ଶ୍ୟେନ ପକ୍ଷୀ ପରାୟେକ ହେଲେ ମହାମାୟେ ॥
ଜୟଚଣ୍ଡୀ ନାମଧାରୀ ଯେଉଁ ଚଣ୍ଡୀ ଗୋଷ୍ଠ ।
ସମୁଦ୍ର ସମାନ ତାକୁ ରୁଧିର ନ ଅଣ୍ଟି ॥
ସଙ୍ଗ୍ରାମ ନ କଲା ସେହୁ ମୋହି ଏକା ଜଣେ ।
ସବୁନ୍ତି ମାରିଲା ସେହୁ ମୋହଶର ବାଣେ ।
ସେ ଅସୁର ସଇନ୍ୟକୁ ଲାଗିଲା ଭେଳକି ।
ବିନା ଯୁଦ୍ଧେ ନାଶ କଲେ ଦେବୀ ସେ କାମାକ୍ଷୀ ॥
ବାହୁଣୀ ବାଘାକ୍ଷୀ ମସରାକ୍ଷୀ ଦୁଲଣାକ୍ଷୀ ।
ଘମାକ୍ଷୀ ଆଉ ଜ୍ୱରାକ୍ଷୀ ମୂନାକ୍ଷୀ ତରାକ୍ଷୀ ॥
ଲଙ୍କାକ୍ଷୀ ଏହାଙ୍କୁ ଡାକି କରି ପାଶେ ବେଗେ ।
ଅସୁରଙ୍କୁ ଖାଅ ବୋଲି ଆଜ୍ଞା ଦେଲେ ଦୁର୍ଗେ ॥
ଏସନେକ ଆଜ୍ଞା ଯହୁଁ ଦେଲେ ଜଗନ୍ମାତା ।
ଆକାଶକୁ ଝେପନ୍ତି ସେ ନ ଯାଇ ଚକ୍ଷିତା ॥
ମର ମାର ବୋଲି ଉଗ୍ରତାରା ମାରକମା ।
ବେଗେ ବେଢ଼ି ଦୈତ୍ୟଙ୍କର ଭଙ୍ଗିଲେ ଗାରମା ॥
ବଜ୍ରେକଣ୍ଠିକଣ୍ଠାର ଯେ ହସ୍ତେ ଧରି ଖଣ୍ଡା ।
ଭଇରବୀ ଚର୍ଚ୍ଚିକାଇ ବାସେଳୀ ଗୃମୁଣ୍ଡା ।
ଅମ୍ବିକା କୁଠାରୀ ମୂଳେ ଅଠାଇଶ ଚଣ୍ଡୀ ।
ରୁଧିର ସିନ୍ଦୂରେ ସମସ୍ତଙ୍କ ମୁଖ ମଣ୍ଡି ॥
ଶୁଣ ହୋ ପରୀକ୍ଷ ରାଜା ଶୁକମୁନି ବୋଲେ ।
ଅଠାଇଶ ଦାନବଙ୍କ ଉପରେ ଲାଗିଲେ ॥
କତା ମୃଦଙ୍ଗ ମର୍ଦ୍ଦଳ ଧମୁରି ସୌରଣ୍ଡି ।
ବଜାଇ ନବରଙ୍ଗରେ ନାଚ ଖେମଟା ନାଟ ॥
ଅପଦ ବନାନିଶୀ ସେ ମଦ୍ୟପାନେ ଜଡ ।
ବ୍ରହ୍ମାଣ୍ଡ ଉଚ୍ଛୁଡ଼ି ଅଛି ମୁଖ ରାବ ବଡ ॥
ଅସୁରଙ୍କ ସଂହାରକୁ ନ କରନ୍ତି ଭୟେ ।
ବଜ୍ରରେ ନିର୍ମିତ ଅଟେ ଦଇତଙ୍କ କାୟେ ॥
ସମରଂ କରନ୍ତି ବେନିବଳ ଏକ ହୋଏ ।
ବନ୍ଧନ୍ତି କୋପେ ନାଗର ଅସୁରେ ନିର୍ଭୟେ ॥
ଘୋର ଯୁଦ୍ଧ କରନ୍ତେଣ ଦ୍ୱିପ୍ରହର ଗଲା ।
ଉଗ୍ରତାରା ବେନିଲକ୍ଷ ଦାନବ ଗିଳିଲା ॥

ଏକାବେଳେ ଢୋଲକଣ୍ଠ ଧରନ୍ତି ଦଶଣ୍ଡି ।
ଯୋଜନେ ଯୋଜନେ ଲମ୍ବ ତାଙ୍କ ଭୁଜଦଣ୍ଡି ॥
ଲକ୍ଷେ ଦୁଇଲକ୍ଷ ବଳାଙ୍କ ମର୍ଦ୍ଦିତ ଦାନବ ।
ଭୀମରୌଦ୍ର ପେଟରେ ଯେ ଏତେ ହୁଏ ଠାବ ॥
ଏମନ୍ତେ ସେ ଏକେ ଏକେ କେତେଦୈତ୍ୟଗିଳି ।
ଶିରମାନ ଦେଖାଯାନ୍ତି ବାହାରେ ନିକଳି ॥
କୋଷ୍ଠାନଳ ଅଗ୍ନି ବାଳ ଅନଳ ବହ୍ନନ ।
ପିଙ୍ଗଳ ଜ୍ୱାଳାଅନଳ ଜାଣି ମହା ଅଗ୍ନି ॥
ମହାଘୋର ରୌଦ୍ର ଯେ ଯେ ପ୍ରଳୟାନ୍ତ ଜାଣି ।
ଦଗ୍ଧ ଅନଳ ବଡ଼ବା ଅନଳ ବହ୍ନନ ॥
ଯୋଗାନଳ ମହା ଅଗ୍ନି ସେ ଦିବ୍ୟ ଅନଳ ।
କାଳାନଳ ବୈଶ୍ୱାନର ଲୋହିତ ପିଙ୍ଗଳ ।
ଏ ଅଗ୍ନିମାନେ ଥାଆନ୍ତି ଦେବୀଙ୍କର ପେଟେ ।
ପଡିଲେ ଦହନ ହୁଅନ୍ତି ଗିଳିଲେ ନ ଅଣ୍ଟେ ॥
ଶ୍ୟାମଚଣ୍ଡୀ ଜୟଚଣ୍ଡୀ ଉଦର ବହ୍ନନ ।
ଏଥିକୁ ଅସୁର ହେଲେ ଘୃତସମ ଜାଣି ।
କୁଠାସ୍ୟ ବ୍ୟାଘ୍ରବଦନୀ ଚର୍ଚ୍ଚିକା ବାସେଳୀ ।
ପ୍ରଳୟ ପ୍ରାୟ ଅସୁର ସଇନକି ଜଳି ॥
ସଇନ ପଡ଼ନ୍ତେ ସେ ଯେ ବଜ୍ରାଙ୍ଗ ଅସୁର ।
କୋଟି କୋଟି ବଳ ସଙ୍ଗେ ଧରି ବୀରବର ॥
ପାଞ୍ଚ ପାଞ୍ଚ କୋଟିଶର ବାନ୍ଧି ଖଡ୍ଗମୁନା ।
ମେରୁ ମର୍ଦ୍ଦନ ଅଟଇ ଯାହାଙ୍କର ବାନା ॥
ଶ୍ୟାମଚଣ୍ଡୀର ସଂଗ୍ରାମ ବଜ୍ରାଙ୍ଗର ତୁଲେ ।
ଜୟଚଣ୍ଡୀ ଯେ ଅସୁର ତୁଲରେ ଯୁଝିଲେ ॥
ଆଉ ଦେବୀମାନେ ସର୍ବେ ପଡ଼ିଲେକ ମାଡି ।
ଅସୁରବଳ ଭଙ୍ଗିଲେ ଦନ୍ତରେ କାମୁଡ଼ି ॥
ଦୈତ୍ୟେ ନାରାଚ ବନ୍ଧନ୍ତି ହୋଇ ଏକମୁଖ ।
ବଢ଼ାଇ ଦୁରପଦରେ ପାଇ ବହୁ ଦୁଃଖ ॥
ରୁଧିରରେ ବଲେପନ ଦେବୀଙ୍କର ଅଙ୍ଗ ।
ଅବଶାନ୍ତ ସମର ସେ କରି ରଣରଙ୍ଗ ॥
ଶୁଣ ହେ ପରୀକ୍ଷ ରାଜା ବଜ୍ରାଙ୍ଗର ତୁଲେ ।
ଶ୍ୟାମଚଣ୍ଡୀ ମହା ଘୋର ଯୁଦ୍ଧ ଆରମ୍ଭିଲେ ॥
ନାହିଁ ହୋଇଲା ନଥିବ ବ୍ରହ୍ମାଣ୍ଡ ଭିତର ।
ଦେବଙ୍କ ଦୁର୍ଲ୍ଲଭ ମାନବରେ ଅଗୋଚର ॥
ଏକାଦଶମୁଖା ଶର କାଳାନ୍ତକ ଶକ୍ତି ।
ବଜ୍ରାଙ୍ଗ ମାରିଲା ନେଇ ହୋଇ କୋପମତି ॥

ବାରୁଣୀ ଶସ୍ତ୍ର ମାରିଲେ ଦେବୀ ଶ୍ୟାମଚଣ୍ଡୀ ।
ମହାରୁଦ୍ର ଶରେ ଦୈତ୍ୟ ହୋଇଲାକ ଖଣ୍ଡି ॥
ରଣରଙ୍ଗ ଧନ୍ଦାଳାରେ ବଜ୍ରାଙ୍ଗ ଦଇତ ।
ଶ୍ୟାମଚଣ୍ଡୀ ଉପରରେ ପ୍ରହାରେ ପର୍ବତ ॥
ଅନ୍ତରୀକ୍ଷେ ବୁଲାଇଣ ପିଟେ ଦେବୀ ମୁଣ୍ଡ ।
ଟେଳା ବାଜିଲା ପ୍ରାୟେ ସେ ହେଲା ଖଣ୍ଡ ଖଣ୍ଡ ॥
ପର୍ବତ ଭାଜନ୍ତେ ଦୈତ୍ୟ ହେଲା ଅତି ରାଗ ।
ଶ୍ୟାମଚଣ୍ଡୀ ଧାଇଁ ଶୂଳ ମାରିଲେକ ବେଗ ॥
ବକ୍ଷସ୍ଥଳରେ ପଡ଼ିଲା ଯେ ଶୂଳ ଶକତି ।
ହୃଦେପଡି ଫୁଟି ଗଲା ସେହୁ ପିଠିକତି ॥
ଘାଏଣ ଦାନବ ହେଲା ଯେ ଉତ୍ତାନଶାୟୀ ।
ବକ୍ଷସ୍ଥଳେ ମାଡ଼ି ବସିଲେକ ମହାମାୟୀ ॥
ଶୁଣ ହେ ପରୀକ୍ଷ ରାଜା ଶୁକମୁନି ବୋଲେ ।
ଏତେହେ ଏତେହେ ଦଇତେ ଯେ ଅଟଳ୍ପ ନ ଶଗଲେ ॥
ନବସହସ୍ରବର୍ଷ ତପ ବ୍ରହ୍ମାଙ୍କୁ ତୋଷିଲା ।
ଅଜୟ ବରପାଇଣ କ୍ଷଣେ ନାଶ ଗଲା ॥
ବଜ୍ରାଙ୍ଗ ଦୈତ୍ୟକୁ ମାରିଲେକ ବଜ୍ରଶକ୍ତି ।
ତେବେ ଯାଇଁ ହେଲା ତାକୁ ମୃତ୍ୟୁ ପରାପତି ॥
ବଜ୍ରାଙ୍ଗ ରଣେ ପଡ଼ିବା ଦେଖି ଦେବଲୋକେ ।
ଶ୍ୟାମଚଣ୍ଡୀ ଶିରେ ପୁଷ୍ପ ବର୍ଷିଲେ ଉତ୍ସୁକେ ॥
ସମସ୍ତ ଦେବତାମାନେ ମିଳି କଲେ ସ୍ତୁତି ।
ଜୟ ତୁଗୋ ପରମାର୍ଥି ନମୋ ଅଦ୍ଭମୂର୍ତ୍ତି ॥
ଶ୍ରୀ ଶ୍ୟାମଚଣ୍ଡୀ ଚଳନ୍ତେ ପିଟଇ ଦୁର୍ଗତି ।
ନାମ ସ୍ମରନ୍ତେ ହୁଏ ଦୁର୍ଲ୍ଲଭ ସୁଗତି ॥
ଅନ୍ତ ବ୍ରତେ ଭଜିବାକୁ ହେଉ ପରକାଶ ।
କଉତୁକରେ ଖଣ୍ଡନ କରୁ ପାପ ଦୋଷ ॥
ଯା ନାମ ଧରନ୍ତେ ଯମ ଅର୍ଗଳ ଭାଜଇ ।
ଦରିଦ୍ର ଦୁଃଖ ଯାଇଣ ସୁଖ ଉପୁଜଇ ॥
ସେ ତାରଣୀ ଶ୍ୟାମଚଣ୍ଡୀ କରୁ ଏବେ ରକ୍ଷା ।
ହୃଦଗତେ ଚନ୍ଦ୍ର ନରେ ଲଭି ମନବାଞ୍ଛା ॥
ଯୋଗେଯୋଗେଶ୍ୱରୀ ସେହେ ଜଗଜ୍ଜନମାୟେ ।
ସ୍ମରନ୍ତେ ମାତଙ୍ଗୀଙ୍କି ଅଭୟ ସେ ଦିଏ ॥
ଦୁର୍ଗାଙ୍କର ଚରିତ ଯେ ପଢ଼ନ୍ତି ଶୁଣନ୍ତି ।
କି ଅବା ନିର୍ମଳ ମନେ ହୃଦୟେ ଗୁଣନ୍ତି ॥
ଭଜନ ସ୍ମରଣ କଲେ ପାପ ହୁଏ କ୍ଷୟେ ।
ଅପଦ ଅରିଷ୍ଟି ଖଣ୍ଡିଦ୍ୟନ୍ତି ମହାମାୟେ ॥

ଭୂଦେବ ଯେତେବେଳେ କାଳପରଯନ୍ତ ଥାଇ ।
ଗୁହିଁ ତେତେବେଳ ଥିବ ଏହି ଆଜ୍ଞା ଦେଇ ॥
ତଥାସ୍ତୁ ବୋଲିଣ ଆଜ୍ଞା ଦେଲେ ଦାନବର ।
ଯାହା ମାଗିଲ୍ ସେ ତୋତେ ମିଳୁ ତତପର ॥
ମାନଙ୍କ ବୋଇଲା ମାଗୋ ମାଗୁ ମାଗୁ ବର ।
ଅସ୍ତ ହୋଇଣ ଅଦିତ୍ୟ ଗଲେ ନିଜ ପୁର ॥
ବର ପାଇଣ ଦଇତ ମିଳି ନିଜପୁରେ ।
ଯାଇଁଣ ରହିଲା ସେହି ସମୁଦ୍ର ଭିତରେ ॥
ମାନଙ୍କ ବୋଇଲା ମାଗୋ ଏ ଦଇତ ଶ୍ରେଷ୍ଠ ।
ତୋତେ କରିବ ଅନେକ କଷ୍ଟ ଏ କପଟ ॥
ଅଦିତ୍ୟ ଦେବ ଅକାଶୁଁ ଅସ୍ତ ହେବା ଯାଏ ।
ଦେବରଥ ଚଢ଼ି ଶୂନ୍ୟେ ଥିବୁ ମହାମାୟେ ॥
ନୋହିବ ଦିବସ ମଗୋ ନୋହିବାକ ସନ୍ଧି ।
ସନ୍ଧ୍ୟା ସମୟରେ ଭେଟ ହେବୁ ଅସି ଧାଇ ॥
ମାତ ଗୋ ସନ୍ଧ୍ୟା ସମୟ ସତାବନ ଲତା ।
ତେତେବେଳରେ ମାରିଲେ ମରିବ ଦଇତା ॥
ଦିବସେ ନ ମରିବ ଏ ସର୍ବେ ନାହିଁ ମୃତ୍ୟୁ ।
ଏକଥା ଯେ ମନେ ଥିବ କହିଲି ଏ ତତ୍ତ୍ୱ ॥
ଶୁଣ ହେ ପରୀକ୍ଷ ରାଜା ଦଇତର ଭୁଲେ ।
ଜୟଚଣ୍ଡୀ ଦେବୀ ଘୋର ସଂଗ୍ରାମ ରଚିଲେ ॥
କହିଗଲା ମାତଳି ଯେ ଦେଇ ପୁଷ୍ପଯାନ ।
ଜୟଚଣ୍ଡୀ ବିଜେ କଲେ ତହିଁରେ ଯାଇଣ ॥
କାମରୂପୀ ହୋଇ ଦେବୀ ପୁଲକାଇ କାୟେ ।
ଶତେ ଭୁଜ ବିକାଶିତ କଲେ ମହାମାୟେ ॥
ପଞ୍ଚାଶ ଭୁଜରେ ପାଞ୍ଚଶତ ଧନୁ ଧରି ।
ଦୁର୍ବନ୍ତକ ବଳକୁ ସେ ଶରବୃଷ୍ଟି କରି ॥
ଅନେକ ଦେବ ଶସ୍ତ୍ର ଯେ ବିନ୍ଧିଲା ଅସୁର ।
ଜୟଚଣ୍ଡୀ ଦେବୀ ଦେହେ ପଡ଼ି ହୋନ୍ତି ଚୂର ॥
ସୂର୍ଯ୍ୟାବର୍ତ୍ତକ ଚକ୍ରେକ ସୂର୍ଯ୍ୟ ଦେଇଥିଲା ।
ଅସୁର ଜୟଚଣ୍ଡୀଙ୍କୁ ସେ ଚକ୍ର ମାରିଲା ॥
ଅପାଳଟ ଦେବ ଚକ୍ର ସେହି ଯେ ଅଟଇ ।
ଅବଶ୍ୟ କାର୍ଯ୍ୟକୁ କରି ପଛେ ଲେଉଟଇ ॥
ଯାହାଙ୍କୁ ପେଷଇ ସେହି ହୁଅଇ ଦହ୍ୟ ।
ଜଗତ ଦହି ପାରଇ ସେ ଚକ୍ରର ତେଜ ॥
ସେ ଚକ୍ର ଧରିଣ ଅଣ୍ଟେ ମାରିଲା ଦଇତ ।
ଜଳେ ଗୋପ୍ୟ କଲେ ନେଇ ଜୟଚଣ୍ଡୀ ରଥ ॥

ଲୋଡ଼ିଣ ନ ପାଇଲା ସେ ଚକ୍ର ମଣ୍ଡମଧ୍ୟେ ।
ଅନେକ ଖୋଜିଲା କିଛି ନ ପାଇଲା ସାଧେ ॥
ଏମନ୍ତ ସମୟେ ରବି ଅସ୍ତାଚଳେ ଗଲେ ।
ଜଳରୁ ସେ ଜୟଚଣ୍ଡୀ ବାହାର ହୋଇଲେ ॥
ଅସୁରକୁ ଭେଟିଲେ ସେ ବେନିଘଡ଼ି ରାତି ।
ରଡ଼ ଶବଦରେ ତିନି ଭୁବନ କମ୍ପାନ୍ତି ॥
ପୁଣ ସମର ହୋଇଲା ମହା ନିଶାକାଳେ ।
ଦାନବ ସଇନ ବୁଲନ୍ତି ଯେ ଅନ୍ତରାଳେ ॥
ଗୋଡ଼ାଇ ଅଛନ୍ତି ପଛେ ଚୌଷଠି ଦେବଗଣ ।
ଅସୁର ବଳ ଧରିଣ ଭକ୍ଷି ଦବାରବି ॥
କେହୁ ରଣେ ପଡ଼ି କେହୁ ପଳାଇଣ ଗଲା ।
ବନାରଣେ ନାଶଯାନ୍ତି ଜାଣନ୍ତା ନୋହିଲା ॥
ଚଉଦ ସାଗର ଥିଲେ ଅସୁରର ବଳ ।
ରଜନୀ ନ ପାହୁଁ ତାହା ଭକ୍ଷିଲେ ସକଳ ॥
ଚଉଷଠି ଯୋଗିନୀ ଖାଇଦେଲେ ଦୈତ୍ୟ ଆଠ ।
ବିମୁଖ ହୋଇଲେ ସର୍ବେ ନ ପୂରିଲେ ପେଟ ॥
ଅପେ ଅନେକ ନାସିର ବନ୍ଧି ଜୟଚଣ୍ଡୀ ।
ଅସୁର ଶରୀରେ ପଡ଼ି ହୋନ୍ତି ଖଣ୍ଡି ଖଣ୍ଡି ॥
ନାନାବିଧ ଶସ୍ତ୍ର ଅଙ୍ଗେ ପଡ଼ି ହୋନ୍ତି ଚୂନା ।
ଅସୁରର ରୋମାବଳି ଅଟେ ବଜ୍ରସେନା ॥
ସେ ପୁଷ୍ପକ ବିମାନକୁ ଛାଡ଼ି ଜୟଚଣ୍ଡୀ ।
ଶତେ ଭୁଜରେ ଦୈତ୍ୟକୁ ଧଇଲେ ଦଣ୍ଡି ॥
ଅସୁରକୁ ଅନ୍ତରୀକ୍ଷେ ଧରି ଦେଲେ ଗିଳି ।
କଣ୍ଠିବାଟରେ ବାହାର ହେଲା ମହାବଳୀ ॥
ପୁଣ ବିସ୍ତାର ହୋଇଲା ତାର ମହାକାୟେ ।
ବଇଷ୍ଣବୀ ଚକ୍ର ମାରିଲେକ ମହାମାୟେ ॥
କୋଟିଏ ଅନଳ ଜ୍ୱାଳା ଯେଉଁ ଶସ୍ତ୍ରଜ୍ୟୋତି ।
ଦୈତ୍ୟର ଦେହ ଉପୁଡ଼ି ପଡ଼େ ତତକ୍ଷଣାନ୍ତି ॥
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସର୍ବ ଦେବତାଏ ।
ବୃନ୍ଦାରକଗଣ ମନେ କଲେ ମହାଭୟେ ॥
ବ୍ରହ୍ମା ବୋଇଲେ ଅସୁର ଦଇତ୍ୟ ନ ମଲା ।
ସମରରେ ଜୟଚଣ୍ଡୀ ବିମୁଖ ହୋଇଲା ॥
ବେଡ଼େକାର ଶବଦରେ ଅସୁର ଯେ ଉଠି ।
ଅସ୍ତ୍ରଗିରି ନେଇ ଜୟଚଣ୍ଡୀ ପଛେ ପଛି ॥
ଗିରିବର ପିଟିଲେଣ ଧାଇଁ ମହାମାୟୀ ।
ହସ୍ତଦ୍ୱାରା ବିଦାରିଲେ ତାହାର ଯେ କାୟୀ ॥

ଅସ୍ତ୍ରଗଣର ବାଜ ବୃଷ୍ଟି ହୋଇଗଲା ଭଙ୍ଗ ।
ପୁଣି କାତ୍ୟାୟିନୀ ଦେବୀ ଉଠିଲେ ଗରଜ ॥
ନାରକନ୍ତ ଦାନବମାନେ କ୍ଷେମ୍ୟ୍ଠା ନାହିଁଖଣ୍ଡି ।
ବେଢ଼ପାଦ ଦକ୍ଷିଣ ଧର ମହାଚଣ୍ଡୀ ॥
କୁଳାଚଳ ଉପରରେ ଅସୁରଙ୍କୁ ପିଟି ।
ପଡ଼ ଶତେକ ଯୋଜନ ଧୂଳିହୋଇ ଉଠି ॥
ଏକ୍ଷେବଢ଼ ପରବତ ଗଲା ଗୁଣ୍ଡାହୋଇ ।
ଅସୁର ଶରୀର ଏକସ୍ଥାନ କ୍ଷତ ନୋହି ॥
ସମରରେ ସମୁଖ ଯେ ହେଲେ ଯୋଗାମିଣୀ ।
ଲୌହ ଗିରି ପରେ କଚ୍ଛଡ଼ିଲେ ଅଣି ପୁଣି ॥
ଏକରୋମ ବଙ୍କ ତାର ନୋହେ ମହାବଳୀ ।
ଲୌହ ଗିରି ପରବତ ପଡ଼ ହେଲା ଧୂଳି ॥
ସଂଗ୍ରାମରେ ଜମ୍ବୁଚଣ୍ଡୀ ସମୁଖ ହୋଇଲେ ।
ଜଳନ୍ତ ଏହାକୁ ମୁହିଁ କ୍ଷତ ଦେବ ଭଲେ ॥
ଏମନ୍ତ ବର ଏହାକୁ ଦେଲେ ଅଂଶୁମାଳୀ ।
କେତେ ମୁଁ ଏହାରଗୁଲେ ହେବ ବାରୁଅଳୀ ॥
ହୃଦେ ବସୁବନ୍ତ ଏଥେ ନ ମଲା ଅସୁର ।
ରବ ଏହାକୁ ଏମନ୍ତ କର ଦେଲା ବର ॥
ଏତେମତେ ଉପାୟରେ ନ ମରେ ଦଇତ ।
ଅସ୍ତ୍ରଶସ୍ତ୍ର ପଡ଼ ଦେହେ ନୋହିଲା କଛତ ॥
ଚୌଷଠି ଦେବୀଙ୍କ ମଧ୍ୟେ ଅଛେ ମହାଦେବୀ ।
ଦେବେ ଦୁର୍ଲଭ ସେ ଗିଳପାରେ ସବ ଭୁବ ॥
ତାହାଙ୍କର ନାମ ଅଟେ ଜାଣ ନମେଶ୍ୱରୀ ।
ଜମ୍ବୁଚଣ୍ଡୀ ଆଜ୍ଞାଦେଲେ ତାହାଙ୍କୁ ହକାରି ॥
ଅଳ୍ପେ ଅଳ୍ପେ ନମେଶ୍ୱରୀ ଚଳ ଆଜ୍ଞା ଘେନ ।
ଅଂଦିତ୍ୟକୁ ଗିଳ ସେହୁ ନ ଥାଉ ମେଦିନୀ ॥
ଅଦିତ୍ୟ ନାମେ ଏଥି ନ ଥାଉ ଦେବତାଏ ।
ଏଢ଼େ କଠୋର ବର ସେ ଅସୁରଙ୍କୁ ଦିଏ ॥
ମାରିଲେ ଗିଳିଲେ ପୁଣି ନ ମରେ ଅସୁର ।
ପର୍ବତ ପତଣ ଅଙ୍ଗେ ହନ୍ତି ଶତେଚୂର ॥
ଅଗ୍ନିବାଣ ମାରିଲେ ନ ପୋଡ଼େ ଏହା ଦେହ ।
କେମନ୍ତେ ଏହାକୁ ବଧ କରିବ ଲୋ କହ ॥
ଜମ୍ବୁଚଣ୍ଡୀ ବଚନରେ ଦେବୀ ନମେଶ୍ୱରୀ ।
ବୋଇଲେ ସେ ସବିତାକୁ ଦିଅ ଭେଟକରି ॥
ନିମିଷକ ମଧ୍ୟରେ ଗୋ ଭେଟା ତାକୁ ମୋତେ ।
ଗିଳିବ ରବିକୁ ଦୈତ୍ୟ ବଧ ସହଯନ୍ତେ ॥

ଅଗ୍ନିଳ ଦେଖାଇ ଭେଟାଇଲେ ଯୋଗିନୀ ।
ଦେଖି ମହାମୂର୍ତ୍ତି ଧରିଲେକ ଚାକ୍ରଣୀ ॥
ପୃଥିବୀ ହାଲୋଳ ହେଲା ଘେରେଚାର ନାଦେ ।
ଶୁଣି ଭୟେ ପଳାଇଲେ ମୁନିଗଣ ନିଷେଦେ
ଆକାଶ ମାର୍ଗକୁ କ୍ଷେପିଗଲେ କୋପକର ।
ଆଦିତ୍ୟର ରଥ ଯାଇଁ ବସିଲେ ଆରୋହ ॥
ଦେଖି ଭୟ କରି ପଳାଇଲେ ଦିନକର ।
ପଳାଇ ପଶିଲେ ଯାଇ ପିତାମହପୁର ॥
ଅସ ଅସ ବୋଲି କୋଳ କଲେ ବେଦବ୍ରହ୍ମା ।
କମନ୍ତ କାରଣେ ତୁ ହୋ ପଳାଉ ମହାତ୍ମା ॥
ଆଦିତ୍ୟ ବୋଇଲେ ଧାତା ଦେବୀ ଯେ ନମାଇଁ ।
ଆକାଶ ଘୋଟି ସେ ମୋତେ ଲେଡ଼ୁ ଅଡ଼ ଖାଇ ॥
ଧାତା ବୋଇଲେ ଆଦିତ୍ୟ ତୁହି ହରିଥିଲେ ।
ଅସୁର ଦୈତ୍ୟ ନମରେ କୌଣସି ଅସ୍ତ୍ରରେ ॥
ଅସୁର ନ ମଲେ ବଧ ନୁହଇ ମହୁଷା ।
ସେ ନ ମଲେ ଅମର ନ ଯାଇଟି ଦୁର୍ଦ୍ଦଶା ॥
ରହ ହୋ ଆଦିତ୍ୟ ନମେଶ୍ୱରୀ ଗିଳୁ ତୋତେ ।
ଥିବୁ ତା ଉଦରେ ଦୈତ୍ୟ ବଧ ପରଯନ୍ତେ ॥
ଧାତା ବୋଇଲେ ତୁ ବର ଦେଇଅଛୁ ପୂର୍ବେ ।
ତୋହର ଥିଲେ ଅସୁର ନ ମରଇ କେବେ ॥
ନମେଶ୍ୱରୀ ଗର୍ଭେ ଥାଅ ଦୈତ୍ୟବଧ ଯାଏ ।
ପୁଣ ତୋତେ ଉଦ୍ଧାରଣ ପକାଇବ ମାୟେ ॥
ପିତାର ବଚନେ ହେଲେ ଦିନକର ଶାନ୍ତ ।
ସ୍ୱରୂପ ଧଇଲେ ନାଥ ହୋଇ ଶାନ୍ତ ମୂର୍ତ୍ତି ॥
ବିଶ୍ୱରୂପ ଧରି ଗିଳିଦେଲା ନମେଶ୍ୱରୀ ।
ରଥ ସହିତେ ଗର୍ଭରେ ରହେ ତାହାଙ୍କର ॥
ଶୁଣ ପରୀକ୍ଷ ନୃପତି କହେ ଶୁକ ବ୍ରହ୍ମା ।
ସେହୁ ଦେବୀମାନଙ୍କର ଏମନ୍ତ ମହିମା ॥
କୋଟି ବ୍ରହ୍ମାଣ୍ଡରେ ଯାର ପ୍ରକାଶଇ ତେଜ ।
ନିକଟ ହୋଇଲେ ସର୍ବେ ହୋଇବେ ଦହିଯ୍ୟ ॥
କୋଟିଏ ବ୍ରହ୍ମାଣ୍ଡ ଅଛି ଯାହା ଲୋମ ମୂଳେ ।
ନିମିଷେ ବୁଲି ପାରଇ ଯେସନ୍ତ ଭୂମଣ୍ଡଳେ ॥
ଲେଖନ୍ତି ନ ସରେ ଯାର ମହିମାତ କେତେ ।
ସେହୁ ରହିଲା ନମାଇଁ ଦେବୀ ଗର୍ଭଗତେ ॥
କ୍ଷୁଧା କାଳେ ଯେସନେ ଭୁଞ୍ଜେ ଅନ୍ନ ନ ରହଇ ।
ମାର୍ତ୍ତଣ୍ଡ ପଶିଲେ ତାର ଗର୍ଭେ ତେସନେ ରହାଇ ॥

ନିମଜ୍ଜିଲା ରବି ନିମେଷକେ ଗର୍ଭଗତେ ।
ନିମଜ୍ଜାଇ ନାମ ତାର ହୋଇଲା ଜଗତେ ॥
କୋଟି ବ୍ରହ୍ମାଣ୍ଡେ ଆଦିତ୍ୟ ତେଜ ଯହିଁ ନାହିଁ ।
ଦିବସ ପ୍ରକାଶ ଅବା ହୋଇବଟି କାହିଁ ॥
ରାତ୍ରିହିଁ ନୋହିବ ମଧ୍ୟ ଦିନହିଁ ନୋହିବ ।
ଆଦିତ୍ୟ କ୍ଷୟ ହୋଇଲେ ଭାସ୍କର ମରିବ ॥
ଏମନ୍ତ ପୂର୍ବ ବଚନ ଥିଲା ସେ ନିର୍ମାଣି ।
ତେଣୁ ଉଦୟ ନୋହିଲେ ଦେବ ଦିନମଣି ॥
ଏ ସମୟେ ଦୈତ୍ୟେ ଭେଟିଲେକ ଜୟଚଣ୍ଡୀ ।
ମେରୁ ଶିଖରପ୍ରାନ୍ତେ କରେ ଖଡ୍ଗ ଭୁଷଣ୍ଡି ॥
ଏହିକାଳେ ଆକାଶରୁ ଶୁଭେ ଏହି ବାଣୀ ।
ରଣେ ବଧ ଅସୁରକୁ କରି ଗୋସାମଣି ॥
ଅଦୃଶ୍ୟାକାର ଚଣ୍ଡକୁ ମାରୁ ମହାମାୟୀ ।
ବେନିଖଣ୍ଡ ହୋଇ ଦୈତ୍ୟ ପଡ଼ୁ ରଣଭୂଇଁ ॥
ଅସୁର ପଡ଼ନ୍ତେ ବେଗେ ଧାଇଁଲେ କଙ୍କାଳୀ ।
ଅନ୍ତରୀକ୍ଷେ ଧରି ଦଇତକୁ ଦେଲେ ଗିଳି ॥
ଭାସ୍କର ବୋଲି କହିଣ ଯେବଣ ଦନୁଜ ।
ଅସୁର କୁଳକୁ ସେହି ଅଟେ ଅଦ୍ୱିଜ ॥
ତାହାର ମହିମା ବ୍ରହ୍ମା ଶିବେ ଅଗୋଚର ।
କ୍ଷଣକେ ନାଶ ଗଲା ଯେ ତେତେକ ଅସୁର ॥
ଆକାଶରେ ଦେବତାଏ ଆନନ୍ଦିତ ହେଲେ ।
ଜୟଚଣ୍ଡୀ ଶିରେ ବହୁ ପୁଷ୍ପ ବରଷିଲେ ॥
ଦେବେ ବୋଇଲେ ଯାବତ ଚନ୍ଦ୍ର ସୂର୍ଯ୍ୟ ଥିବେ ।
ଜୟଚଣ୍ଡୀ ସ୍ମରନ୍ତେ ଶତ୍ରୁ କ୍ଷୟ ଯିବେ ॥
ଦେବଲୋକ ନାଗଲୋକ ବ୍ରହ୍ମଲୋକ ଯେତେ ।
ନରଲୋକେ ଜୟଚଣ୍ଡୀ ଥିଲି ହୃଦଗତେ ॥
ରଣେ ସାଧ୍ୟ ହେଉ ଜୟଚଣ୍ଡୀ ସ୍ମରନ୍ତେ ।
ସର୍ବପାପ କ୍ଷୟ ହେବ ତା ନାମ ଶୁଣନ୍ତେ ॥
ଅଭୟ କାତ୍ୟାୟିନୀ ଗୋ ମାତା ଜୟଚଣ୍ଡୀ ।
ସ୍ୱର୍ଗରକ୍ଷା କଲୁ ତୁ ଗୋ ଦୁଃଖମାନ ଖଣ୍ଡି ॥
ଯବଣ ଶ୍ରୀ ଜୟଚଣ୍ଡୀ ଚରଣାରବିନ୍ଦେ ।
ଶୂଦ୍ର ମୁନି ଶାରଳା ଯେ ଭଜଇ ସାନନ୍ଦେ ॥
ସରସରେ କହିଲି ମୁଁ ଦେବୀଙ୍କର କଥା ।
ଶୁଣ ସୁଜ୍ଞଜନେ ଏହି ପୁରାଣ ବ୍ୟବସ୍ଥା ॥
ପୁଚ୍ଛା କଲେ ପରୀକ୍ଷିତ ଶୁକବ୍ରହ୍ମା ଆଗେ ।
ଲଭିବି ମୁଁ ବିଷ୍ଣୁଭକ୍ତି ତୁମ୍ଭ ଅନୁରାଗେ ॥

ଭାସ୍କର ଦଇତ ଯହୁଁ ସଂଗ୍ରାମେ ନିମଜ୍ଜି ।
ଭୟ ପାଇ ଦୈତ୍ୟବଳ ପଳାନ୍ତି ସେ ଭାଜି ॥
ଧାମନ୍ତ ସମରେ ଦେବୀମାନେ ଅନର୍ଗଳା ।
ଘୋର ଅନ୍ଧାର ଦେଖିଣ ଧାଏଁ ମହାକାଳୀ ॥
ଯେ ଯାହାର ସମ୍ମୁଖରେ ପଡ଼ୁଛନ୍ତି ରଣେ ।
ଭକ୍ଷଣ କରନ୍ତି ଲକ୍ଷ ଲକ୍ଷ ଜଣେ ଜଣେ ॥
ଏକୁଁ ଏକ ଯୁଦ୍ଧ ନାହିଁ ଗିଳନ୍ତି ଦଶଣ୍ଡି ।
ମଦିରା ରସ ରଙ୍ଗରେ ଖେମ୍ଟା ନାଚ ଖଣ୍ଡି ॥
ମସ୍ତୀ ପୂରିଲା କଳିଳା ସବୁ ସେ ଆନନ୍ଦେ ।
ଘୋର ରୂପ ଦେଖିଣ ସେ ଭାଜିଲେ ଦଇତେ ॥
ଶୁଣ ରାଜେ ବୋଲନ୍ତି ଯେ ଶୁକ ମହାମୁନି ।
ଅସଂଖ୍ୟକ ସମର ନ ପାହିଲା ରଜନୀ ॥
କନ୍ୟାମାସ ଶୁକ୍ଳପକ୍ଷ ସପତମୀ ଦିନ ।
ମଙ୍ଗଳବାର ଯେ ହସ୍ତା ଋକ୍ଷ ବିଦ୍ୟମାନ ॥
ଗରକରଣ ଯେ ଅସୁଷ୍ଠାନ ନାମେ ଯୋଗ ।
ସମର ହୋଇଲା ଚତୁର୍ଦ୍ଦଶ ଦିନ ଭୋଗ ॥
ଆଦିତ୍ୟ ପଡ଼ିଲା ନିମିଜାଇ ଗର୍ଭଗତେ ।
ଅନ୍ଧାର ହୋଇଲା ନବଦିନ ପର୍ଯ୍ୟନ୍ତେ ॥
ଦେବୀଙ୍କ ସ୍ୱରୂପ କେ କହିବାକୁ କ୍ଷମ ।
ଆକାଶରେ ନିମିଜାଇ ତେଜ ଉତକର୍ମ ॥
ଏମନ୍ତ ସମୟେ ଯେଉଁ ଦେବୀ ବସୁନ୍ଧରା ।
ଉଶ୍ୱାସ ପାଇଲା ଗଲା ଅସୁରଙ୍କ ଭାର ॥
କରରେ ପୁଷ୍ପ ଘେନି ଆସେ ବସୁମତୀ ।
ଦୁର୍ଗାର ଛାମୁରେ ସେହି ହୋଇଲା ପ୍ରଣତି ॥
ଅନେକ ବିନୟ କରି ଲୋଟେ ଦେବୀ ଭୂମି ।
ଦୁର୍ଗାର ଛାମୁରେ କୋଟି କୋଟି ପରଣାମି ॥
ଦୁର୍ଗା ଦେଖିଲେ ସେ ପୃଥ୍ୱୀ ଦେବୀର ସ୍ୱରୂପ ।
ବୋଇଲେ ବସୁଧା କପାଁ ହୋଇଲୁ ବିରୂପ ॥
କୁଙ୍କୁମ ବର୍ଣ୍ଣ ପରାୟେ ଦିଶେ ତୋର କାୟେ ।
ଏବେ ତୁ ଦିଶିଲୁ ଶୁଦ୍ଧ ସ୍ଫଟିକ ପରାୟେ ॥
ରସ ଗଳିତ ତୋହର ଦେହ ଦିଶେ କ୍ଷୀଣ ।
କେମନ୍ତେ ଅଙ୍ଗ ତୋହର ହେବ ତେଜହୀନ ॥
ପୁଣ ପୁଣ ପଚାରନ୍ତି ଦୁର୍ଗା ବସୁଧାକୁ ।
ପୃଥ୍ୱୀ ବୋଲେ ମୁଁ ଦୁଃଖ କହିବି କାହାକୁ ॥
ମାତ ଗୋ ମହିଷାସୁର ବେନି ସେନାପତି ।
ଶୁମ୍ଭ ନିଶୁମ୍ଭ ବୋଲି ଦୈତ୍ୟ ମହାରଥୀ ॥

ମାଗୋ ଯେତେବେଳେ ପଥ ଚାଲନ୍ତି ଅକ୍ଷୋହି ।
ତାଙ୍କ ଦଣ୍ଡ ଚଳନ୍ତେ ମୁଁ ପାତାଳରେ ପଶେ ॥
ମାଗୋ ସତ୍ୟଯୁଗରୁତ ଲାଗେ ଝଡ଼ଯୁଦ୍ଧେ ।
ଅସୁରଙ୍କ ନେଉଛୁ ଗୋ କ୍ଷୀଣ ମୋର କାୟେ ॥
ଦୁର୍ଗା ବୋଇଲେ ଏବେତ ପଡ଼ିଲେ ସେ ଦୁଷ୍ଟ ।
ଧନ୍ୟ ଧନ ଶରୀର ତୋ ନୋହେ କ୍ଷମା ପୁଷ୍ଟ ॥
ଏହା ଶୁଣି ପ୍ରଣିପତ୍ୟ ହେଲା ବସୁମତୀ ।
ବୋଇଲା ଶୁଣିବା ମାଗୋ ମୋହର ବିନତି ॥
ମନ୍ଦ ମାଂସ ରୁଧିର ନ ପଡ଼ିଲା ମୋ ପରେ ।
ଏହି ଚିନ୍ତା ହେଲା ମୋର ରଜନୀ ଦିବାରେ ॥
ଏହାଙ୍କ ରୁଧିର ଯେବେ ମୋ ପରେ ପଡ଼ନ୍ତା ।
ତେବେ ସେ ଶରୀର ମୋର ପୁଷ୍ଟ ହୋଇଯାନ୍ତା ।
କ୍ଷୋଭିତ ବର୍ଣ୍ଣ ଶରୀର ହୁଅନ୍ତା ମୋହର ।
ଏବେ ମହାଦେବୀ ମୋତେ କର ପ୍ରତିକାର ॥
ଅସୁରଙ୍କର ରୁଧିର ପଡ଼ୁ ମୋ ଉପର ।
ତୋହର କରୁଣାରୁ ମୋ ହେଉ ଦୁଃଖ ପାର ॥
ଦୁର୍ଗା ବୋଇଲେ ଗୋ ଏବେ ବୋଲୁଛ ଏମନ୍ତ ।
ଆହାର ତୁ କରୁଥିଲୁ ପୂର୍ବରେ କେମନ୍ତ ॥
ଦୁର୍ଗାର ଶ୍ରୁତିରେ ସେହୁ କହେ ବସୁମତୀ ।
ଏକଚିତ୍ତ କରି ଶୁଣ ମାତ ଭଗବତୀ
ଯେତେବେଳେ ମୋତେ ଅଗୋହୁଏ ମହାଭ୍ରମ ।
ସ୍ୱଜନ ଲୋକଙ୍କୁ ମୁହିଁ କରେ ରୋଗ ପୀଡ଼ା ॥
ମୋରପରେ ଅନୁବ୍ରତେ ଥାନ୍ତି ଯେତେ ପ୍ରାଣୀ ।
ତାଙ୍କର ଅହିତ ମାଗୋ କରଇ ମୁଁ ପୁଣି ॥
ମୋହର ଉପରେ ଚାଲନ୍ତି ଯେ ପାଦ ଦେଇ ।
ତେଣୁ ନାନା ରୋଗ ଜାତ କରାଇଣ ମୁହିଁ ॥
ମୋର ପରେ ଉପୁଜଇ ସମସ୍ତ ପଦାର୍ଥ ।
ମୋହର ବଳାରେ ସର୍ବେ ଛନ୍ତି ହନ୍ତି ଯନ୍ତି ॥
ଅବଜ୍ଞତେ ପ୍ରମାଦ ମୁଁ କରଇ ମନୁଷ୍ୟ ।
ରୋଗ ଅଶେଷ କରାଇଣ କରେ ପ୍ରାଣନାଶ ॥
ବହୁତ ପୀଡ଼ା ଦିଅଇ ମାଗୋ ବହୁ ବ୍ୟାଧି ।
ଅଶକତ କରାଏ ମୁଁ ନ ଖାଆନ୍ତି ଔଷଧି ॥
ଔଷଧି ନ ଖାଇଲେ ସେ ବଢ଼ିଯାଏ ବ୍ୟାଧି ।
ବ୍ୟାଧିବଳବାରୁ ତନୁ ହୁଅଇ ଅସାଧ୍ୟ ॥
ରୋଗବାଧାରେ କରଣ ଧରେ ଶ୍ଳେଷ୍ମା ।
ତହିଁ ବାତ ପିତ୍ତ ଅଙ୍ଗେ ଘୋଟେ ଉତକର୍ମା ॥

ବାତ ପିତ୍ତ ଶ୍ଳେଷ୍ମା ସମ୍ପିତ୍ତ ଜର ।
ମୁହିଁ ମନୁଷ୍ୟମାନଙ୍କୁ ଦିଏ ରୋଗପୀଡ଼ା ॥
ମୋହର ବଳାରେ ପଦମନ୍ଦ ଅଉଷଧି ।
ନ ଖାଇଲେ ପ୍ରବଳନ୍ତି ହୁଏ ମହାବ୍ୟାଧି ॥
ରୋଗ ପ୍ରବଳ ହୋଇଲେ ନ ତୁଟଇ ଶ୍ୱାସ ।
କୋଷ୍ଠସର୍ଗି ଗର୍ଭରୁ ଗୋ ହୁଅଇ ବିନାଶ ॥
ମନ୍ଦ ଅଗ୍ନି ହେଲେ ବଳ ଅବଶ୍ୟ ତୁଟଇ ।
ପ୍ରାଣ କ୍ଷୀଣ ହେଲେ ବ୍ୟାଧି ବଳତ ଘୋଟଇ ।
ଶାସ୍ତ୍ର ସହିତା କଥା ସେ ନ ପାରନ୍ତି ଶୁଣି ।
ନାନାଶାସ୍ତ୍ର କରୁଥାନ୍ତି ବେଦବିଦ୍ୟା ଆଣି ॥
ମୋହର ବଳାରେ ସେହୁ ହୁଅନ୍ତି ସର୍ବ ରୋଗ ।
ମୁହିଁ ସେ ଛଡ଼ାଏ ବନ୍ଧୁବର୍ଗଙ୍କର ସଙ୍ଗ ॥
ଯେତେବେଳେ ମାୟାମୋହ କରାଏ ମୁଁ ତେଜ୍ୟ
ବଢ଼ଇ ମନ ପବନ ଭୂମି ହୁଏ ଶଯ୍ୟା ॥
ମାଗୋ ଉତ୍ପାତରେ ମରନ୍ତି ଯେ ସର୍ବ ଲୋକ ।
ପଡ଼େ ମେଦ ମେଦା ଉପୁଜଇ ବଡ଼ ଶୋକ ॥
ମାଗୋ ଜାଣିଛି ଯଦ୍ୟପି କରୁ ମନ ଯୋଗ ।
ଲୁଟଇ ଯେ ନିଜପିଣ୍ଡ କରେ ମହା କ୍ଲେଶ ॥
କାଳ ହୋଇ ପଶଇ ମୁଁ ସବୁଙ୍କର ଗର୍ଭେ ।
ଅନେକ ଜୀବଜନ୍ତୁଙ୍କୁ ମାରେ ଅତିରଙ୍ଗେ ॥
ମାଗୋ ପ୍ରୀତ ଲୋକରେ ମୁଁ କରାଇଛି ଦ୍ୱନ୍ଦ ।
କଳହ ଖଡ଼୍ଗ ଘାତରେ କରି ଦିଏ ବଧ ॥
ଜାଣି ନ ପାରିଣ ସେହି ହୁଅନ୍ତି ହଣାହଣି ।
[illegible]ଙ୍କ ମାଂସ ରକତ ଯେ ପଡ଼ଇ ଧରଣୀ ॥
ନୃପତିବାହୁମାନଙ୍କରେ ଦ୍ୱନ୍ଦ ଥୋଇ ଥାଇ ।
ଫଳ ମୂଳ କରାଇଣ ମଣାଏ ଯେ ଭୁଇଁ ॥
ଅଳ୍ପେ ବହୁ କରି ଅଢ଼େ କରଇଁ ଅଳପ ।
ଉଛିବାର ହୁଅନ୍ତି ତେଣୁ କରି ଧାପ ଗୁପ ॥
ଶାସ୍ତ୍ରସ୍ଥ ରମାଳେ ତା ନ ପାରନ୍ତି ସହି ।
ହଣାହଣି ହୋଇଣ ସେ ଲୋଟନ୍ତି ଏ ମହୀ ॥
ମେଦ ରୁଧିର ମାଂସତ ପଡ଼େ ଏ ମହୀରେ ।
ମୁହିଁ ସେ ଏରୂପେ ଭୋଜନ କରଇ ନିଜରେ ॥
ମାଗୋ ଦେବାଙ୍ଗନ୍ତ ପ୍ରାଣୀ ହୁଅନ୍ତି ଯେତେବେଳେ
ମେଷ ମହିଷ ଛାଗଳ ମାରନ୍ତି ବଳିଲେ ॥
ସେ ମାଂସ ରକତ ଯହିଁ ପଡ଼ଇ ଏ ପୃଥ୍ୱୀ ।
ତେଣୁକରି ଶରୀର ମୋ ହୁଅଇ ତୃପତି ॥

ମାଗୋ ଯେତେବେଳୁଁ ଏଥିଁ ହେ ଭୂସମ୍ବଳ ।
ବରପାଇ ଅମରତ ହେଲେ ଅସୁରଗଣ ॥
ତାଙ୍କୁ କ୍ଷୁଧ ଶ୍ରେଷ ପୀଡ଼ା କଷ୍ଟ ନ ବାଧିଲା ।
ସଂସାରେ ପୂର୍ଣ୍ଣ ହୋଇଣ ଅଛନ୍ତି ସେ ଭଲ ॥
ସେମାନେ ଯେବେଁ ପତନ ନ ହେଲେ ମେଦିନୀ ।
କେତେ ବେଳ ବପୁ ମୋର ହୋଇଲାଣି ହାନି
ଯେତେ ଜୀବଜନ୍ତୁମାନ ହାଣନ୍ତି ସେ ନର ।
ସେ ମାଂସ ରୁଧିର ନ ପଡ଼ିଲା ମୋ ଉପର ।
ମାଗୋ ଦେବା ଦେବୀ ବୋଲି ଯାହା କହୁଅଛ ।
ମୁହିଁ ସେ କ୍ଳେଶ କରଇ ଅନ ନାହିଁ କିଛି ॥
ପୃଥ୍ୱୀ କଥା ଶୁଣି ବୋଲୁଛନ୍ତି ଦେବୀ ଦୁର୍ଗେ ।
ତୁହି ସେ ପ୍ରବେଶ ଅଛି ନୋହିଲୁ ମୋ ଅଗେ ॥
ତୁହି ସେ ସଚରାଚରେ ଅଟୁ ମହାଭୋଗୀ ।
ଜୀବଭର ହେଲୁ ଯିନା ହେଲୁ ଏତେ ସ୍ୱାଗୀ ॥
ପୁଣ ନମସ୍କାର କରି ବୋଲେ ବସୁମତୀ ।
ତୋହର ଅଜ୍ଞାରେ ମୋର କ୍ଳେଶ ହେବ ଶାନ୍ତି ॥
ଦୁର୍ଗା ବୋଇଲେ ବସୁଧା ତୁ ଯାହା ମାଗିବୁ ।
ପ୍ରସନ୍ନ ହୋଇଣ ଦେବି ଅବଶ୍ୟ ପାଇବୁ ॥
ବସୁଧା ବୋଲେ ଅସୁରେ ମୋତୁଲେ ଅନର୍ଥୀ ।
ନବଖଣ୍ଡ ପରହନ୍ତେ ଲସଇ ଯେ ପୃଥ୍ୱୀ ॥
ତୁ ପରମ ଯୋଗେଶ୍ୱରୀ ଜନନୀ ନ ବଗ୍ଗୁରୁ ।
ଏବେ ଦୟା କର ମାଗୋ ଦୁଃଖ ମୋର ସରୁ ॥
ପଡ଼ୁ ରକ୍ତ ମାଂସ ଏବେ ମୋହର ଉପରେ ।
ଶରୀର ପୁଷ୍ଟ ହୋଇବ ତୋହର କୃପାରେ ॥
ଦେବୀଏ ହାଣନ୍ତି ଶତ୍ରୁ ପାତନ୍ତି ଖପର ।
ପ୍ରାଣ ଥାଉଁ ଥାଉଁ ସେହୁ ଭକ୍ଷନ୍ତି ସତ୍ୱର ।
ମାତ ଗୋ ଦେବୀମାନଙ୍କୁ ଏବେ ଦିଅ ଅଜ୍ଞା ।
ଏ ତୋହର ବଚନ କେ କରିବ ଅବଜ୍ଞା ॥
ମାଗୋ ଅଜଠାରୁ ଯେତେ ହୋଇବ ସମର ।
ଅସୁରଙ୍କ ରକ୍ତମାଂସ ପଡ଼ିବ ଭୂମିର ॥
ମାଗୋ ମେଦମେଦାମାଂସ ପଡ଼ୁ ମୋହ କାୟେ ।
ପାଇବ ମୁଁ ନିଜଦେହ ହେବ ତେଜୋମୟେ ॥
ଦୁଃଖ ପ୍ରସନ୍ନ ମୋତେ ଗୋ ଦୁର୍ଦ୍ଦଶା ମୋ ଫିଟୁ ।
ହୋଇବ କୁଙ୍କୁମ ବର୍ଣ୍ଣ ଦଶା ମୋ ନଲହଟୁ ॥
ଏତେ ବୋଲି ପ୍ରଣିପତ୍ୟ ହୋଇଲେ ବସୁଧେ ।
ଦୁର୍ଗା ବୋଇଲେକ ତୁହି ଥାଅ ଅଜ ଯୁଦ୍ଧେ ॥

ବସୁଧା ବୋଇଲେ ମୁହିଁ ନୋହିବ ବିପ୍ଳୁତ ।
ଖାଇଲେ ମୋର ଶରୀର ଯିନା ହେବ ଶାନ୍ତି
ଶୁଣ ଅହୋ ରାଜା ଅଜ୍ଞା ଦେଲେ ମହାମାୟେ ।
ଯା ଯା ବସୁଧା ଲୋ ଯାଇଁ ପାତ ତୋର କାୟେ ॥
ଜୀବଭର ମଣ୍ଡି ନରଧାର ଅଜ୍ଞା ପାଇ ।
ନିଜ କାୟାକୁ ପାତିଲା ଅତି ଶୀଘ୍ର ଯାଇଁ ॥
ଶୁଣ ହୋ ପରୀକ୍ଷ ରାଜା ଦୁର୍ଗା ଅଜ୍ଞା ଦେଲେ ।
ଜଣେ ଜଣେ ନାମ ଧରି ପାଶକୁ ଡାକିଲେ ॥
ଶୁଣ ଗୋ ବାସେନ ନାରାୟଣି ଭଗବତ ।
ଅଜଠାରୁ ରକ୍ତମାଂସ ପଡ଼ୁ ସବୁ କ୍ଷିତି ॥
ବ୍ରହ୍ମାୟଣୀ ଠାକୁରାଣୀଙ୍କର ଅଜ୍ଞା ମାନି ।
ରକତ ମାଂସ ସକଳ ପଡ଼ିଲା ମେଦିନୀ ॥
ପୁଣି ଠାକୁରାଣୀମାନେ ମନୋଲ୍ଲାସ କଲେ ।
ମାଂସ ଭକ୍ଷବେ ବୋଲିଣ ସର୍ବେ ବସୁରହିଲେ ॥
ଶୁଣ ହୋ ପରୀକ୍ଷରାଜା କୋପେ ଦେବୀ ଦୁର୍ଗେ ।
ମହାଶଳା ବୀର ଜାତ କଲେ ପାଦ ଯୁଗେ ॥
ପ୍ରାନ୍ତେ ଜାତ ହେଲା ଯେ ବେଢ଼ିଅ କ୍ଷେତ୍ରପାଳ ।
ଖଡ୍ଗିଅ କ୍ଷେତ୍ରପାଳ ଯେ ଅଟେ ମହାବଳ ॥
ପୁଣ ଜାତ କଲେ କାମଦେବ କ୍ଷେତ୍ରପାଳ ।
ଭୟଙ୍କର ରୂପ ତାର ମୁଣ୍ଡ ବିକଟାଳ ।
ଏମନ୍ତେ ସେ କ୍ଷେତ୍ରପାଳ ହୋଇଲେକ ଜାତ ।
ରଣକ୍ଷେତ୍ର ରକ୍ଷାପାଇଁ କହିଲେ ସମ୍ଭୂତ ॥
ଦୁର୍ଗା ଅଜ୍ଞା ଦେଲେ ରାଇ ଅହୋ କ୍ଷେତ୍ରପାଳେ ।
ରଣସ୍ଥାନ ମାନ ତୁମ୍ଭେ ରଖ ହୋ ସକଳେ ॥
ନାମ ସଙ୍କେତ କରଣ ବୋଲି ଗୋସାମଣୀ ।
କ୍ଷେତ୍ର ରକ୍ଷାକର ବୀରବର ପଣ ଘେନି ॥
ଡ଼ୁକୁଅ କ୍ଷେତ୍ରପାଳ ଯେ ହନୁ କ୍ଷେତ୍ରପାଳ ।
ନୃସିଂହ କ୍ଷେତ୍ରପାଳ କାଳିଅ କ୍ଷେତ୍ରପାଳ ।
ଅମ୍ବୁଅ କ୍ଷେତ୍ରପାଳ ଗୋରଅ କ୍ଷେତ୍ରପାଳ ।
ଅଣ୍ଡ୍ରିଅ କ୍ଷେତ୍ରପାଳ ଖଣ୍ଡିଅ କ୍ଷେତ୍ରପାଳ ॥
ଗୋଳିଅ କ୍ଷେତ୍ରପାଳ ଖୋଳିଅ କ୍ଷେତ୍ରପାଳ ।
ଜମିଅ କ୍ଷେତ୍ରପାଳ ରମିଅ କ୍ଷେତ୍ରପାଳ ॥
ଏହାଙ୍କର ତୁଲେ ଜାତ ହେଲେ ଯାତୁ ମଲ୍ଲ ।
କାନ୍ଦୁଅ ମଲ୍ଲ ପୁଣି ସେ ଚଣ୍ଡିଅ ମଲ୍ଲ ॥
ମହାକାଳମଲ୍ଲ ଯେ ଖଣ୍ଡ ନାମେ ମଲ୍ଲ ।
ଏହାଙ୍କର ମୂଳେ ହେଲେ ପୁଣ ବୀରବଳ ॥

ମାଣିକା ରଣ୍ଡା ବାମନା ବିଜୟା ଭୂତାକା ।
ଗଣ୍ଡାଳିଅ ଗମଣ୍ଡା ଦହଳା ଘୋଷାନକା ॥
ଶୁଳୁଟିଅ ଝଂଝଂରଅ କଣି ଝିଙ୍କିରଅ ।
ଏପରି ଅନେକ ଜାତକଲେ ମହାମାୟା ॥
ଏମନ୍ତେ ସେ ଗୋସାମଣୀ ବୀରଜାତ କରି ।
ନଉ ମହନ୍ତ ଏହାଙ୍କୁ ଅଜ୍ଞା ଅବଧାରି ॥
ସେହୁ ସମସ୍ତେ ଗୋଡଖଣ୍ଡିଅ ଊର୍ଦ୍ଧ୍ୱକେଶା ।
ଭକ୍ଷଣ କରନ୍ତି ସର୍ବେ ରକ୍ତ ମାଂସ ମିଶା ॥
ନଉମହନ୍ତ ସେ ଜାତ କରି ଗୋସାମଣୀ ।
ଇନ୍ଦ୍ରାୟଣୀ ରୁଦ୍ରାୟଣୀ ମୂର୍ତ୍ତିଅଦ ଜାଣି ॥
ହାଡୟୀ ବାସେଳୀ ବ୍ୟାଘ୍ରେଶ୍ୱରୀ ଘଣ୍ଟେଶ୍ୱରୀ ।
ଗରୁଡାଈ ମଦନାଈ ଦେବୀ କାଳିଞ୍ଜରୀ ॥
ହଂସାଶୁଣୀ ଆଦି ସର୍ବ ଦେବୀଙ୍କି ବୋଲନ୍ତି ।
ଯୋଗିନୀମାନଙ୍କ ଆହାର କରି ତୁମ୍ଭେ ଖାନ୍ତି ॥
ଦୟା ବହିଲା ମୋହର ପୃଥ୍ୱୀ ଜକନେ ।
ଅଳ୍ପ ଅସୁରଙ୍କ ରକ୍ତ ମାଂସ ପଡ଼ୁତଳେ ॥
ଅଥବା ଆହାର ଯେହୁ କରିବ ନ ଜାଣି ।
ମାନୁଷୀର ରୂପରେ ସେ ହୋଇବ ଡାକେଣୀ ॥
ଦୁର୍ଗା ବୋଇଲେ ମୋହର ବଚନ ଯେ ଏହୁ ।
ବସୁଧା ସେବ ଅବସ୍ଥା ତା ଉପରେ ପଡ଼ୁ ॥
ଶ୍ରୀମହାଦେବୀ ଏମନ୍ତେ ଅଜ୍ଞାକୁ ଯେ ଦେଲେ ।
ସବୁଙ୍କର ଆହାରକୁ ବରୋଧ ଗୋ ଭଲେ ।
ଠାକୁରାଣୀଙ୍କର ତହୁଁ ଏହବାଣୀ ଶୁଣି ।
ଡାକ ଡାକେଶ୍ୱରୀକୁ ଯେ ବୋଲେ ନାରାୟଣୀ ॥
ଅସୁର ବଳ ଭକ୍ଷଣ ନ କରିବେ କେହି ।
ଅଜ୍ଞା ହୋଇଅଛ ସମସ୍ତଙ୍କୁ ଥାଅ କହି ॥
ତହୁଁ ଏମନ୍ତ ସେ ଅଜ୍ଞା ଦେଲେ ମହାମାୟେ ।
ଡାକେଶ୍ୱରୀ ଉଚ୍ଛେ ଡାକ ଦେଲେକ ଗୋଟାଏ ॥
ଅନନ୍ତଦେବୀମାନେ ଗୋ ଯେତେ ସେତେ ଅଛ ।
ଅଳ୍ପ ଅସୁରଙ୍କ ରକ୍ତ ମାଂସ ଗୋ ନ ଭକ୍ଷ ॥
ରଣରଙ୍ଗ ଲାଗିଅଛ ଚୌଷଠି ଯୋଗିନେ ।
ଡାକେଶ୍ୱରୀ ଡାକ ଶୁଣେ ସବୁଙ୍କର କର୍ଣ୍ଣେ ॥
ଦୁର୍ଗା ଅଜ୍ଞା ପାଇ ତହୁଁ ସର୍ବେ ଗୋସାମଣୀ ।
କବଳ ବଳ ପ୍ରତ୍ୟେକ ଗଲେ ସବୁ ହାଣି ॥
ଏ କାଟରୁ ସେ କାଟକୁ ବୁଲାଇ ପିଟନ୍ତି ।
ବେନିଖଣ୍ଡ ହୋଇ ଦୈତ୍ୟ ମହୀରେ ଲୋଟନ୍ତି ॥

ଗଦା ମୁଦ୍ଗର ଅସିପଟ୍ଟ ଟେକିସାଥେ ।
ପ୍ରାଣହାରି ରଣମଧ୍ୟେ ପଡ଼ନ୍ତି ଦଇତେ ॥
ବହିଲା ରକତନଦୀ କଲ୍ଲୋଳିତ ହୋଇ ।
ଖଣ୍ଡ ଖଣ୍ଡ ପିଣ୍ଡ ଦଳ କର୍ଦ୍ଦମ ହେ ମହୀ ॥
ନ ଖାଇଲେ ରକ୍ତମାଂସ ଦେବୀ ଅଜ୍ଞା ମାନି ।
ଯାହା ଅଜ୍ଞାଦେଲେ ଯେଯେ ଦୁର୍ଗତିତାରିଣୀ ॥
ରଣ ଅଘୋର ବୋଲିଣ ଅଜ୍ଞାଦେଲେ ଦେବୀ ।
ତାହାଙ୍କ ସଙ୍ଗରେ ଚଣ୍ଡାଳିଅଙ୍କୁ ବରଗି ॥
ଦେବୀମାନଙ୍କ ଭୂହରେ ସଙ୍ଗେ ସେନାଥିରୁ ।
ମହାବୀରମାନଙ୍କୁ ତ ସମସ୍ତ ବାନ୍ଧିରୁ ॥
ମଣ୍ଡଳାଖି ବୀରପତି ବୀର ମହାଖଳା ।
ଅଘୋରଲେ ରଣକ୍ଷେତ୍ର ହୋଇ ଅନର୍ଗଳା ॥
ଶୁଣ ସତ୍ୟେ ଦେବୀମାନେ ମନ୍ତ୍ରେ ଉଚ୍ଚୁଳନ୍ତି ।
ଦୁଷ୍ଟ ଦାନବଙ୍କୁ କାଟ କାଟ ହାଣି ଯାନ୍ତି ॥
ସମରେ ନ ଦୂରନ୍ତି ଯେ ଦୈତ୍ୟ ମହା ବଳୀ ।
ଏକ ପଡ଼ନ୍ତେ ଅନେକ ଧାମେ ଅତି ବେଗି ॥
କାଳକେତୁ ବୋଲିଣ ସେ ଏକଇ ଅସୁର ।
ଅର୍ବୁଦେ ବଳ ସେନଣ ପଶିଲା ସମର ॥
ବଜ୍ରକେତୁ ବୋଲିଣ ଯେ ଏକଇ ଅସୁର ।
ଦ୍ୱି ଅର୍ବୁଦ ବଳ ଘେନି ମିଳିଲା ସମର ॥
ବୀରମର୍ଦ୍ଦନ ଅସୁର ଯେ ଯୋଜନବାହୁ ।
ତିନିଅର୍ବୁଦ ଯୋଦ୍ଧାରେ ବାହାରିଲେ ସେହୁ ॥
ନିପୁରୀ ଦେବୀଙ୍କ ତୁଲେ ଯୁଦ୍ଧ ଆରମ୍ଭିଲେ ।
ଅହୋବଳେ ମହାଘୋର ସଂଗ୍ରାମ କରିଲେ ॥
ବୀରବାହୁ ବୋଲିଣ ଯେ ଦୈତ୍ୟ ମହାବଳୀ ।
ଅର୍ବୁଦେ ଯୋଦ୍ଧାଘେନି ସେ ଭେଟି ଭଦ୍ରକାଳୀ ॥
ମଧ୍ୟରେ ସୁବାହୁ ବୋଲି ଏକଇ ଅସୁର ।
କୋଟିଏ ଯୋଦ୍ଧା ଘେନି ସେ କରଇ ସମର ॥
ପଦ୍ମେକ ଯୋଦ୍ଧା ଘେନିଣ ଯେ ପ୍ରଚଣ୍ଡବାହୁ ।
ବ୍ରହ୍ମାୟଣୀକୁ ଘୋଟିଲ ତହେ ଯେତେ ସହୁ ॥
ବେନିଲକ୍ଷ ଯୋଦ୍ଧା ଘେନି ସେ ଗଗନ ଘୋଟି ।
ଇନ୍ଦ୍ରାୟଣୀ ତୁଲରେ ଯେ ହେଲେ ଯାଇଁ ଭେଟ ॥
ଭେଷ୍ଟାସୁର ବୋଲିଣ ଯେ ଏକଇ ରାକ୍ଷସ ।
ତିନିକୋଟି ଯୋଦ୍ଧା ଘେନି ଉଗ୍ରତାର ପାଶ ॥
ପଦ୍ମେକ ଯୋଦ୍ଧା ଘେନିଣ ହେଟାସୁର ଦୈତ୍ୟ ।
ଭୂତାଣୀ ତୁଲରେ ରଣ କଲାକ ଅଦ୍ଭୁତ ॥

ଅନ୍ଧାସୁର ବୋଲଣ ଏକଇ ରାକ୍ଷସ ।
ପ୍ରବେଶ ଯୋଦ୍ଧା ସେନ ସେ ବ୍ୟାଘ୍ରେଶ୍ୱରୀ ପାଶ ॥
ପଦ୍ମେକ ଯୋଦ୍ଧା ସେନଣଦୈତ୍ୟ ଉର୍ଦ୍ଧ୍ୱକେଶ ।
ବାରସ୍ତ୍ରୀ ମାରକମାଙ୍କ ଆଗେ ପରବେଶ ॥
ସାତଲକ୍ଷ ଯୋଦ୍ଧା ସେନ ବୀର ଇନ୍ଦ୍ରଜିତ ।
ଭଇରବୀ ତୁଳେ ତାର ରଣ ଅପ୍ରମିତ ॥
ବେଣପଦ୍ମ ଯୋଦ୍ଧା ସେନ ଘଣ୍ଟାସୁର ଭଲେ ।
କାଳିକାଙ୍କ ସମ୍ମୁଖରେ ଲେଉଟି ସେ ପଡିଲେ ॥
କାକମୁଖ ଦଇତର ବଳ ପାଞ୍ଚକୋଟି ।
କମାପୁଣୀ ଦେବୀ ତାହା ନିମେଷକେ ଘୋଟି ॥
ବାଲୁକ ଅସୁର ଯେ ଯେ ଅଟେ କାମରୂପୀ ।
ଘଟବଲ୍ଲ ଦେବୀ ଯାଇଁ ତାହାଙ୍କୁହିଁ ବ୍ୟାପି ॥
ହୁଲଣ୍ଟ ନାମେଣ ଦୈତ୍ୟ ଜଗତେ ପ୍ରସିଦ୍ଧି ।
ତାର ପାଞ୍ଚସହସ୍ର ଅଠାଇଶ ମହା ଯୋଦ୍ଧୀ ॥
ସମର କଲେ ସେ ନିଜ ବଳ ପରକାଶି ।
ଗିଳିଲେ କାମାକ୍ଷୀ ପିଙ୍ଗଳାକ୍ଷୀ ମେଧା ମିଶି ॥
ବୀରବର ସୁନ୍ଦର ଯେ ମାଳଞ୍ଜନ ନାମ ।
ତାଡ଼କା ଦେବୀର ତୁଳେ ତାହାର ସଂଗ୍ରାମ ॥
ଲକ୍ଷେ ଯୋଦ୍ଧା ସେନଣ ଯେ ଦୈତ୍ୟଘୋଡ଼ାମୁଖ ।
ତାଡ଼କା ଦେବୀର ତୁଳେ ପଡିଲା ପ୍ରତ୍ୟକ୍ଷ ॥
ବାଅନ କୋଟି ସେନଣ ସେନା ବରୂପକ୍ଷ ।
ଅମ୍ବିକାଇ ତୁଳରେ ସେ ହୋଇଲା ସମ୍ମୁଖ ॥
ପଦ୍ମେକ ଯୋଦ୍ଧା ସେନଣ ଅସଇ ତାରକ୍ଷୀ ।
ଦେଖି ତା ତୁଳେ ସମର କଲା ଗରୁଡ଼ାକ୍ଷୀ ॥
ଗଜମୁଖ ଦୈତ୍ୟ ତୁଳେ ଶତପଦ୍ମ ବୀର ।
ହାତବାହୁଳୀ ସଙ୍ଗରେ କଲା ସମର ॥
ତମ୍ଭାସୁର ବୋଲକର ଏକଇ ରାକ୍ଷସ ।
ଆଠ ସର୍ବ ପଡିଲେ ତା ମହାମାୟୀ ପାଶ ॥
ପିଙ୍ଗଳାସୁର ଗୋମୁଖ ମନୁଷ୍ୟର କାୟା ।
ନବଲକ୍ଷ ଯୋଦ୍ଧା ସେନ ଘୋଟେ ଦେବୀ ଛାୟା ॥
ରଣରଙ୍ଗ ଧନ୍ଦୋଳୀ ଯେ ଅଇର ମାତଙ୍ଗୀ ।
ଲୋହାସୁର ଦଇତ୍ୟଙ୍କୁ ଘୋଟେ ଯାଇଁ ବେଗି ॥
ନମିକାଈ ଦେବୀ ବିଶ୍ୱରୂପ ପ୍ରକାଶିଲା ।
ଏକାହୋଇ ଶତପଦ୍ମ ଦୈତ୍ୟଙ୍କୁ ଘୋଟିଲା ॥
ମେଦଲକ୍ଷ ଯୋଦ୍ଧା ସେନଣ ଦୈତ୍ୟ ମୁଣ୍ଡାସୁର ।
ଚଣ୍ଡିକାର ତୁଳେ ସେହୁ କରଇ ସମର ।
ଅଙ୍ଗିରାସୁର ଦୈତ୍ୟର ଶତ ପଦ୍ମ ସେନା ।
ଦ୍ୱାରଶୁଣୀ ତୁଳେ ପଡିଲେକ ସର୍ବ ଜେନା ॥
ଝିଣ୍ଟାସୁର ବୋଲଣ ଏକଇ ଦଇତ ।
ତାହାର ସହିତେ ଯୋଦ୍ଧା ପାଞ୍ଚ ମରିଭୂତ ॥
ଗଦା ବୁଲାଇଣ ସେହୁ ଧାଇଁ ଅତି ବେଗେ ।
ସେ ସବୁ ପଡିଲେ ଗୋଳକମାର ଯେ ଆଗେ ॥
ଶଙ୍ଖାସୁର ବୋଲି ମହାବଳିଷ୍ଠ ଦାନବ ।
ନାରାୟଣୀ ସଂଗ୍ରାମରେ ପାଇଲା ପ୍ରାଭବ ॥
ସାତଲକ୍ଷ ନିର୍ବୁଦ ସଙ୍ଗରେ ସଇନ ।
ଶୁଭ୍ରକେଶ ଅସେ ଜରେ କୋଦ୍ଧାଳକୁ ସେନ ॥
ଯାବତେ ପଡିଲେ ରାମଚଣ୍ଡୀଙ୍କ ଆଗରେ ।
ମାରି ପକାଇଲେ ଏକା ସେ ସବୁ ସମରେ ॥
ଅପାର ପ୍ରବଳ ସେହୁ ରକ୍ଷବଳ ଥାଟ ।
ଆଦତ୍ୟ ଅକ୍ଷବରେ ଯେ ନ ହଣିଇ ବ ଟ ॥
ଯେତେକ ଆଜ୍ଞା ଦେଇଥିଲେ ଦୁର୍ଗତିତାରିଣୀ ।
ଆହାର ନ କରି ସର୍ବ ପକାଇଲେ ହାଣି ॥
ଲଳନା ଦୁଲଣା ଦୁଇ ଦେବୀ ଯେ ମଣୋହ ।
ରକତମାଂସ ଭକ୍ଷଣ କରନ୍ତି ଯେ ସେହୁ ॥
ହରାସ୍ତ୍ରୀ ଜରାସ୍ତ୍ରୀ ଭକ୍ଷଣାସ୍ତ୍ରୀ ନନ୍ଦଣାସ୍ତ୍ରୀ ।
ବହୁଳାସ୍ତ୍ରୀ ଢକାସ୍ତ୍ରୀ ଯେ ଅବର ଦୁଲାସ୍ତ୍ରୀ ॥
ଏହି ସାତ ଭଉଣୀଏ ହୋଇ ଏକରୁଣ୍ଡ ।
ସନ୍ୟଙ୍କୁ ରଖି ନ ପାରି ଖାନ୍ତି ମୃତପିଣ୍ଡ ॥
ରକ୍ତ ମାଂସ ଖାଇଲେ ଯେ କରି ଖଣ୍ଡ ଖଣ୍ଡ ।
ଶୁଣ ହୋ ପରୀକ୍ଷ ରାଜା ହୋଇଲେ ପ୍ରଚଣ୍ଡ ॥
ସେହି ସପ୍ତଦେବୀଙ୍କର ଅନୀତକୁ ଦେଖି ।
ଖଡ୍ଗ ଧରି କ୍ଷେତ୍ରପାଳେ ଗଲେ ତା ତହିଁକି ॥
ନନ୍ଦଣାସ୍ତ୍ରୀଙ୍କି ବୋଇଲେ ତୋର ମୁଖ ପୋଡ଼ୁ ।
ଏହାଙ୍କୁ ଖାଇବାରୁ ଗୋ ତୋର ଦେହ ଛାଡ଼ୁ ॥
ପୁଣି ବୋଇଲେ ମାତାର ବଚନକୁ ମେଣ୍ଟି ।
ଏବେ ଆଜ୍ଞା ପାଇଲେ ମୁଁ କାଟନ୍ତି ତୋ ତୋଣ୍ଟି ॥
କ୍ଷେତ୍ରପାଳର ଭର୍ତ୍ସନା ପଶେ ତାଙ୍କ କର୍ଣ୍ଣେ ।
ସେ ସତଜଣ ଭକ୍ଷଣ କରିଲେ ଅଜ୍ଞାନେ ॥
କ୍ଷେତ୍ରପାଳ ବିଜୟାଙ୍କୁ ମାଇଲେକ ଖଣ୍ଡା ।
କପାଳ ପାଟରେ ବାଜି ଲଜ ହେଲା ଗୁଣ୍ଡା ॥
କ୍ଷେତ୍ରପାଳକୁ ସେ ଖଣ୍ଡା ପୁଣ ଲେଉଟାଇ ।
ମାଇଲା ବିଜୟଚଣ୍ଡୀ କୋପମନା ହୋଇ ॥

ଚପ ପ୍ରଚଣ୍ଡ ଖଡ଼୍ଗ ତାହା ଉପରେ ରଖି ପଦ୍ମ ।
ଏଥେ କ୍ଷେତ୍ରପାଳର ବେନି ଭୁଜ ଗଲା ଛିନ୍ନ ॥
ଦୁର୍ଗାଙ୍କର ଆଗେ ଯାଇଁ ଗୁହାରି ସେ କଲା ।
ଦେଖି ଦୁର୍ଗା ବୋଇଲେ କେ ତୋତେ ଯୁଦ୍ଧ କରିଲା ॥
କ୍ଷେତ୍ରପାଳ ବୋଲଇ ଗୋ ଶୁଣ ଜଗନ୍ମାତା ।
ଭକ୍ତ ଅପମାନ କରିଲେ ସପ୍ତଗୋଷ୍ଠ ମାତା ॥
ମୁହିଁ ତାହାଙ୍କୁହିଁ ତ ଅଥରଣ ବୁଝାଇଲି ।
ତୁମ୍ଭର ଆଜ୍ଞା ଅନେକ ରୂପେ ଶୁଣାଇଲି ॥
ଶୁଣି କୋପମନ କଲା ସେ ବିଜୟା ଚଣ୍ଡୀ ।
ଖଡ଼୍ଗ ମାରି ମୋ ଭୁଜ ପକାଇଲା ଖଣ୍ଡି ॥
ଏତେ କହି ପଡ଼ିଲା ସେ ଦୁର୍ଗା ପାଦତଳେ ।
ଯାହା ଇଚ୍ଛା ତାହା କର ଗୋ ସର୍ବମଙ୍ଗଳେ ॥
ଏମନ ଅବସ୍ଥା ଦେଖି ତାର ଗୋସାମଣୀ ।
ବୋଇଲେ ଅଟମାଷ ହୁଅ ସପତ ଭଉଣୀ ॥
ମୋର ଭୀରକୁ ଅବଜ୍ଞା କରି ଦେଲ ଦୁଃଖ ।
ସପତମାତା ତୁମ୍ଭେ ଲୋ ହୁଅସି ଅମୋକ୍ଷ ॥
ଦୁର୍ଗାଙ୍କର ମୁଖରୁ ସେ ଏହି ବାକ୍ୟ ଶୁଣି ।
ଚରଣେ ଲୋଟିଲେ ଆସି ସପତ ଭଉଣୀ ॥
ଆଜ୍ଞା ପାଇ ଉଠିଲେକ ଯୋଡ଼ି ବେନିପାଣି ।
ଶାପୁଁ ମୁକତ କାରଣ କର ଗୋସାମଣି ॥
ଦେବୀ ଅନୁଗ୍ରହ କଲେ ତାଙ୍କର ବଚନେ ।
ପାଷାଣ ହୋଇ ଥିବ ଲୋ ବଇତରଣୀ କୂଳେ ॥
ପିରକେଶ୍ୱର ଲିଙ୍ଗ ଲୋ ହେଉ ତୋର ପତି ।
ମନୁଷ୍ୟ ରୂପରେ ତୁମ୍ଭେ କରିଅ ଲୋ ପ୍ରୀତି ॥
ଶୁଣ ହୋ ପରୀକ୍ଷ ରାଜା ଦୁର୍ଗା ଆଜ୍ଞାଦେଲେ ।
ବୈତରଣୀ ଜଳେ ତୁମ୍ଭେ ଅବଗାହ କଲେ ॥
ସ୍ନାନ କରଣ ଶୁକଳରୂପ କୁଷ୍ଠ ଦେଖ ।
ବାହାଙ୍କର ପ୍ରସାଦରେ ଫିଟୁ ତୁମ୍ଭ ଦୁଃଖ ॥
କଳି ଯୁଗରେ ମାନୁଷୀ ରୂପ କରି ଭୋଗ ।
ଡାକେଣୀ ସ୍ୱରୂପରେ ଗୋ ପୋହାବଳ ମାଗ ॥
ହେ ବୁଧଜନେ ପୂର୍ବର ଏସନେକ କଥା ।
ତାହା କହିବାକୁ କିଏ ଅଛି ସାମରଥା ॥
ଜନମନ୍ତୁଁ ଅପଣ୍ଡିତ ମୂର୍ଖ ମୋର ଗୋଟି ।
ବଳରାମ ଶାସ୍ତ୍ର ଦ୍ୱାରା କ୍ଳିଷ୍ଟି ମୋର ମତି ॥
ହେ ବୁଧଜନେ ଜନ୍ମହୁଁ ଅପାଠୀ ଅଜ୍ଞାନୀ ।
ବାସହିଁ କୁଷ୍ଠାନେ ମୁହିଁ କସ ଅବା ଭଣି ॥

ନ ପଢ଼ିଲି ଶାସ୍ତ୍ର କେଉଁ ମୁହିଁ ଅପାଠକ ।
ଅକ୍ଷର ଅର୍ଥ ଯାହା ଅଟେ ଅନ୍ଧକାର ॥
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନେ ।
ସ୍ତ୍ରିଶ୍ରୀ ଏକ ସ୍ୱପ୍ନ ଦେଲେ ଦେଖାଇଲେକ ମୋତେ ॥
ତୁଳସୀମାଳା ଗୋଟିଏ ହୃଦେ ମୋର ଦେଇ ।
ଏ ଶାସ୍ତ୍ର ବାକ୍ୟମାନଙ୍କୁ ରଚନ ବନି କହି ॥
ସେ ମୋତେ କହିଲେ ଆମ୍ଭେ ପ୍ରକାଶିଲୁ ଯାହା ।
ସ୍ୱପ୍ନର କାଳକୁ ବସି ଲେଖିଲି ମୁଁ ତାହା ॥
ସେହି ଆଜ୍ଞାରୁ କରିଲି ମୁଁ ଏକାନ୍ତ ଇଚ୍ଛା ।
ସେ ଜନନୀ ସବୁଙ୍କର ଦେଉ ମନବାଞ୍ଛା ॥
ସମଲେଖା ଅସମ ଲେଖନ କି ଅବା ।
ହେ ସୁଜନ ଜନମାନେ ମେଳକର ଜେବା ॥
ଭୂତଖଣ୍ଡ ପୂର୍ବରେ ଯେ ଝଙ୍କଡ଼ ପୁରରେ ।
ଜନ୍ମେ ଜନ୍ମେ ସେବଇଁ ମୁଁ ସାରଳା ପାଦରେ ॥
ଏ ଗ୍ରନ୍ଥକୁ ଆଜ୍ଞା ମୋତେ ଦେଲେ ମହାଦେବୀ ।
ବଦନ୍ତି ଶୂଦ୍ରମୁନି ସାରଳା ଯେ କବି ॥
ଏଥୁ ଅନନ୍ତରେ ଶୁକମୁନି ପାଦତଳେ ।
ପରୀକ୍ଷିତ ପୂଜା କଲେ ଭକ୍ତିଭାବ ହେଲେ ॥
ଯଦି ମହାମୁନି ମୋତେ କଲ ଅନୁଗ୍ରହ ।
ଫଳଶ୍ରୁତି ଚଣ୍ଡିକାଶାସ୍ତ୍ର ମୋର ଆଗେ କହ ॥
ରବି ଗୋପଥଗଲା ଜନ୍ମେ ଜାଇ ଗର୍ଭଗତେ ।
ପୁଣି କେବଣ କୃତ୍ୟ ସେ କଲେକ ଦଇତେ ॥
ଶୁଣ ପରୀକ୍ଷ ରାଜନ କହେ ଶୁକ ବ୍ରହ୍ମା ।
ଗୃହସ୍ଥରେ ଦୁର୍ଲ୍ଲଭ ଚଣ୍ଡୀଙ୍କ ମହିମା ॥
ଯଦି ରାମାୟଣ ଭାରତରେ ମହାରଣ ।
କଳପ କଲ୍ପ ସମାନେ ଦେବଙ୍କ ଘଟଣ ॥
କୃଷ୍ଣ ତନ ଅବତାର ପାତରୂପ ମସ୍ତି ।
ଶ୍ରୀ ଚଣ୍ଡିକା ଶାସ୍ତ୍ରକୁ ଯେ ସମ ନୋହେ କେହୁ ॥
ଅଦୃଷ୍ଟି ଅଶ୍ରୁତ ଅପୂରୁବ ଅଗୋଚର ।
ଲେଖନ୍ତେ ଅନ୍ତ ନ ହଇ ଏ ଘୋର ସମର ॥
ଏକଇନମାନଙ୍କେ ସେ ଭୂମି ରକ୍ତ ମାଂସ ।
ଯୁଦ୍ଧଭୂମିରେ ଯେତେକ ପଡ଼ିଲେ ରାକ୍ଷସ ॥
ଅସ୍ଥି ଚର୍ମ ରକ୍ତ ମାଂସ ପଡ଼ି ମେଦାମେଦ ।
ପାତାଳକୁ ଭେଦିକରି ବହେ ରକ୍ତନଦୀ ॥
ଶୁଣ ହୋ ପରୀକ୍ଷ ଲକ୍ଷ୍ୟଟିର ପରବତ ।
ଶତାଷ୍ଟୋତ୍ତର ଯୋଜନ ଯାଏ ଉଚ୍ଚର୍ବନ୍ତ ॥

ବେଢ଼ଣ ଯୋଜନର ଓାର ସ୍ୱର୍ଗସ୍ଥଳୀ ।
ସବୁରଠାରୁ ଅଛଇ ସେହୁ ମହାଗିରି ॥
ଶୋଣିତ ବହନ୍ତେ ବୁଡ଼ିଗଲା ବିନ୍ଧ୍ୟଗିରି ।
ସେ ଗିରି ଶିଖ ପର୍ଯ୍ୟନ୍ତେ ମାରଇ ଲହରୀ ॥
ସେ ପର୍ବତ ଉପରରେ ଥିଲେ ଶାଳବୃକ୍ଷେ ।
ପଞ୍ଚ ପଞ୍ଚତାଳ ସେହୁ ଉଚ୍ଚରେ ପ୍ରତ୍ୟକ୍ଷେ ॥
ସେ ବୃକ୍ଷରେ ଲାଗିଲେ ଯେ ମୃତପିଣ୍ଡ ଭେଳା ।
ଲହରୀ ମାରନ୍ତେ ବୃକ୍ଷ ଡାଳ ନ ଦିଶିଲା ॥
ସେ ଦୀର୍ଘ ଡାଳରେ ଥାଇ ହୋଇ ଊର୍ଦ୍ଧ୍ୱମୁଖ ।
ରକତ ପିବନ୍ତି ଗୃଧ୍ରଗଣ ଲଭି ସୁଖ ॥
ଲକ୍ଷ୍ମୀଭଦ୍ରା ପୁଣ୍ୟବତ୍ସା ସରସ୍ୱତୀ ଯାଏ ।
ବୁଡ଼ି ବନ ବୃକ୍ଷ ଗିରି ଏକଖଣ୍ଡ ହୁଏ ॥
ସେ ସାର୍ଦ୍ଧ ତାଳ ବୁଡ଼ିଲା ଲହରୀର ଘାତେ ।
ରକ୍ତ ପିଇଲେ କାକାଦି ପକ୍ଷିଗଣ ଯେତେ ॥
ଆଦିତ୍ୟ ନ ଥିବାରୁ ଯେ ତ୍ରୈଲୋକ୍ୟ ଅନ୍ଧାର ।
ଦିବ୍ୟ ଚକ୍ଷୁ ଅଛଇ ସେ ଦେବୀମାନଙ୍କର ॥
ଅସୁର ସୈନ୍ୟମାନଙ୍କୁ ହୋଇଲା ଅଦୃଶ୍ୟ ।
ଦେବୀଗଣମାନଙ୍କୁ ଯେ ହେଉଅଛି ଦୃଶ୍ୟ ॥
ବାରଣ ନୋହିଲା କେହି କାହାକୁହିଁ ଭେଦ ।
କାହାର ଶିରକମଳ କେ ଧରିଲା ଛେଦ ॥
ଏକବର୍ଷ ହେଲା ନବ ଦିବସ ପର୍ଯ୍ୟନ୍ତ ।
ଏହା କେ ପ୍ରାନ୍ତ କରିବ ଲେଖନ୍ତେ କହନ୍ତେ ॥
ଅସୁର ବଳହିଁ ଶାନ୍ତ ନୋହିଲେ ସମରେ ।
ରବିହିଁ ରହିଲେ ନମିଜାଙ୍କ ଗର୍ଭରେ ।
ଶତେକ ମେରୁ ସମ ଯେଉଁ ଦିନକର କାୟେ ।
ନମିଜାଇ ଗର୍ଭେ ରହି କମ୍ପିତ ପରାଭୟେ ॥
ଅସୁରବଳ ପଇନ ଅପରାଜୟ ଦେଖି ।
ଦେବତାଏ ବରଜ କଲେ ଦେବୀଙ୍କ ତହିଁକି ।
ଅନେକ ବିନୟ ହୋଇ ପେତା କଲେ ସ୍ତୁତି ।
ତୋହର ପ୍ରସାଦେ ମାଗୋ ବଞ୍ଚିଲୁ ଦୁର୍ଗତି ॥
ଦୁର୍ଗା ବୋଇଲେ ତୁମ୍ଭର କମ୍ପା ଏ ଭରସା ।
ବନ୍ଧୁବର୍ଗ ଘେନି ବର୍ଦ୍ଧି ଅଛଇଁ ମହଷା ॥
ବ୍ରହ୍ମା ବୋଇଲେ ଶୁଣସି ଅଗୋ ମାତ ଦୁର୍ଗେ ।
ମହିଷାସୁର ଉତ୍ପାତ ନାହିଁ ଏବେ ସ୍ୱର୍ଗେ ॥
ତ୍ରୈଲୋକ୍ୟ ବଳିଷ୍ଠ ଶୁମ୍ଭ ନିଶୁମ୍ଭ ଦନୁଜ ।
ଅସୁର ଦୈତ୍ୟ ଅବର ଯେ ରକତବୀଜ ॥

ଚଣ୍ଡ ମୁଣ୍ଡ ଶୁମ୍ଭଲେ ସେ ତିନିଲୋକ ପୁର ।
ସ୍ୱର୍ଗ ତେଜି ପଳାଇଲେ ଭୟେ ସୁରେଶ୍ୱର ॥
ସେ ଦୈତ୍ୟମାନଙ୍କୁ ନାଶକଲୁ ହେଲା ଯୁଦ୍ଧେ ।
ମହାସୁଖ ପାଇ ସ୍ୱର୍ଗେ ରହିଲେ ସବୁଏ ॥
ଅବ୍ ମହିଷାସୁରକୁ କ ଭୟ ଅମ୍ଭର ।
ଗର୍ଭସ୍ଥ ହେଲାଣି ମନ କୃପାକୁ ତୁମ୍ଭର ॥
ଏବେ ଲୋକ ସୁଖୀ ହୋନ୍ତୁ ତୋହର ପ୍ରସାଦେ ।
ନମିଜାଇକ ସାଇଣ ଆଜ୍ଞାଦିଅ ହାଦେ ॥
ଆଦିତ୍ୟଙ୍କୁ ବନ୍ଦ କରିଅଛି ଗର୍ଭ ଦେଶେ ।
ଛାଡ଼ିଦେବ ଉଦେ ହେଉ ଏବେ ସେ ଆକାଶେ ॥
ଅନେକ ବିନୟ ଯହିଁ ହେଲେ ଦେବରାଜା ।
ସନ୍ନିଧିକୁ ଦୁର୍ଗାଦେବୀ ବଇଲେ ନମିଜା ॥
ବୋଇଲେ ଗୋ ସୂର୍ଯ୍ୟ ପଶିଅଛି ତୋର ଗର୍ଭେ ।
ଛାଡ଼ିଦିଅ ଆସି ଏବେ ଉଦେ ହେଉ ନଭେ ॥
ଦେବୀ ଆଜ୍ଞା ଶୁଣି ବେଗେ ବିସ୍ତାରିଲା ତୁଣ୍ଡ ।
ଗର୍ଭରୁ ବାହାର ହୋଇ ଉଦେ ମାର୍ତ୍ତଣ୍ଡ ॥
ଆଦିତ୍ୟ ଦେବର ଯହିଁ ପ୍ରକାଶିଲା ଜ୍ୟୋତି ।
ସପ୍ତ ବ୍ରହ୍ମାଣ୍ଡର ଫିଟିଗଲାକ ଦୁର୍ଗତି ॥
ଶୂନ୍ୟରେ ରହି ଦେଖିଲେ ସେହୁ ବୃନ୍ଦାରକେ ।
ରକତ ଦେଖି ଆଶ୍ଚର୍ଯ୍ୟ ହେଲେ ଏକେ ଏକେ ॥
ଅନେକ ରୂପେ ଯେ ଉତ୍ପୁଲ୍ଲିତ ବସୁନ୍ଧରା ।
ବହୁ ମୃତପଣ୍ଡ ହେତୁ ପାଇଲାକ ଭାର ॥
କରରେ ହେମ କୁମ୍ଭେକ ଘେନି ବସୁମତୀ ।
ଦୁର୍ଗାଙ୍କ ଛାମୁରେ ଆସି ଉଭାହେଲା ଯାତ ॥
ଦୁର୍ଗା ବୋଇଲେ ବସୁଧା ହୋଇଲୁ ବିସ୍ମିତ ।
ଶରୀର ଦିକ ଶିଖା ତେଁ କନକର ଜ୍ୟୋତ ॥
ଛାଡ଼ିଲୁ କ ଶ୍ୱେତଭାବ ହେଲୁ କ ଅଭେଗୀ ।
ବସୁଧା ବୋଇଲା ମାଗୋ ସବୁ ତୋହ ଲାଗି ॥
ଦୁର୍ଗା ବୋଇଲେ ଇଚ୍ଛାଏ ମାଂସରକ୍ତ ଶେଷ ।
ଗତ କଥାକୁ ପାଶୋରି ଦେହୁ ହେଉ ତୋଷ ॥
ମହୀ ବୋଲେ ମୃତପିଣ୍ଡ ଅଛହିଁ ରୁଧିର ।
ଜ୍ୱାଳାରେ ପିଙ୍ଗଳବର୍ଣ୍ଣ ହେଲା ମୋ ଶରୀର ॥
ଆଜ୍ଞାଦିଅ ମାଗୋ ଦେବୀମାନେ ଏବେ ଯାନ୍ତୁ ।
ଅତ୍ୟନ୍ତ ଶରଧା ବହି ରକ୍ତ ମାଂସ ଖାନ୍ତୁ ॥
ଶୁଣି ଆଜ୍ଞାଦେଲେ ଦୁର୍ଗା ନାରାୟଣୀ ଆଗେ ।
ଘାଣେହା ପିଶାଚୀଏ ତା ଖାଇଯାନ୍ତୁ ବେଗେ ॥

ଶୁଣ ହୋ ପରୀକ୍ଷ ରାଜା ଅଦ୍ଭୁତ ଦେବତା ।
ଯନ୍ତ୍ରୁଁ ଉଦେ ହୋଇଥିଲେ ଜଗତକରତା ॥
ନବଧନ ନବରାଜି ଏକମଧ୍ୟ ହେଲା ।
କେତେକରଣେ ପଡିଲେ ସେ ଗୋଚର ନୋହିଲା ॥
ଏତେଧନ ମେଦମେଦା ପଡ଼ିଛି ପୃଥ୍ୱୀରେ ।
ବ୍ରହ୍ମାଣ୍ଡଯାକ ପୂରିଛି ସେ ପୂତି ଗନ୍ଧରେ ॥
ଦୁର୍ଗା ପୁଚ୍ଛା କଲେ ଦେବୀମାନଙ୍କୁ ଅନାଇଁ ।
କେତେକେତେ ରାକ୍ଷସ ଗୋ ମାରିଲ ତୁମ୍ଭେହିଁ ॥
ପ୍ରଥମେ କର ଯୋଡଣ କହେ ନାରସୃଣୀ ।
ଯମଘଣ୍ଟର ମାରିଲି ପଚଶ କ୍ଷଉଣି ॥
ବ୍ରହ୍ମାଯୃଣୀ ବୋଇଲେ ଗୋ ଶୁଣ ଜଗନ୍ମାତା ।
ଶଙ୍ଖାସୁରର ମାଇଲି ମୁଁ ଶତେ ମର୍ଦ୍ଦି ତା ॥
ଛପନ କୋଟି ରାକ୍ଷସ ଜପାସୁର ତୁଲେ ।
ମୁଁ ମାଇଲି ବୋଲି ମାହେଶ୍ୱରୀ ଜଣାଇଲେ ॥
କରପଦ୍ମ ଯୋଡ଼ି କରି ଜଣାଏ ବାସେଳୀ ।
ଯୋଜନବାହୁ ଦୈତ୍ୟକୁ ମୁଁ ଅଜ ନାଟିଲି ॥
ଚନ୍ଦ୍ରପଦ୍ମ ଗୁରୁ ଅଗ୍ରବ୍ରତ ତା ସଇନ ।
ସମସ୍ତେ ମୋହର ହାତେ ଗଲେ ଯମମନି ॥
କୃତାଞ୍ଜଳି ହୋଇ ବରଜାଣ୍ଡ ଜଣାଇଲା ।
କୃତାନ୍ତକ ଦନୁଜ ମୋ କରେ ନାଶଗଲା ॥
ଚନ୍ଦ୍ରସାଗର ସୈନ୍ୟ ଯେ ତା ସଙ୍ଗେ ପଡ଼ିଲେ ।
ଗଣନା ନ ଯାଇ କେତେ ସେମାନେ ଛଡ଼ିଲେ ॥
ପ୍ରଣିପତ୍ୟ ହୋଇଣ ସେ କହେ ଡାକେଶ୍ୱରୀ ।
ପଦ୍ମେକ ଯୋଦ୍ଧା ମୁହିଁ ଗୋ ରଣେ ସଂହାରିଲି ॥
ଅଗ ହୋଇ ମାରଜନା ଅସି ଜଣାଇଲେ ।
ଚନ୍ଦ୍ରସାଗର ଯୋଦ୍ଧା ମୋ କରେ ପ୍ରାଣଦେଲେ ॥
ଦୁର୍ଗାଙ୍କ ଛାମୁରେ ଜଣାଇଲେ ଜମ୍ବୁଚଣ୍ଡୀ ।
ସାତ ମର୍ବୁଦ ଯୋଦ୍ଧାଙ୍କ ଶିର ମୁହିଁ ଖଣ୍ଡି ॥
ପ୍ରଣିପତ୍ୟ ହୋଇଣ ସେ ବୋଇଲେ କାଳିକା ।
ସାଗରେକ ଯୋଦ୍ଧା ବଧ କଲି ମୁହିଁ ଏକା ॥
ବାହାନାଦ କରଣ ସେ ବୋଇଲେ କୁଠାରୀ ।
ମୁଁ ମାରିଲି ଯେତେ ଅନ୍ତ କରି ତା ନ ପାରି ॥
ଲଲନା ବୋଇଲା ମାଗୋ ଅମ୍ଭେ ତ୍ରିଭଉଣୀ ।
ମେଳ ହୋଇଣ ମାରିଲୁ ସୈନ୍ୟ ସାତକ୍ଷୌଣି ॥
କରପଦ୍ମ ଯୋଡି କରି ବୋଲେ ଉଗ୍ରତାରା ।
ମୁହିଁ ଯୁଦ୍ଧରେ ମାଇଲି ମେଦଛ ଅସୁର ॥

ପାଞ୍ଚଲକ୍ଷ ଅସୁର ଯେ ସୁବାହୁର ତୁଲେ ।
ସେହି ମୋ ମୁଖରେ ପଡି ଯମପୁର ଗଲେ ॥
ଜଣାଇଲେ ଦୁର୍ଗାଙ୍କର ଛାମୁରେ ଚର୍ଚ୍ଚିକା ।
ଚନ୍ଦ୍ରପଦ୍ମ ଯୋଦ୍ଧା ମା'ଗୋ ମାରିଲି ମୁଁ ଏକା ॥
କରପଦ୍ମ ଯୋଡ଼ି କରି କହେ ଯମସୃଣୀ ।
ମୁହିଁ ମାରିଲି ଗୋ ଦଳ ବତିଶ କ୍ଷଉଣୀ ॥
ବିନମ୍ର ଭାବ ହୋଇ ସେ ବୋଇଲେ ଚାମୁଣ୍ଡା ।
ସମରେ ବଧ କଲି ମୁଁ ଦେଖ ମହାଷଣ୍ଡା ॥
ଅଗରେ ଉଭା ହୋଇଣ ବୋଲଇ ଅମ୍ବିକା ।
ନବସାଗର ଯୋଦ୍ଧା ଗୋ ବଧିଲି ମୁ ଏକା ॥
କରପଦ୍ମ ଯୋଡିକରି ବୋଲନ୍ତି ମାତଙ୍ଗୀ ।
ମାରିଲି ତେଇଶ କୋଟି ସୈନ୍ୟ ରଣରଙ୍ଗେ ॥
ଦୁର୍ଗା ଛାମୁରେ କହନ୍ତି ଦେବୀ ଭଗବତୀ ।
ଯୋଦ୍ଧା ମୁଁ ମାରିଲି ତାହା ଅଟେ ଅଗଣନ୍ତି ॥
ସାତକୋଟି ଯୋଦ୍ଧାତୁଲେ ଚଣ୍ଡାସୁର ଥିଲା ।
ମୁହିଁ ମାଇଲି ସାବେଶ ଦେବୀ ଯେ କହିଲା ॥
ଦୁର୍ଗାଙ୍କ ଛାମୁରେ ଅସି କହିଲା ଉଲୁକା ।
ଅନୁକ୍ଷଣେ ହାଣିଲି କେ ପାରୁ ତାହା ଲେଖି ॥
ଦୁର୍ଗାଙ୍କ ଛାମୁରେ ଅସି କହିଲେ କାମିତା ।
ସାଗର ଯାଏ ଗଣିଲି ଅଜ ଅଗଣିତା ॥
କରପଦ୍ମ ଯୋଡଣ ସେ ବୋଇଲେ ବାରାହୀ ।
ଜଟାସୁରକୁ ମାରିଲି ସୈନ୍ୟ ଲେଖାନାହିଁ ॥
କରପଦ୍ମ ଯୋଡଣ ସେ କହେ ଭଦ୍ରକାଳୀ ।
ପାଞ୍ଚଅର୍ବୁଦ ମାରିଲି ପାଞ୍ଚଣ ଉଗ୍ରଳ ॥
ଶ୍ରୀ ଦୁର୍ଗାଙ୍କ ଛାମୁରେ ସେ ବେତାଳୀ କହିଲା ।
ମୋହର ମାରିବା ଚନ୍ଦ୍ରଅର୍ବୁଦ ହୋଇଲା ॥
ଅମ୍ବିକା ବୋଇଲା ଶୁଣ ଶୁଣ ମାତ ଦୁର୍ଗେ ।
ପଦ୍ମେକ ଯୋଦ୍ଧା ମାରିଲି ମୁହିଁ ରଣରଙ୍ଗେ ॥
କରପଦ୍ମ ଯୋଡ଼ିକରି କହଇ କାମାକ୍ଷୀ ।
ମାରିଲି ମୁଁ ଚନ୍ଦ୍ରପଦ୍ମ ଯୋଦ୍ଧା ଭଲ ବାଛି ॥
ପୁଣି କର ଯୋଡ କହେ ଅସି ବଂଶଶୁଣୀ ।
ଅସଂଖ୍ୟ ହାଣିଲି କେବା ପାରୁ ତାହା ଜାଣି ॥
ଶ୍ରୀ ଦୁର୍ଗା ଅଗରେ କହେ ଯାଇଁ ଶଙ୍ଖେଶ୍ୱରୀ ।
ମୁହିଁ ଯୁଦ୍ଧେ ମାଇଲି ଗୋ ଯୋଦ୍ଧା ଖର୍ବ ଚାରି ॥
ଦୁର୍ଗାଙ୍କ ଛାମୁରେ କହେ ଦେବୀ ମହାମାୟା ।
ଯୁଦ୍ଧରେ ଭୁଞ୍ଜିଲା ମାସୋ ମୋହର ସେ କାୟା ॥

ଦଶପଞ୍ଚ ପୋଡ଼ ଜନ୍ମେ ଅଷ୍ଟ ନନ୍ଦକାସ୍ୟୀ ।
ଯେତେହର ମାତୃକା ମାଗୋ ଗଣିତା ନ ଯାଇ ॥
ଦୁର୍ଗାଙ୍କ ଅଗେ ଜନ୍ମନ୍ତି ଦେବୀ ମାହେଶ୍ୱରୀ ।
ନାରାୟଣୀ ନାମା ଜରେ ଶଙ୍ଖଚକ୍ରଧର ॥
ବୈଷ୍ଣବୀ ନରସିଂହୀ ପୁଣି ରୌଦ୍ରୀ ଆଦି ବହୁରୂ ।
ଅସୁରଦଳ ସଇନ୍ୟ କେତେ ଅନ୍ତକରୁ ॥
ମାଗୋ ଦେବୀମାନେ ଏ ଯେ ଚଉଷଠି ଯୋଗିନୀ ।
ଅଙ୍କ ଶେ କ୍ଷେପନ୍ତି ନବକୋଟି କାତ୍ୟାୟନୀ ॥
ବ୍ରହ୍ମାୟଣୀ ମୂର୍ତ୍ତି ତନ ପଦ୍ମ ଯେ ଯୁକତ ।
ଏହାଙ୍କର ମହିମା ନ ଜାଣେ ବେଦପଡ଼ ॥
ନାରାୟଣୀ ମୂରତ ଯେ ଛପ୍ପନ କୋଟି ଚଣ୍ଡୀ ।
ସେ ଦେବୀମାନେ ଦାନବ ବଳମାନ ଖଣ୍ଡି ॥
ଇନ୍ଦ୍ରାୟଣୀ ମୂର୍ତ୍ତି ଚଉଷଠି କୋଟି ଦେବୀ ।
ଏହାଙ୍କ ମହିମା କେତେ ମୁହିଁ ବା କହିବ ॥
କୃତାନ୍ତକା ଦେବୀ ଯେ ଅଗ୍ନି କାମରୂପୀ ।
ପଦ୍ମଜାତ ହୋଇଲେ ସେ ଗଗନରେ କ୍ଷେପି ॥
ଷାଠିଏ ଲକ୍ଷ ଦେବୀ ଯେ ହୋଇଲେ ବରୁଣାୟୀ ।
ଏହାଙ୍କ ଘୋର ସମର କହିତ ନୁହଇ ॥
ପଦର କେବଳ ଚଣ୍ଡୀ ଶୋଣେହା ମୂରତ ।
ଏହାଙ୍କ ଯୁଦ୍ଧ ଅସଂଖ୍ୟ ଶୁଣି ଅଗଣନ୍ତ ॥
ମାଗୋ ଏହା ସଂକ୍ଷେପି କ କହିବ ବିସ୍ତର ।
ଦେବୀ ଜଣକେ ଚଗ ଶଙ୍ଖେ ପଦ୍ମେ ସୈନ୍ୟମାର ॥
ପାଦପଦ୍ମ ଏକ ଅଟେ ରକ୍ତବୀଜ ବଳ ।
ମାର ମାର ନ ସରଲେ ସେ ଦୁଷ୍ଟ ଗୃଣ୍ଡାଳ ॥
ମାରିବା ଖାଇବା ତାହା କେ ପାରିବ ଗଣି ।
ମୁଁ ମାରିଲି ଏକା ହୋଇ ପଚଣ୍ଡ ଖଡ୍ଗିଣୀ ॥
ତୋ ମହିମା ମସ୍ତକରେ ବହୁ ଦେବୀ ଜାତ ।
ମଧ୍ୟପୁରରେ ଚରଣ ଶିର ଶୂନ୍ୟଗତ ॥
ମାଗୋ ସମସ୍ତେତ ଜାତ ହେଲୁ ତୋର ଗର୍ଭୁ ।
ତନକାଳ କଥାମାନ ଜାଣୁ ତୁହି ସବୁ ।
ଲକ୍ଷକଥା ସମସ୍ତ ଗୋ କହିଲୁ ସଂକ୍ଷେପେ ।
ମହାଘୋର ଦୁର୍ଭିକ୍ଷ ତା ଅଟଇ ଅଦ୍ୟାପି ॥
ବସୁଧା ବୋଲେ ମାତା ମୁଁ ଜାଣଇଁ ସମସ୍ତ ।
ମୋ ଉପରେ ଅନେକବାର ହୋଇଛି ଭାରତ ।
ଅନେକ ଅସୁର ନାଶ କଲେ ଚକ୍ରପାଣି ।
ତୋର ଅନୁଗ୍ରହରୁ ମୁଁ ସମାପୂଣ ଜାଣି ॥

ଅନେକ ଅବତାର ଯେ ହୋଇଲେ ଦେବ ହରି ।
ମାଗୋ ତୋର ସଂଗ୍ରାମକୁ କେହି ନୁହେ ସରି ॥
ବସୁଧା ବୋଇଲା ଦେବୀଗଣେ ଅଙ୍ଗୀକରି ।
ତୋର ମେଦ ମେଦା ମାଂସ ସମସ୍ତେ ଖାଅ ॥
ବହୁତ ପୂତିଗନ୍ଧ ମୁଁ ନ ପାରଇ ସହି ।
ପୁଣି ଦେଖି ସର୍ବଂସହା ବଚନେ କହଇ ॥
ବସୁମତୀ ବଚନକୁ ଶୁଣି ଜଗନ୍ମାତ ।
ଶୋଣେହା ମାନଙ୍କୁ ତଳପାଦୁ କଲେ ଜାତ ॥
ବଂଶାଶୁଣୀ ନାମେ ପ୍ରଥମରୁ ଜାତ ହୁଏ ।
ଦ୍ୱିତୀ ଜାଗୁଳାଇ ଜନ୍ମ କଲେ ମହାମାୟେ ॥
ପୁଣି ଜାତକଲେ ମହାଘୋର ବଂଶାଶୁଣୀ ।
କାମାଶୁଣୀ ଦେବୀ ଜାତ କଲେ ଗୋପାମଣି ॥
କୋରେଅଶୁଣୀ ଅପର ଯେ ଜାରେଅଶୁଣୀ ।
ଅମାଶୁଣୀ ଦମାଶୁଣୀ ସୋହାଗଅଶୁଣୀ ॥
ଏଳମାଶୁଣୀ ଗୋଳମାଶୁଣୀ ତମାଶୁଣୀ ।
କଳତାଶୁଣୀ ଭରତାଶୁଣୀ କନ୍ଦାଶୁଣୀ ॥
ଛନ୍ଦାଶୁଣୀ ଖମ୍ବାଶୁଣୀ ପାଳମାଳାଶୁଣୀ ।
ଝଣ୍ଡାଶୁଣୀ ଚଣ୍ଡାଶୁଣୀ ଯେ କରଜାଶୁଣୀ ॥
ଦଣ୍ଡାଶୁଣୀ କଣ୍ଟାଶୁଣୀ ସେ ଗଗନାଶୁଣୀ ।
ଚନ୍ଦ୍ରାଶୁଣୀ ଇନ୍ଦ୍ରାଶୁଣୀ ସେ ଧବଳାଶୁଣୀ ॥
ବଳାଶୁଣୀ ଯେ କମଳାଶୁଣୀ ଭଦ୍ରାଶୁଣୀ ।
କରୁଣାଶୁଣୀ କରୁଣାଶୁଣୀ ମିନାଶୁଣୀ ॥
ତମ୍ବାଶୁଣୀ ରୁପାଶୁଣୀ ଗୁଣଗୁଣାଶୁଣୀ ।
କରକାଶୁଣୀ ଯେ ପଣ୍ଡାଶୁଣୀ ଦଣ୍ଡାଶୁଣୀ ॥
ଲହରଶୁଣୀ ସାକରଶୁଣୀ ଶାଯ୍ୟାଶୁଣୀ ।
ଉପରଶୁଣୀ ହେଉରଶୁଣୀ ଗମାଶୁଣୀ ॥
ସାଗଶୁଣୀ ହଂସାଶୁଣୀ ଝରଶୁଣୀ ପୁଣି ।
ପାରଶୁଣୀ କରତରଶୁଣୀ ସୀତାଶୁଣୀ ॥
ତାରଶୁଣୀ କୃଷ୍ଣାଶୁଣୀ ଦେବପିତାଶୁଣୀ ।
ରେଖାଶୁଣୀ ସରସ୍ୱତଶୁଣୀ ମେଅାଶୁଣୀ ॥
ଜୀରଶୁଣୀ ହରଶୁଣୀ ସ୍ୱପୋଏକାଶୁଣୀ ।
ନୀଳାଶୁଣୀ ଭୀଳାୟୁଣୀ ଗୋପାମଣିଶୁଣୀ ॥
ଶୁଣ ହେ ପରୀକ୍ଷ ରାଜା ସର୍ବଶୁଣୀମାନ ।
ହୋଇଲେ ମାନବୀ ରୂପେ ଭବେ ଅବତୀର୍ଣ୍ଣ ॥
ଯେତେ ଗ୍ରାମମାନେ ହୋଇଛନ୍ତି ଉତପନ୍ନ ।
ଏ ଦେବୀମାନଙ୍କ ଅଂଶେ ଅଛନ୍ତି ସେ ପୁନ ॥

ଏ ଦେବୀମାନେ ସମସ୍ତେ ଶୋଣେଦା ମୂରତ ।
ଯେ ଯାହାର ନାମ ଶ୍ରେଷ୍ଠ ବଖାଣୁ ଅଛନ୍ତି ॥
ଶ୍ରୀ ଦୁର୍ଗାର ପାଦରୁ ସେ ହେଲେ ଉତପତ୍ତି ।
ବର୍ଣ୍ଣଗୁଣେ ସେ ଯେ କାମଦେବଙ୍କୁ ମୋହନ୍ତି ॥
ଶ୍ୟାମଳ ଗଉର କଳା ବର୍ଣ୍ଣ ବିସ୍ତରନ୍ତି ।
କେ ପିଙ୍ଗଳ କେ ହିଙ୍ଗୁଳ ରଙ୍ଗ ପ୍ରକାଶନ୍ତି ॥
ମନୁଷ୍ୟ ଶରୀର ନାନା ବର୍ଣ୍ଣେ ମୁଖ ଶିରୀ ।
ଛଅ ସାତ ଆଠ ଅବା କାର ମୁଖ ଚାରି ॥
ଗର୍ଜ୍ଜନ୍ତି ସେ ପୁଂପୁଂକାର କରି ଘୋରନାଦେ ।
ପୃଥିବୀ କମ୍ପଇ ତାଙ୍କ ଗର୍ଜ୍ଜନ ଶବଦେ ॥
ଅନନ୍ତ କାତ୍ୟାୟନୀ ଅଜପାକ୍ଷର ମୂର୍ତ୍ତି ।
ଦୁର୍ଗାର ମୁଖ ଚାହିଁଣ ଆହାର ମାଗନ୍ତି ॥
ଦୁର୍ଗା ବୋଇଲେ ରକତ ନଦୀ ପିଅ ଯାଇଁ ।
ଏତେ ବୋଲି ଦେବୀ ଦେଲେ ଅଙ୍ଗୁଳି ଦେଖାଇ
ଏହେଅଜ୍ଞା ତାଙ୍କୁ ଯହୁଁ ଦେଲେ ଦେବୀ ଦୁର୍ଗେ ।
ଧାଇଁ ରକ୍ତ ନଦୀ ଶୋଷିଗଲେ ଅତିବେଗେ ॥
ଗିରିବର ସମାନରେ ବଢ଼ାଇଲେ କାୟେ ।
ଭକ୍ଷନ୍ତି ରକତମାଂସ ହୋଇଣ ନିର୍ଭୟେ ॥
ଯଥାକାଶ ଗଙ୍ଗା ମେରୁ ମେଖଳେ ପଶଇ ।
ତଥା ରକ୍ତ ମାଂସ ଅଦ୍ଧ ଦେବୀ ଗର୍ଭେ ଯାଇଁ ॥
ଅସ୍ଥି ଚର୍ମ ଆଦ୍ଧ କରି ଭକ୍ଷନ୍ତି ଶୋଣେଶ୍ୱରୀ ।
ଏକନିଃଶ୍ୱାସକେ ଶୋଷିଗଲେ ସର୍ବମସ୍ତି ॥
ଚଉଷଠି ଯୋଜନରେ ରକ୍ତ ପୂରିଥିଲା ।
ସହଦବସକରେ ସେ ସବୁ ଶୋଷ ହେଲା ॥
ମହାବଣ୍ଟୁପ ଧରି କଉତୁକେ ଭକ୍ଷି ।
ସମସ୍ତ ଭକ୍ଷିଲେ ସେ ଯେ ନ ରହିଲା କିଛି ॥
ବସୁଧା ଦେଖନ୍ତେ ଶୋଷ ହୋଇଲା ସେ ସମସ୍ତ ।
ଯେ ଅବା ଜୀବନେ ବର୍ତ୍ତିଥିଲେଟି ଦଇତ ॥
ତାହାନ୍ତ ସମରେ ସବୁ ମାରି କାତ୍ୟାୟନୀ ।
ଅନେକ ଦୈତ୍ୟ ମାଇଲା ସେ ହାଖିଚାସିନୀ ॥
ଥୋରବସ୍ତେ ଧରି ସେହି କଣ୍ଟକେ ସମସ୍ତ ।
ରଣେ ମହାଦେବୀମାନେ ହେଲେ ଉନମତ୍ତ ॥
ଦୈତ୍ୟଙ୍କର ଶସ୍ତ୍ରକୁ ଯେ ନ କରନ୍ତି ଭୟେ ।
ବଜ୍ର ନିର୍ମିତ ଅଟଇ ଦେବୀଙ୍କର କାୟେ ॥
ଶର ବନ୍ଧ ବନ୍ଧ ଦୈତ୍ୟେ ପଳଇଲେ ବିମୁଖ ।
ପଳାବନ୍ତି ଦାନବେ ଯେ ଲଭି ମହାଦୁଃଖ ॥
ମହାବଣ୍ଟପେ ଧରି ସେ ହାତଅଶୁଣୀ ।
ଥୋଇଦନ୍ତେ ଧରି ବହୁଦୈତ୍ୟ ନାଚେ ପୁଣି ॥
ନେଇ ବେଗେ କଣ୍ଠରେ ଖଂଖଟିର ଦୋଳ ।
ଅସ୍ଥି ଚର୍ମ ମାଂସ ଅଦ୍ଧ ସର୍ବସ୍ୱ ଏ ଯୂଳ ॥
ରଣରଙ୍ଗ କୁତୂହଳ କହନ୍ତେ କେ ପାରି ।
ଏକା ହାତଅଶୁଣୀ ଯେ ସର୍ବଦୈତ୍ୟମାରି ॥
ଜପାସୁର ବୋଲିକରି ଏକ ସେନାପତି ।
ତପେଣ ତୋଷ କଲା ସେ ଦେବ ବେଦପତି ॥
ଏକଲୟେ ବସିଲା ସେ ସହସ୍ର ବରଷ ।
ପ୍ରସନ୍ନ ହୋଇଲେ କାଳେ ତାହାଙ୍କୁ ବେଦେଶ ॥
ବ୍ରହ୍ମାଏ ବୋଇଲେ ଉଠ ତୁରେ ଯାତୁଧାନ ।
ମାଗ ହେ ତୁ ବର ତୋତେ ହୋଇଲୁ ପ୍ରସନ୍ନ ॥
ଦାନବ ବୋଇଲା ଦେବ ଦେବୁ ଯେବେ ବର ।
ଜପ ତପୁଁ ମନ ନାହିଁ ମୋର ଅନ୍ୟଠାର ॥
ମୋତେ ପ୍ରସନ୍ନ ଯଦ୍ୟପି ହୋଇଲୁ ବରଦ ।
ଜପ ତପୁଁ ମୋହର ନ ଥିବ ଅନ ଛନ୍ଦ ॥
ପିତାଏ ବୋଇଲେ ଏବେ ନିଜପୁରେ ଯାଯା ।
ବୈତରଣୀ ନଦୀତୀରେ ତପେ ବସିଥା ଯା ॥
ଯେ ତୋ ତପ ଭଙ୍ଗ ବଞ୍ଚ କରି ବଳାତ୍କାର ।
ତୁ ଚାହିଁଲେ ଜଳିଯିବ ତାହାର ଶରୀର ॥
ଯଦ୍ୟପିକ ହରି ହର ଦେବ ପୁରନ୍ଦର ।
ତୁ ଚାହିଁଲେ ଭସ୍ମ ହୋଇଯିବେ ଦେବାସୁର ॥
ଏମନେକ ବିଧାନରେ କହି ପ୍ରବସିଦ୍ଧି ।
ସତ୍ୟଯୁଗୁ ତାହାରତ ହେଲା ବୁଦ୍ଧି ସିଦ୍ଧି ॥
ମହୀ ମଣ୍ଡଳରେ ସେହି ଅଟେ ଚକ୍ରବର୍ତ୍ତୀ ।
ମହୁଦୈତ୍ୟଙ୍କୁ ପ୍ରଦାନ କଲେକ ଦୁହିତା ॥
ସେହିକନ୍ୟା ସମପ୍ତେକେ ହେଲା ଗର୍ଭବତୀ ।
ବଜ୍ରସିଂହ ଦାନବ ଯେ ତହୁଁ ଉତପତ୍ତି ॥
ବଜ୍ରସିଂହ ନନ୍ଦନ କପିଳ ସିଂହ ସ୍ୱୟେ ।
ମହିଷାସୁର ଦାନବ ତାହାର ତନୟେ ॥
ଏମନ୍ତେ ସେ ଜପାସୁର ମୈଷା ପଣଅଜ୍ଞା ।
ପ୍ରୀତି ବଢ଼ାଇ ମହିଷା ତାକୁ କଲା ପୂଜା ॥
ଶ୍ଳେଷ ସ୍ନେହାଦରେ ବଶ ହେଲା ଦୈତ୍ୟପତି ।
ତପ ଛାଡ଼ି ମହିଷାର ହେଲା ସେନାପତି ॥
ଦକ୍ଷିଣ କୋଣେ ଅଛଇ ସୈନ୍ୟ ଅଧିକାରୀ ।
ସ୍ତ୍ରୀରକୋଟି ଯୋଦ୍ଧାପରେ ଅଟେ ପଟ୍ଟଅରି ॥

ହେ ପରୀକ୍ଷ ଜଳାସୁର ବଂଶ ଭୋଗ କଲା ।
କର୍ମ୍ମର ଫଳାକେ ତାକୁ ପ୍ରମାଦ ପଡ଼ିଲା ॥
ସେ ଜଳାସୁର ସଲଣ ଜଳଉପସ୍ଥେ ।
ଯୋର ହସ୍ତେ କର୍ହଲେ ଧର ମହାମାୟେ ॥
ସୈନ୍ୟ ମାଇନ୍ତେଣ ଜଳାସୁର ଯେ ବିମୁଖ ।
ଘରେ କେତେ ଗୁହିଁବ ମୈଷାସୁର ମୁଖ ॥
ସମର ମୁଁ କରେ କର୍ପା ଧନଶସ୍ତ ଧରି ।
ପିତାମହଙ୍କୁ ଚନ୍ଦ୍ରର ଏଥି ବସିକରି ॥
ତଦନ୍ତେ ଗୁହିଁବ ଏହି ଦୁଷ୍ଟ ଦେବାଚଣ ।
ଭସ୍ମ ହୋଇବେ ଏମାନେ ଅଇ ନୋହୁ ରଣ ॥
ଏମନ୍ତ ବଚନ ହେତୁ ଧ୍ୟାନ କରି ବସି ।
ଅନ୍ତର୍ଗତ ମଧ୍ୟେ ପଢ଼ମହ ନାମ ଘୋଷି ॥
ଅସୁରର ଚେଷ୍ଟା ଦେଖି ହାତଅବାସିକା ।
ଘୋର ସ୍ୱବକର ଯାଏଁ ଥୋଇହସ୍ତ ସେନ ॥
ତେଜ ଦୃଷ୍ଟିକରି ଦୈତ୍ୟ ଗୁହିଁଛି ତାହାକୁ ।
କ୍ଷଣକେ ହାତଅଗ୍ନି ଜିଳିଦେଲା ତାକୁ ॥
ଅହେ ପରୀକ୍ଷିତ ଧର୍ମ ଥିଲା ପ୍ରାଣୀ ତରେ ।
ଅଧର୍ମ କଲେ ଅମର ଲୋକ ହେଲେ ମରେ ॥
ଜଳାସୁର ଯେବେ ପୂର୍ବତପ କରୁଥାନ୍ତା ।
ବଇତରଣୀ କୂଳକୁ କେବେ ନ ଅଯାନ୍ତା ॥
ସେ ଯେବେ ଗୁହାନ୍ତା ବ୍ରହ୍ମାବିଷ୍ଣୁ ମହେଶ୍ୱର ।
ଭସ୍ମ ହୋଇ ଯାନ୍ତେ କେତେ ଏ ଦେବାମାତର ॥
ଯହୁଁ ଧର୍ମ ଛାଡ଼ିଲା ସେ ସମରେ ପଶିଲା ।
ନିଜଧର୍ମ ଛାଡ଼ିକରି ନିଜେ ନାଶଗଲା ॥
ପରୀକ୍ଷିତଙ୍କୁ ଯେ ଶୁକ ପୁଣିହିଁ କହିଲେ ।
ବେଦ ଅଲିବ୍ରତ ଋଥୀ ତାର ନାଶଗଲେ ॥
ହାତଅବାହନା ହାତେ ଜଳାସୁର ମଲା ।
ପୁରନ୍ଦର ଅଭିଷେକ ତା ମାଥେ କରିଲା ॥
ମେଷାସୁର ସମ୍ପଦ ଯେ ଜଳାସୁର ଧର୍ମେ ।
କ୍ଷେତ୍ରହୀନ ହୋଇଲା ସେ ଅତ ଉତକର୍ମେ ।
ଜଳାସୁର ନାଶେ ହେଲା ଅମଙ୍ଗଳ ରାଜ୍ୟ ।
ଦାନବକୁଳେ ସମସ୍ତେ ହେଲେ ହୀନବୀର୍ଯ୍ୟ ॥
ଦାନବ କୁଳରେ ପଡ଼ିଗଲା ମହାଶୋକ ।
ଅନେକ ସାନନ୍ଦ ପୁଣି ହେଲେ ଦେବଲୋକ ॥
ଅଠାଇଶ ସେନା ମହିଷାର ନାଶଗଲେ ।
ସ୍ୱତାଲୁଷ ସାଗର ଯେ ସରିବ ମରିଲେ ॥
ମେଦମେଦାସ୍ଥାନ ଯହୁଁ ହୋଇଲାକ ପୃଥ୍ୱୀ ।
ଅନେକ ସାନନ୍ଦ ହୋଇ ଗଲେ ବସୁମତୀ ॥
ଜୟ ଜୟ ଦୁର୍ଗେ ମାଗୋ ଦୁର୍ଗତିତାରିଣି ।
ନାଶକଲୁ ମହିଷାର ସକଳ ସଇନ ॥
ଦର୍ପ ବହିଣ ଅନ୍ତରେ ତୋତେ ନ ଚିହ୍ନିଲେ ।
ନଷ୍ଟବୁଦ୍ଧିରେ ତୋଠାରେ ଦ୍ରୋହ ଆଚରିଲେ ॥
କରବାଳ ଧରି ତେଣୁ ମାଇଲୁ ସମରେ ।
ବସା ଉତ୍ପାତ ହୋଇଲା ତୋହର ଯୋଗରେ ॥
ନାମ ଧରନ୍ତେ ମାତା ଗୋ ଯମଭୟ ନୋହେ ।
ମହା ମହା ରଥମାନ ଖଣ୍ଡନ ଯେ ହୋଏ ॥
ଅଶେଷ ମହିମା ତବ କେ ପାରିବ କହି ।
ସ୍ଥାଣପଣରେ ଏ ଚଣ୍ଡୀପୁରାଣ ଲେଖଇ ॥
ଇଷତରେ କୃପା ମାଗୋ କର ମୋହଠାରେ ।
ମୋର କଣ୍ଠେ ବସି ପଦ କହିଦେଅ ବାରେ ॥
ହର ବାମା ହର ମୋର ଦୁର୍ଗତି ସକଳ ।
ରସନା ରଟୁ ଯେ ତବ ନାମକୁ କେବଳ ॥
ମୂର୍ଖ ମୁହିଁ ଅପଣ୍ଡିତ ନାହିଁ ଜ୍ଞାନାଜ୍ଞାନ ।
ଲକ୍ଷ୍ୟ କରିଛି କେବଳ ତୋ ପଦ୍ମ ଚରଣ ॥
ବୟସତ ଗତ ହେଲା ଅସି ଗୃହୁଁ ଗୃହୁଁ ।
ସାରିଦେଲା ରୋଗ ମୋତେ ଯେତେକ କାଳସ୍ତୁ ॥
ତବ ନାମ ବଳେ ମୁହିଁ ନ ଧରିଲା ମୁଖେ ।
ସାରଳା ଦାସ ମୋ ନାମ ଖ୍ୟାତ ଇହଲୋକେ ॥
ସରସିଜବଦନୀ ଗୋ କର ଅନୁଗ୍ରହ ।
ନ ଅସିବା ସ୍ଥଳେ ପଦମାନ କହି ଦିଅ ॥
ବାତୁଳ ପରାୟେ ଲେଖେ ଦୋଷ ମୋର ନାହିଁ ।
ସଂପୂର୍ଣ୍ଣ ରୂପେ ଏ ଶାସ୍ତ୍ର କେମନ୍ତେ ଲେଖଇ ॥
ସ୍ଥାଣୁ ହୋଇଲେ ଯେପରି ଏହାକୁ ବୁଝିବ ।
ନ ହେଲା ବୋଲିଣ ମୋତେ ନିନ୍ଦା ନ କରିବ ॥
ମୋକ୍ଷଗତି ଯେଉଁପରି ଲଭିବ ଶେଷରେ ।
ରତ୍ନପତିବାମ ବାମା ଦିଅ ଅକ୍ଳେଶରେ ॥



## ସୂର୍ଯ୍ୟ ମଣ୍ଡଳ ରଥର ବିବରଣ ।

ଏଅନ୍ତେ କାଳନ୍ଦକାଳ ନାମେ ଦେବଦୂତେ ।
ସ୍ତୁପତେ ଥିଲେ ହିରଣ୍ୟଗର୍ଭ ଦରବତେ ।

ବଇନ ନୟନରେ ସେ ଗଲେ ଅତିବେଗେ ।
ଯାଇଁ ଜଣାଇଲେ ମୈଷା ନୃପତିର ଆଗେ ।
ଶୁଣ ସାବଧାନେ ବୀରବର ପୃଥ୍ୱୀଶ୍ୱର ।
ସଙ୍ଗଥାନ୍ତି ନମସ୍କିଲେ ରଣରେ ତୋହର ॥
କି କୁହ କି ଲୁହ ବୋଲିକହନ୍ତେ ସେ ବେଗେ ।
ସତାଇଶ ସାଗର ତା ସୈନ୍ୟ ରଣଭଙ୍ଗେ ॥
ଅଠାଇଶ ସେନାପତି ସହ ଗଲେ ନାଶ ।
ଶୁଣି ମହିଷାସୁରର ଉଡ଼ିଲା ସାହସ ॥
ପୁଣି ମହିଷାବୋଲେ କି ବୋଇଲରେ ଦୂତେ ।
ସ୍ତ୍ରୀଶ୍ୱଲିଙ୍ଗ ହୋଇ ସୈନ୍ୟ ମାରିଲା କେମନ୍ତେ ॥
ଯେଉଁ ମାନଙ୍କରେ ରୁଦ୍ର ହରି ସମ ନୋହି ।
ସେ ବୀରମାନେ ଜୀବନେ ନାଶହେଲେ କାହିଁ ॥
ଅହା ଯମଦଣ୍ଡ କମ୍ବାସୁର ଚଣ୍ଡାସୁର ।
ସୁ ପ୍ରଚଣ୍ଡାସୁର ମହାବୀର ଧମ୍ବାସୁର ॥
ଅହା ଶତଶିର ଅହା ରେ ସହସ୍ରଶିର ।
ଅରେ ଜପାସୁର ଅରେ ଅରେ ଧପାସୁର ॥
ବଜ୍ରାଙ୍ଗ ମହାଗର୍ଜନ ଭସ୍ମର ଦଇତ ।
କାଳ ନରଘାତ ଅରେ କେଣେ ଗଲୁ ଭୂତ ॥
ବାଣାସୁର ବାତାସୁର ଅରେ ଓଷ୍ଠମୁଖା ।
ଶୃଗାଳବଦନା ଅରେ ଅରେ ଘୋଡ଼ାମୁଖା ॥
ଏଡ଼େ ଏଡ଼େ ବୀରମାନେ କେଣେ ଚାଲିଗଲ ।
ଅଗାଧ ସମୁଦ୍ରେ ମୋର ଭେଳା ବୁଡ଼ାଇଲ ॥
ତୁମ୍ଭ ବାହୁକୁ ଅଶ୍ରୟ କରିଥିଲି ସିନା ।
ଅଙ୍ଗୁରେ ନାଶଗଲ ଏଡ଼େ ଏଡ଼େ ଜେନା ॥
ଜାଣିଲି ଦେବଙ୍କର ଏ କୃତ୍ତ ଅଟଇ ।
ଏରୂପେ ମହିଷାସୁର ଶୁଣ ବାହୁନଇ ॥
ପୁଣି ସ୍ଥମୁରେ ଜଣାଏ କାଳବମୋଚନ ।
ପ୍ରାଣବିସର୍ଜିଲେ ସବୁ ସେନାପତିମାନ ॥
ରୁଷିଲା ବାଣ ବୋଲିଣ ବୋଲେ ନୃପମଣି ।
କାଳବମୋଚନର ସେ ଧରି ବେନି ପାଣି ॥
ଅସାଷ୍ଟାମ ହୋଇ ପଡ଼େ ଦୈତ୍ୟକୁଳ ସ୍ୱାମ୍ଭେ ।
ତେଜଇ ନିଶ୍ୱାସ ପ୍ରାଣ ବିସର୍ଜନ ପ୍ରାୟେ ॥
ସମ୍ଭାଳି ଧରିଲା ତାକୁ କାଳବମୋଚନ ।
ମହିଷାସୁର ଯେ ହୋଇଅଛି ଅଚେତନ ॥
ବିଷନ୍ତେ ସେ ମହାରାଜା ହୋଇଲା ସାଷ୍ଟାମ ।
ବୋଲେମୋପୁରେ ପ୍ରବେଶ ହେଲା ଏବେ ଯମ ॥

ବ୍ରହ୍ମା ବିଷ୍ଣୁ ରୁଦ୍ର ଜଣ ଧାରନ୍ତି ଯେ ଡରେ ।
ସ୍ତ୍ରୀଶ୍ୱଲିଙ୍ଗ ଯୁଦ୍ଧେ ପଡ଼ି ମଲେ ଅକାରଣେ ॥
ଜାଣି ନ ପାରିଲି ଦେବଙ୍କର କଷ୍ଟ ଛନ୍ଦ ।
ଅନେକ ସନ୍ତାପ ପୁଣି କରଇ ନରେନ୍ଦ୍ର ॥
କାଳବମୋଚନ ବୋଲେ ବିଷ୍ଣୁ ଭସ୍ମ ଜାଣୁ ।
ତତେ ଅବଧ ବୋଲିଣ ବଚନ ପ୍ରମାଣୁ ॥
ମୈଷାବୋଲେ ବ୍ରହ୍ମାଙ୍କୁ ମୁଁ ବହୁ ସେବାକଲି ।
ପୁରୁଷେ ବଧ ନୋହିବ ଏ ବର ମାଗିଲି ॥
ଅନ୍ଧକ ମନ୍ତ୍ରୀ କହିଲା ମୋତେ ନିର୍ଧାର ।
ବିଷ୍ଣୁହିଁ ହୋଏଛି ସ୍ତ୍ରୀରୂପେ ଅବତାର ॥
ଅନ୍ଧକ ମନ୍ତ୍ରୀ ବଚନ ମୁହିଁ କଲି ନିନ୍ଦା ।
କାଳେ ଯେ ଫଳିଲା ବୁଡ଼ିଗଲା ମୋର ଫନ୍ଦା ॥
ମତ୍ତଗର୍ବେ ବୋଇଲି ସେ ସ୍ତ୍ରୀଶ୍ୱ ଲିଙ୍ଗ ଛାର ।
ଯାକୁ ନିନ୍ଦାକଲି ତାରେ ହେଲି ଅପହାର ॥
ଅହୋ ସେନାପତି ମାନେ ମୋ ପ୍ରାଣ ସଙ୍ଘାତ ।
ଅନାଥ କରିଣ ମୋତେ ଗଲ ରେ ସମସ୍ତ ॥
ଅରେକାଳବମୋଚନ ମୋତେ ଲଗେଇଛୁ ।
କେବଣ ସମୁଦେ ଯାଇଁ ଲୁଗୁଇବ କାସ୍ତୁ ।
ଏଡ଼େଏଡ଼େ ସେନାପ୍ରାଣତ୍ୟାଗ କଲେ ରଣେ ।
ଅବର ମୋ ଜୀବ ଅଛି କମ୍ପିତ କାରଣେ ॥
କର୍ମକୁ ଅଦର ଭୁଜ ଶିରରେ ତାଡ଼ଇ ।
ବଜ୍ରାଘାତ ପ୍ରାପ୍ତ ହୋଇ ଭୂମିରେ ପଡ଼ଇ ॥
ଧରି ତାକୁ ବୋଲଇ ଯେ କାଳବମୋଚନ ।
ଅଧମପଣେ ନାଶିଲୁ ସେନାପତିମାନ ॥
ଚଣ୍ଡମୁଣ୍ଡ ବେନି ବାର୍ତ୍ତା ଯେବେ ଅଣିଦେଲେ ।
ତେତେ ସେ ଡାକୁଛି ବୋଲି ଏମନ୍ତ କହିଲେ ॥
ଅବଜ୍ଞା କଲୁ ଶୁକ୍ରଦେବ ଗୁରୁ ତାଙ୍କର କଥା ।
ଅପଣା ଅଧମପଣେ ହେଲୁ ହୀନାବସ୍ଥା ॥
ତୁହି ଯେବେ ମିଳଥାନ୍ତୁ ଯାଇଁ ତାର ଛାମୁଁ ।
ତାରୁ କ୍ଷମାରୁ ହୋ ତୋତେ ଦେଶନ୍ତାପ୍ରଥମୁଁ ॥
ପାମରପଣ ବହିଲୁ ଭୁତ ସଙ୍ଗ ପଣେ ।
ବଳଦେଖାଇଣ ତୁହୋ ବୋଇଲୁ ଅପଣେ ॥
ଅହୋ ଚଣ୍ଡମୁଣ୍ଡ ତୁମ୍ଭେ ଚାଲ ହୋ ବହନ ।
ସେ ମୋହିନୀ ଚତୁଷ୍ୱର ହୋ କେଶ ଧରି ଅଣ ॥
ତୁହି ସେ ଅପଣେ ଗଚ୍ଛୁ ଭଅଇଲୁ ମଧ୍ୟ ।
ସେହି ବାକ୍ୟ ଶୋଷ୍ଟକରୁ ଛୁଇଲା ଦ୍ୱନ୍ଦ୍ୱ ॥

ଏବେ ଅଗତ କଥା ତୁ କେବେହେଁ ନ ବୋଲ ।
ଦଣ୍ଡପାଳ ପ୍ରିୟବନ୍ଧୁ ଦେଖିବା ହୋ ଗୁଳ ॥
ଈଶ୍ବରଙ୍କୁ ଯୋଗାଇଲେ କରବାକ ସନ୍ଧ ।
ନଚେତ ନ ଯୋଗାଇଲେ ହୋଇବାନା ଦ୍ୱନ୍ଦ୍ୱ ॥
ଚାଳତମୋଚନ ମୁଖୁଁ ଏହୁ ବାକ୍ୟ ଶୁଣି ।
ମହିଷାସୁର ସମ୍ମତ କଲା ତାହା ପୁଣି ॥
ହେବ ଦୁନ୍ଦୁଭି ବଜାଇ ଯେ ଦେବାଧି ରାଜ ।
ଆଜ୍ଞାଦେଲ ବହନ ହୋ ମୋର ଦଣ୍ଡ ସାଜ ॥
ମହିଷାସୁର ସାରଥି ଯେ ଧୂମ୍ରଲୋଚନ ।
ଅବକାର ଦାନବ ସେ ସମରେ ନିପୁଣ ॥
ତାକୁ ଆଜ୍ଞା ଦେଲାକ ସେ ବକ୍ରମ ଦନୁଜ ।
ଅହୋ ଧୂମ୍ରଲୋଚନ ତୁ ମୋହ ରଥ ସାଜ ॥
ରାଜା ଆଜ୍ଞା ପାଇ ରଥ ସାଜିଲା ସାରଥି ।
ସେ ସୂର୍ଯ୍ୟମଣ୍ଡଳ ରଥ ଆଦିତ୍ୟର ଜ୍ୟୋତି ॥
ଅନେକ ରତନ ମଣି ମଣ୍ଡିଲା ଯେ ରଥେ ।
ଉଡ଼ନ୍ତି ତହିଁ ପତାକାମାନ ଅପ୍ରମିତେ
ବୃକ୍ଷଜାତି ଶାରୀ ବସିଅଛି ଚକ୍ରପାଖେ ।
ଶ୍ୟାମଳ ମେଘରେ ଯେସନ୍ତେ ଶ୍ୱେତପନ୍ତ୍ର ବଳାକେ ॥
ରଥର ପ୍ରମାଣ ରାଜ୍ୟେ କେତେ କହିଯାଉ ।
ଦେବନଳେ ଚଉଷଠି ସହସ୍ର ଅଙ୍ଗୁଳି ॥
ଦେବହସ୍ତ ମନୁଷ୍ୟଙ୍କ ହସ୍ତେ ବାରହାତ ।
ସେହିହାତେ ଷୋଳହାତେ ନଳେକ ବହିତ ॥
ସେ ନଳେ ଚତୁରାଧିକ ଚୌଷଠି ସହସ୍ର ।
ସେ ରଥର ଗର୍ଭମାପ ଅଟଇ ନରେଶ ।
ମାଣିକର ସ୍ତମ୍ଭମାନ ଅତିଶୟ ଶୁଭ୍ର ।
ମାଣିକ୍ୟହିଁ ଯାଡ଼ ଯାଡ଼ ପାବଛି ଯେ ସ୍ୱାର ॥
ଲମ୍ବନ୍ତ ଗଜ ମୁକୁତା ରଥ ଚାରି ଫେରେ ।
ଅଷ୍ଟରତ୍ନ କଳଶ ସେ ରଥର ଉପରେ ॥
ନେତର ପତାକାମାନ ଉଡ଼େ ତହିଁ ଲକ୍ଷେ ।
ବାଳାର୍କ ପରାଯ୍ୟେ ଦେଖାଯାଏ ସେ ପ୍ରତ୍ୟକ୍ଷେ ॥
ବହୁଗିର ପ୍ରାୟେ ଅଇବ୍ରତେ ଚକ ସାଜ ।
ଉଚ୍ଚୈଃଶ୍ରବା ସମେ ଯୋଚେ ସହସ୍ରେକ ବାଜ ॥
ମାଣିକ୍ୟ ପୁଞ୍ଜ ପୁଞ୍ଜ ଯେ ଝରାମାନ ଝର ।
ଲମ୍ବନ୍ତ ଚାମରମାନେ ମୁକ୍ତା କେଉ କେଉ ॥
ଅହୋ ପରୀକ୍ଷିତ ଦେବ ଭଣ୍ଡାର ରତନ ।
ସେ ରଥରେ ଜଞ୍ଜିଲା ଯେ ଯେ ଧୂମ୍ର ଲୋଚନ ॥

ଯହିଁ ଲାଗିଅଛି ଦେବ ଭଣ୍ଡାର ସମ୍ପଦ ।
ସେହିରଥ ବର୍ଣ୍ଣିବାକୁ ମୋର କାଇ ବୁଦ୍ଧି ॥
ତ୍ରୈଲୋକ୍ୟମଧ୍ୟରେ ଯେତେଯେତେ ବହୁଯାଉ ।
ବିଶ୍ୱକର୍ମା ଗଢ଼ି ଅଛି ଆଦିତ୍ୟ ରଥର ॥
ତାହାଙ୍କୁ କୌଣସି ରଥ ନୋହିବନ୍ତି ସମ ।
ଏହା ଶୁଣିଣ ପଚାରେ ପରୀକ୍ଷ ରାଜନ ॥
ହେ ବଙ୍କ ପଣ୍ଡିତ ବ୍ୟାସ ମହାମୁନି ସୁତ ।
ବୋଇଲ ତୁମ୍ଭେ ଆଦିତ୍ୟ ଦେବର ଏ ରଥ ॥
ଏତ ଅସମ୍ଭବକଥା ଶୁଣିଲା ମୋ ନାହିଁ ।
ମହିଷାସୁର ଏହି ରଥ ପାଇଲା ବା କାହିଁ ॥
ଶୁଣ ପରୀକ୍ଷିତ କହେ ବୋଲେ ଶୁକବ୍ରହ୍ମା ।
ଯାହା ପୁଚ୍ଛା କଲ ଅହୋ ଧାର୍ମିକ ମହାତ୍ମା ॥
ଆଦିତ୍ୟ ଦେବର ସୂର୍ଯ୍ୟମଣ୍ଡଳ ସେ ରଥ ।
ଏରଥ ଅରୋହଣ କରେ ଦିନକରନାଥ ॥
ଉଦୟ ଗିରିକ ତାର ବକାଇର ଜ୍ୟୋତି ।
ସପ୍ତଅଶ୍ୱଯୋଚି ବାହେ ଅରୁଣ ସାରଥି ॥
ଅଇବ୍ରତେ ଚକ ଅଛି ପୁଣ ସେହି ରଥେ ।
ତେଣେ ରବି ମେରୁ ପ୍ରଦକ୍ଷଣ କରେ ନିତ୍ୟ ॥
ଅହେ ପରୀକ୍ଷ ରବିଙ୍କି ଦଏ ଧାଡ଼ ରାହୁ ।
ଅତ୍ୟନ୍ତ ପ୍ରତାପୀ ତାର ଯୋଜନେକ ବାହୁ ॥
ବଛମାସ ଶୁକ୍ଳପକ୍ଷ ପୌର୍ଣ୍ଣମୀର ତିଥି ।
ଭୃଗୁବାର ଦ୍ୱିଜା ବୃଷ ମେରୁଚନ୍ଦ୍ର ସ୍ଥିତ ॥
ସମ୍ପୂର୍ଣ୍ଣ ଯେ ଦିବସରୁ ଏକାଦଶଦଣ୍ଡୀ ।
ସହିଆଦିତ୍ୟ ଦେବର ହେଲା ଭେଟାଭେଟି ॥
ରବିଙ୍କ ଦେଖି ଧାଇଁଲା ପାପିଷ୍ଠ ଚଣ୍ଡାଳ ।
ରଥଛାଡ଼ି ପଳାଇଲେ ଦେବ ଦିନପାଳ ॥
କ୍ଷୀରସମୁଦ୍ରେ ପଶିବେ ଯାଇଁ ଲୁଚିଦେଇ ।
ସେ ରଥ ଗିଳଣ ରାହୁ ସେଠାରୁ ଦୂରାଇ ॥
ରବିଙ୍କି ନ ପାଇ ରଥ ପକାଇ ତଦ୍ଭାବ ।
ଅନନ୍ତଗିର ନିକଟେ ଗଲା ଗୁହଜର ॥
ଉଚ୍ଛିଷ୍ଟ ରଥ ବୋଲିଣ ସୂର୍ଯ୍ୟ ନ ଚଢ଼ିଲା ।
ରାହୁ ପୁଚ୍ଛ ଅମୃତଦିତ୍ୟ ତାହା ଘେନିଗଲା ॥
ଅମୃଦାଇତଙ୍କୁ ନାଶକଲେ ପିନାକୀର ।
ସେ ରଥ ଥୋଇଲେ ନେଇ ଅମର ନଗର ॥
ଅମୃଦାଇତରପୁଅ ଯେ ମହିଷ ଦାନବ ।
ତାହାକୁ ପ୍ରସନ୍ନେ ବରଦେଲେ ମହାଦେବ ॥

ଅମର ପୁରକୁ ମତ୍ସ୍ୟଦୈତ୍ୟ ଦେଲା ଧାଡ଼ି ।
ଅମର ପୁର ଯେ ଇନ୍ଦ୍ର ପଳାଇଲା ଛାଡ଼ି ॥
ଅନେକ ଦେବ ରତନ ଦୈତ୍ୟ କଲେ ଜୁର ।
ସେ ସୂର୍ଯ୍ୟମଣ୍ଡଳ ରଥ ନେଲା ମତ୍ସ୍ୟାସୁର ॥
ଗୋମୁଖ କେଶବରୂପେ ଅବତାର ହରି ।
ମତ୍ସ୍ୟ ଦାନବକୁ ମାରିଲେକ ଚକ୍ରଧର ॥
ତାର ନିଜପୁର ଧ୍ୱଂସ କରିଲେକ ଅଚ୍ୟୁତ ।
କେଶବ ଅଣିଲେ ତହୁଁ ସେହି ଦିବ୍ୟରଥ ॥
ମତ୍ସ୍ୟଦଇତ୍ୟ କୁମର ଅନ୍ଧକ ହୋଇଲା ।
ବିଷ୍ଣୁଙ୍କୁ ଧାଡ଼ ଦେଇ ସେ ରଥ ଘେନିଗଲା ॥
ସେରଥେ ବସି ସେ ସର୍ବଭୁବନ ଜିଣିଲା ।
ତା ଦେଖି ବିଧାତା ଯାଇଁ ଶିବଙ୍କୁ କହିଲା ॥
ପିତାମହ ବଚନେ ସେ ଦେବ ପଶୁପତି ।
ଅନ୍ଧକ ଦଇତକୁ ଯେ ସମରେ ବିକୋଠି ॥
ଅନ୍ଧକର ନନ୍ଦନ ଯେ ହେଲେ ରକ୍ଷ ଭକ୍ଷ ।
ତାହାଙ୍କୁ ମାରିଲେ ପୁଣି ଦେବ ତ୍ରିଲୋଚନ ॥
ସେ ସୂର୍ଯ୍ୟମଣ୍ଡଳ ରଥ ନେଇ ଦାମୋଦର ।
ଯତନେ ଥୋଇଲେ ଯେ ହିରଣ୍ୟଗର୍ଭପୁର ॥
ରକ୍ଷଭକ୍ଷଙ୍କର ପୁତ୍ର ହେତି ଯେ ପ୍ରହେତି ।
ବିରଞ୍ଚି ବରେ ସେମାନେ କଲେକ ଅନୀତି ॥
ସେ ଦୁହେଁ ପୁଣ ସଇନ ବାହିଲେ ସ୍ୱର୍ଗକୁ ।
ସଂଗ୍ରାମରେ ଇନ୍ଦ୍ର ସମ ନୋହିଲେ ତାହାକୁ ॥
ଦାନବଙ୍କ ଭୟେ ଇନ୍ଦ୍ର ସ୍ୱର୍ଗକଲେ ତ୍ୟଜ୍ୟା ।
ସେ ସୂର୍ଯ୍ୟ ମଣ୍ଡଳ ରଥ ଅଣିଲେ ଦନୁଜା ॥
ଶ୍ରୀକୃଷ୍ଣ ଅବତାରେ ଯେ ଦେବ ଶିଖିପତି ।
ସଂଗ୍ରାମେ ମାରିଲେ ହରି ହେତି ଯେ ପ୍ରହେତି ॥
ସୂର୍ଯ୍ୟମଣ୍ଡଳ ରଥକୁ ଅଣି ଚକ୍ରପାଣି ।
ସଯନମା ପୁରେ ତାହା ଥୋଇଲେ ଯେ ପୁଣି ॥
ହେତି ପ୍ରହେତି ପୁତ୍ର ବଜ୍ରାଙ୍ଗ କାଳାନଳ ।
ଯମକୁ ଜିଣି ଅଣିଲେ ସେ ସୂର୍ଯ୍ୟମଣ୍ଡଳ ॥
ସେ ରଥ ଯାଞ୍ଚଣ ସାଧିକଲେ ସର୍ବ ମଣ୍ଡା ।
ତାଙ୍କ ଭୟେ ଦେବତାଏ ନ ରହିଲେ କେହି ॥
ଭୟେ ଦେବତାଏ କଲେ ବିଷ୍ଣୁଙ୍କୁ ଗୁହାରି ।
ନାରାୟଣ ଅବତାର ହେଲେ ଚକ୍ରଧର ॥
ସେ ବଜ୍ରାଙ୍ଗ ଦଇତ୍ୟକୁ ମାରି ମହା ଯୁଦ୍ଧେ ।
ସେ ରଥ ଥୋଇଲେ ନେଇ ପାତାଳର ମଧ୍ୟେ ॥

ବଜ୍ରାଙ୍ଗଦୈତ୍ୟର ପୁତ୍ର ମଞ୍ଜ ଯେ ସୁମାଳ ।
ତାହାଙ୍କୁ ଯେ ବରଦେଲେ ଦେବ ଅଂଶୁମାଳ ॥
ଅଦିତ୍ୟର ବରେ ସେହି ହେଲେ ଜଟକ୍ଷେତା ।
ସେ ରଥକୁ ବଳାତ୍କାରେ ଘେନିଲେ ଦଇତା ॥
ବିଷ୍ଣୁ ଅବତାର ହେଲେ ଜନାର୍ଦ୍ଦନ ରୂପେ ।
ତାଙ୍କ ଦ୍ୱାରା ନାଶଗଲେ ସେ ବେନି କୌଣପେ ॥
ଜନାର୍ଦ୍ଦନ ଅଣିଲେ ଯେ ତହୁଁ ରଥ ଘେନି ।
ନେଇ ସମର୍ପିଲେ ସେ ଯେ ଦେବ ପଦ୍ମଯୋନି ॥
ମାଲିର କୁମର ମଧୁନାମରେ ଦଇତ ।
ତପେଣ ତୋଷିଲା ସେହି ଦେବ ଶୂଳହସ୍ତ ॥
ଧାତାର ପୁରକୁ ମଧୁଦୈତ୍ୟ ଦେଲା ଧାଡ଼ି ।
ପଳାଇଲା ପିତାମହ ନିଜପୁର ଛାଡ଼ି ॥
ସେ ସୂର୍ଯ୍ୟମଣ୍ଡଳ ରଥେ ବସିଣ ଅସୁର ।
ବେଗେ ଅପି କଲା ସ୍ୱର୍ଗପୁର ନାରଖାର ॥
ଅନେକ ଅପ୍ସରା ଅଣିଲେକ ହରି ବଳେ ।
ଷୋଳସହସ୍ର କନ୍ୟା ଘେନି ଅଇଲେ ଗୃଣ୍ଡାଳେ ॥
ସେକନ୍ୟା ବସାଇଁ ସୂର୍ଯ୍ୟମଣ୍ଡଳ ରଥରେ ।
ଅନେକ କଉତୁକରେ ବିହରି ପାମରେ ॥
ଗରୁଡ଼ ଚଢ଼ି ଶ୍ରୀହରି ଅଯତନ୍ତ୍ର ଆକାଶେ ।
କନ୍ୟାଙ୍କୁ ଘେନି ଛାମୁରେ ମିଳିଲେ ସାକ୍ଷତେ ॥
ସେ ମଧୁଦୈତ୍ୟ ମାରିଲେ ଦେବ ନାରାୟଣ ।
ତେଣୁ ସେ ନାମ ବହିଲେ ଶ୍ରୀମଧୁସୂଦନ ॥
ଷୋଳସହସ୍ର ନାୟିକାଙ୍କୁ ଅଣି ଦେବ ହରି ।
ରଥ ସହିତରେ ଗଲେ ବଇକୁଣ୍ଠ ପୁରୀ ॥
କନ୍ୟାମାନଙ୍କୁ ଅନ୍ତରେ ଥୋଇଲେ ମୁରାରି ।
ସେରଥ ରଖିଲେ ନେଇ ବରୁଣର ପୁରୀ ॥
ମଧୁଦଇତର ପୁତ୍ର ସେ ଜଳତରଙ୍ଗ ।
ତପେଣ ତୋଷିଲା ସେହି ଦେବ ଖଗିଅଙ୍ଗ ॥
ବରୁଣ ପୁରକୁ ସେହି ଦୈତ୍ୟ ଦେଲା ଧାଡ଼ି ।
ନୂପୁର କର୍ମେ ଶୁଣି ଅସୁରଙ୍କ ରଡ଼ି ॥
ବରୁଣ ଦେବତା ପଳାଇଲେ ଛାଡ଼ି କରି ।
ଷୋଳସହସ୍ର ନାୟିକା ଅଣିଲେ ସେ ହରି ॥
ସେ କନ୍ୟା ଜଳତରଙ୍ଗ ବଳେ କ୍ଳେଶ କଲା ।
ଶୁଣ ଅହୋ ପଣ୍ଡିତ ଶୁକ ଯେ ବୋଇଲା ॥
ହରି ଅବତାର ଦାମୋଦର ରୂପେ ଜନ୍ମେ ।
ଜଳତରଙ୍ଗ ରାଜାକୁ ମାରିଲେ ସେ ହେଳେ ॥

ସୂର୍ଯ୍ୟମଣ୍ଡଳ ରଥକୁ ଆଣି ଦଇ ଏକା ।
ତାହାର ନନ୍ଦନ ନାମ ହୋଇଲା ତାରକା ॥
ସେହୁ ଜିତେ ଥିଲା ଯାଇଁ ଅନେକ ଭୁବନ ।
ସ୍ୱର୍ଗ ତେଜି ପଳାଇଲେ ଦେବ ମଘବାନ ॥
ସୂର୍ଯ୍ୟମଣ୍ଡଳ ରଥକୁ ଆଣିଲା ସେ ବଳେ ।
ଅନେକ ଅନୀତି କଲେ ତ୍ରୈଲୋକ୍ୟମଣ୍ଡଳେ ॥
କାମଦମନ କାଳରେ କାର୍ତ୍ତିକାବତାର ।
ସେହି ତାରକାଦୈତ୍ୟକୁ ମାରିଲେ କୁମାର ॥
ସୂର୍ଯ୍ୟମଣ୍ଡଳ ରଥକୁ ପାଇଣ ସେଠାରେ ।
ନେଇ ଥୋଇଲେ ଅଳକାବତୀ ନାମପୁରେ ॥
ଶୁମ୍ଭ ନିଶୁମ୍ଭ ଯେ କାଳେ ସ୍ୱର୍ଗେ ହେଲେ ରାଜା ।
ସେ ସୂର୍ଯ୍ୟମଣ୍ଡଳ ରଥ ନେଲେ ସେ ଦନୁଜା ॥
ସେ ରଥ ଚଢ଼ିଣ ସେହୁ କଲେ ରଣରଙ୍ଗେ ।
ସମର୍ପେକେ ଦେଲେ ନେଇ ମୈଷାସୁରସଙ୍ଗେ ॥
ଶ୍ରୀ ବ୍ୟାସନନ୍ଦନ ଯେଉଁ ଶୁକ ମହାବ୍ରହ୍ମା ।
କହିଲେ ସୂର୍ଯ୍ୟମଣ୍ଡଳ ରଥର ମହିମା ॥
ଶୁଣ ହେ ପରୀକ୍ଷିତ ତୁ ମୋହର ବଚନ ।
ଏ ସୂର୍ଯ୍ୟମଣ୍ଡଳ ରଥ ଏହିନେକ ପୁଣ ।
ବୋଇଲୁ ଏହା ପାଇଲା କାହୁଁ ମୈଷାସୁର ।
ତେଣୁ ଏ କଥା କହିଲୁଁ ତୋହର ଛାମୁର ॥
ଏହା ଶୁଣିଣ ସାନନ୍ଦ ସେ ପରୀକ୍ଷରାଜା ।
ଶୁକମୁନି ଚରଣରେ କଲେ ଦ୍ରବ୍ୟପୂଜା ॥
ଅବତାର ପୁରୁଷ ହେ ଶୁକ ମହାମୁନି ।
ଋଷିକୁଳର ମଧ୍ୟରେ ମହିମା ତୋ ଧନ୍ୟ ॥
ଯାହାର ସେ ବାକ୍ୟଗୋଟି ପାଷାଣର ରେଖା ।
ଯାବଚ୍ଚନ୍ଦ୍ର ଦିବାକରେ ଜୀବତ ହେଉ ସଖା ॥
ଯେ ମୁନି ତ୍ରିଭୁବନରେ ପଣ୍ଡିତରେ ଲେଖା ।
ଭୂତ ଭବିଷ୍ୟତ ଜ୍ଞାତା ବ୍ରହ୍ମାହିଁରେ ଲେଖା ॥
ଅସଂଖ୍ୟ ପୁରାଣବାକ୍ୟ ଯେଉଁ ମୁନି ଜ୍ଞାତା ।
ସଂଖ୍ୟାବାକୁ ଗଣିବାକୁ କେ ହେବ ଶକତା ॥
କଉତୁକ ପୁରୁଷ ସେ ସର୍ବଦା ଅନନ୍ଦ ।
ମାନବେ ଜନ୍ମିଣ କିସ ବନ୍ଦିବ ମୁଁ ମନ୍ଦ ॥
ଶ୍ରୀ ବ୍ୟାସ ଋଷିଙ୍କ ସୁତ ଚରଣେ ନମାମି ।
ଶୂଦ୍ରମୁନି ଶତସହସ୍ର ଦଣ୍ଡ ପରଣାମି ॥

### ମହିଷାସୁରର ଯୁଦ୍ଧକୁ ଗମନ ଓ ନର୍ମଦା ପର୍ବତ ଦେବୀଗଣଙ୍କର ଅବସ୍ଥିବ ।

ଏଥୁଅନ୍ତରେ ବୋଲନ୍ତି ଶୁକ ମହାବ୍ରହ୍ମା ।
ଏକମନେ ପରୀକ୍ଷିତ ରାଜା ହେ ଶୁଣିମା ॥
ପର୍ବ ମୁହୂର୍ତ୍ତର ଧନୁ ଶର ଧରି ହସ୍ତେ ।
ଚଢ଼େ ଦାନବ ସେ ସୂର୍ଯ୍ୟମଣ୍ଡଳର ରଥେ ॥
ଦ୍ୱିତୀ ସମୁଦ୍ର ଜାଣିଣ ରକ୍ଷକାଳ ଥାଟ ।
ଗହନ ଅନ୍ଧକାର ଯେ ଉଲ୍କାପାତ ବୃଷ୍ଟି ॥
ଅଗୁଆଣି ଥାଟେ ଚଢ଼େ କାଳଚମୋଚନ ।
ଅସୁତେକ ଯୋଦ୍ଧା ନରସାଗର ସୈନ୍ୟ ॥
ମୈଷା ଡାହାଣ ପାଖରେ ଅଛି ସିଂହନାଦ ।
ମେରୁ କମ୍ପୁଅଛି ଶୁଣି ଏହାଙ୍କ ଶବଦ ॥
ସିଂହନାଦ ତୁଲେ ଗଜ ପଚାଶ ଷହଣୀ ।
ବେନିଲକ୍ଷ ଯୋଦ୍ଧା ପାଞ୍ଚ ଅର୍ବୁଦ ସଇନ ॥
ସତୁର କୋଟି ଯେ ଢୋଲ କୋଟିଏ ଟମକ ।
ମହୁରୀ ଧଟଗ ଖଞ୍ଜ ଶଙ୍ଖ ଯେ ଅନେକ ॥
ନାନାବିଧ ବାଦ୍ୟମାନ କେତେ ଗଣିପାରି ।
ଚତୁର୍ଦ୍ଦଶ ଭୁବନରେ ଶବ୍ଦ ଅଛି ପୂରି ॥
କାଳଚମୋଚନ ଆଗେ ଏଥୁଁ ସାତଗୁଣି ।
ବାଦ୍ୟକାରମାନେ ଛନ୍ତି ନୁହଇ ଗଣନ ॥
ବାମପାଖେ ତାହାର ଯେ ଅସୁର ଦୁନ୍ଦୁଭି ।
ତାହାଙ୍କର ନାଦ ଶୁଣି କମ୍ପେ ଦେବୀ ଭୁବି ॥
ଏହାର ତୁଲେ ଗୃଞ୍ଜଣ ସହସ୍ର ଯେ ବୀର ।
ବେନି ସାଗର ସଇନ୍ୟ କୋଟି ମହାବୀର ॥
ତିନିକୋଟି ଛନ୍ତି ଶସ୍ତ୍ରଧାରୀ ଯୋଦ୍ଧା ତହିଁ ।
ପଦାତି ତାହାର କେତେ ଗଣିତା ନୁହଇ ॥
ବାଦ୍ୟକାରମାନ କେତେ ନୁହଇ ତା କଳ ।
ଟଙ୍କ ଫୁଟୁଅଛି ପାଞ୍ଚକୋଟିକୁ ଉଗୁଳ ॥
ସିଂହମୁଖା ଘୋଡ଼ାମୁଖ ବେନି ସେନାପତି ।
ପଛଆଣି ଥାଟରେ ଯେ ଛନ୍ତି ଚକ୍ରବର୍ତ୍ତୀ ॥
ଏହାଙ୍କର ତୁଲେ ଅଶୀ ଲକ୍ଷ ବୀର ଆଟ ।
ମୈଷାସୁର ଥାଟେ ସେହୁ ଅଟନ୍ତି ଗରିଷ୍ଠ ॥
ପାଞ୍ଚକୋଟି ରଥ କୋଟିଏକ ମୁକ୍ତବନ୍ଧା ।
କ୍ଷଣକେ କରି ପାରନ୍ତି ତ୍ରିଭୁବନ ଯୋଧା ॥

ତାଙ୍କ ବାଦ୍ୟକାର ମାନ ସଂଖ୍ୟା କରି କେହେ ।
ସହିଁରେ କି ଏକା ଭେରି ସାତପଦ୍ମ ହୁଏ ॥
ମୈଁଷାସୁର ତୁଲେ ରଥ ଏଗାର ସାଗର ।
ନବକୋଟି ପଞ୍ଚଶତ ଅର୍ବୁଦ ଗଜ ସାର ॥
ଅଶୀକୋଟିଏ ମୁକ୍ତିକଣ୍ଠା ଯୋଦ୍ଧା ତୁଲେ ।
ପଦାତିଗଣ ତାହାର କେହୁ ସରିକଲେ ॥
ବ୍ରହ୍ମଜାତ ସ୍ୱାସ୍ତ ବନ୍ଦି ଦେବେ ଅନ ନାହିଁ ।
କ୍ଷଣକେ ଏତେକ ସୈନ୍ୟ ଅଇଲେ ସେ ବାହି ॥
ପଞ୍ଚ ଅଯୁତ ଚାମର ପଡ଼େ ବେନି ପାଶେ ।
ଚାମରମାନଙ୍କେ ମୁକ୍ତା ଲମ୍ବେ ଲକ୍ଷେ ଲକ୍ଷେ ॥
କଳା ଚାମରମାନତ ତହିଁ ଯେତେ ଛନ୍ତି ।
ତହିଁ କୋଟି କୋଟି ଗଜ ମୁକୁତା ଲମ୍ବନ୍ତି ॥
ତିନି ଅଯୁତ ମୟୂର ଝାଲେରର ଛତା ।
ନବଲକ୍ଷ ଶଙ୍ଖ କୋଟିଏକ ଧଳା ଛତା ॥
ଅଲମ୍ବ ଅଯୁତେ କଳା ଅଲମ୍ବ କୋଟିଏ ।
ଧଳା ଚାମର କୋଟିଏ କଳାତ କୋଟିଏ ॥
କୃଷ୍ଣବର୍ଣ୍ଣ ପାଟଛତ୍ର ଅଛି ବେନି କୋଟି ।
ଏକଲକ୍ଷ ମଙ୍ଗଳରେ ଛନ୍ତି କୋଟି କୋଟି ॥
ଅବରହିଁ କୃଷ୍ଣବର୍ଣ୍ଣ ଲକ୍ଷେକ ଉଦଣ୍ଡ ।
ଏମନ୍ତେ ଅସୁର ଦଳେ ସମସ୍ତେ ପ୍ରଚଣ୍ଡ ॥
ପଞ୍ଚଷଠିସହସ୍ର ସାର ଢୋଲ ଯେ ବଜାଇ ।
ପଞ୍ଚଷଠି ସହସ୍ର ଯେ ନିଶାଣ ଶୁଭଇ ॥
ପଞ୍ଚଷଠି ସହସ୍ରେକ ଟମକହିଁ ବାଜେ ।
ଦାଉଣ୍ଡି ବଜଘୋଷତ ତହିଁ କେହୁ ହେଜେ ॥
ପଞ୍ଚଷଠି କୋଟି ବାନ୍ଧି ଅଛଇ ଝଞ୍ଜାଳ ।
ପଞ୍ଚଷଠି କୋଟି ତହିଁ ବଜଇ କାହାଳ ॥
ପଞ୍ଚଷଠି କୋଟି ଅଲାବେଣୀ ସରିକଳ ।
ପଞ୍ଚଷଠି କୋଟି ଭେରି ବାଜଇ ଉଗ୍ରଳ ॥
ପଞ୍ଚଷଠି କୋଟି ଝଙ୍ଗ ବାଜେ ତହିଁ ପୁଣି ।
ପଞ୍ଚଷଠି କୋଟି ଘନତାଳ ପରିମାଣି ॥
ପଞ୍ଚଷଠି କୋଟିଏକ ମହୁରୀ ଦୋସର ।
ଏ ବିଧି ଅନେକ ପରକାରେ ବାଦ୍ୟ ପୂରି ॥
ବଦନ୍ତି ହୋ ଶୁକମୁନି ଶୁଣ ହୋ ପରୀକ୍ଷ ।
ଛପ ସଙ୍ଖା ଥାଏ ଅବ୍ରତ ତିନିଲକ୍ଷ ॥
ତିନିପଦ୍ମ ଅଙ୍କୁଳ ଯେ ଏହା ପରିକଳ ।
ହସ୍ତି ବାହନ ଚଢ଼ିଣ ଏ ସମସ୍ତେ ଚଳେ ॥
ବାଦ୍ୟକାରମାନେ ତିଂଶକୋଟି ଅବ୍ରତ ।
କୃଷ୍ଣବର୍ଣ୍ଣ ହସ୍ତିଚଢ଼ି ଗଅନ୍ତି ସମସ୍ତ ॥
ଅସ୍ତଅଣି ସୈନ୍ୟଙ୍କର ଉଲୁକ ବାହନ ।
ଛପ ଚାମର ସବୁରି ଅଟେ କୃଷ୍ଣବର୍ଣ୍ଣ ।
କଳାବସ୍ତ୍ର କଳାସଜ୍ଜ ଭୂଷିତ ଯେ ଅଙ୍ଗେ ।
କଜ୍ଜଳା ମାଝେ ଧଉନ୍ତି ଯେସନ୍ତେ କୃଷ୍ଣମେଘେ ॥
ରଥ ଉପରମାନଙ୍କେ ରତ୍ନ ଲକ୍ଷେ ଲକ୍ଷେ ।
ଶ୍ୟାମଳ ମେଘେ ଯେସନେ ଶୋଭନ୍ତି ବାଳାର୍କେ ॥
ଅସୁର ବଳ ଉଠନ୍ତି ଏକମୁଖ ହୋଇ ।
ପୃଥ୍ୱୀ ଟଳ ଟଳ ହୋଏ ମହାଭୟ ପାଇ ॥
ଅମ୍ବିକା ଯେ ଜଣାଇଲେ ଶୁଣ ମାତ ଦୁର୍ଗେ ।
ଅନେକ ସୈନ୍ୟତ ଅସୁଛନ୍ତି ଅମ୍ଭ ଅଗେ ॥
ମୈଁଷାସୁର ସଜ ଅଜ ସଂଗ୍ରାମରେ ବଢ଼େ ।
ଯେସନ୍ତେ ମହାପ୍ରଳୟରେ ସପ୍ତସିନ୍ଧୁ ଗର୍ଜେ ॥
କ୍ଷୁଧାର୍ତ୍ତି ପ୍ରାଣୀ ହୁଅଇ ଯେସନ୍ତେ କ୍ଷୁଧାକାଳେ ।
ପିଶାଚୁଣୀ ବୃନ୍ଦ ସେହି ରୂପରେ ହୋଇଲେ ॥
ସତ୍ୱର ଅମ୍ଭଙ୍କୁ ଅଜ୍ଞା ଦିଅ ଗୋସାମଣି ।
ସଙ୍ଗତକୁ ଉଠୁଛନ୍ତି ଅସୁର ସଇନ ॥
ସେମାନଙ୍କୁ ଖାଇ ଅମ୍ଭ କ୍ଷୁଧା ନିବାରିବୁ ।
ବିନା ଅଜ୍ଞାରେ କପରେ ତାଙ୍କପାଶେ ଯିବୁ ॥
ଅପଣଙ୍କ ଅଜ୍ଞା କେହି ନ ପାରଇ ଲଙ୍ଘି ।
ବିଚାରଣ ଅଜ୍ଞା ମାଗୋ ଦିଅ ବେଗି ବେଗି ॥
ମହାବଳୀ ଦୈତ୍ୟମାନେ ଧାମନ୍ତି ପ୍ରଖର ।
ବସୁମତୀ ଶରୀରରୁ ବହେ ରକ୍ତ ଧାର ॥
ଦୁର୍ଗଙ୍କ ଅଗରେ ଅସି କହେ ବସୁନ୍ଧରା ।
ଦ୍ୱିଗୁଣ ଲାଗିଲା ଏବେ ଅସୁରଙ୍କ ଭର ॥
ବସୁନ୍ଧରାର ବଚନ ଶୁଣି ଦୁର୍ଗାମାୟେ ।
ବୋଇଲେ ଅଙ୍ଗବ୍ୟାକୁଳ ଯେବେ ତୋ ହୁଏ ॥
ଏହୁକ୍ଷଣି ଦୈତ୍ୟବଳ ମାରିବଇଁ ମୁହିଁ ।
ଅଜ୍ଞା ଦେଲେ ଦେବୀମାନେ ସଇବେତ ଯାଇଁ ॥
ଶ୍ରୀ ଦୁର୍ଗାଙ୍କ ବଦନରୁ ଏହି ବାକ୍ୟ ଶୁଣି ।
ଅଶ୍ୱାସ ବଚନେ ଶାନ୍ତ ହୋଇଲା ଧରଣୀ ॥
ଅସୁରଙ୍କୁ ଦେଖି ଦୁର୍ଗା ମହାତମ କଲେ ।
ଶାନ୍ତ ମୂର୍ତ୍ତି ଛାଡ଼ି ଚଣ୍ଡ ରୂପକୁ ଧଇଲେ ॥
କହ କହ ହରହାସ କଲେ ମହାମାୟେ ।
ଅନନ୍ତ କୋଟି ରୂପରେ ଦେଖା ଉପୁଜାଏ ॥

ଅନନ୍ତ କୋଟିଏ ଦେବୀଙ୍କ ପୂଜନଲେ ଯନ୍ତେଁ ।
ଦେଖି ମହାମାତ୍ମ୍ୟ ମନ ତୋଷ କଲେ ତନ୍ତେଁ ॥
ପରୀକ୍ଷିତ ପୃଚ୍ଛା କଲେ ଶୁଣ ଶୁକ ବ୍ରହ୍ମା ।
ଅଗୋଚର ଅଟଇ ଚଣ୍ଡୀଙ୍କ ମହିମା ॥
ଅଟଇ ମହାମୁନି ମୋତେ ଏକଥା କହିବା ।
କଲି ପାତକ ମୋହର ଅଙ୍ଗୁ ଛଡ଼ାଇବା ॥
ଜାତ ହୋଇଲେ ଅନନ୍ତ କୋଟିଏକ ମୂର୍ତ୍ତି ।
ତାହାଙ୍କର ନାମ ମୋତେ କହ ମହାଯତି ॥
ସେ ଦେବୀଙ୍କର କେମନ୍ତେ ଅଟଇ ସ୍ୱରୂପ ।
ଶୁଣି ପାପ କ୍ଷୟ ଯାଉ ଖଣ୍ଡିବ ସନ୍ତାପ ॥
ଶୁକମୁନି ବୋଇଲେକ ଅହେ ମହାରଥ ।
ଶୁଣି ପାପ କ୍ଷୟ କର ଦେବୀଙ୍କର କଥା ॥
ପ୍ରଥମେ ଜନ୍ମିଲେ ନର୍ମଦା ଯେ ସରସ୍ୱତୀ ।
ଦ୍ୱିତୀୟେ ଜନ୍ମ ଶାରଳା ନାମେ ଚଣ୍ଡୀମୂର୍ତ୍ତି ॥
ତହିଁ ଉତ୍ତାରୁ ଜନ୍ମିଲେ ସେ ଶତ ଅମ୍ବିକା ।
ପୁଣ ଜନ୍ମହେଲେ ଯେତେ କେତେ କରୁ ଲେଖା ॥
ବକୁଳାଇ ଶଙ୍କରଇ ଶାନ୍ତ କାନ୍ତରେଖା ।
ମାଧବୀ ଲତା ରମ୍ଭାଇ ଅବର ସୁରେଖା ॥
ଲୋଳାକ୍ଷୀ ଶ୍ୟାମା ଶ୍ୟାମଳା କ୍ଷମାକ୍ଷୀ ରଚନା ।
ସୋରେଅ ବଟେଶ୍ୱମା ମାଳତୀ ଯେ ପାଶ୍ୱଅନା ॥
ସବୁଅକ୍ଷୀ ସନ୍ତାକ୍ଷୀ ଦୁପ୍ପଲାକ୍ଷୀ ସଦାକ୍ଷୀ ।
ବୁଧାକ୍ଷୀ କପଡ଼ାକ୍ଷୀ ଯେ ମେଣ୍ଟାକ୍ଷୀ ମେଧାକ୍ଷୀ ॥
ନବୃନ୍ଦ ବମଳାନ ମୂଷାକ୍ଷୀ ହିଙ୍ଗୁଳାକ୍ଷୀ ।
ଶାନ୍ତ ମୂର୍ତ୍ତି ଦୁଃଖାକ୍ଷୀ ଯେ ଧନାକ୍ଷୀ ନେତାକ୍ଷୀ ॥
ମୂଷାକ୍ଷୀ ମୂର୍ଚ୍ଛାକ୍ଷୀ ଅନନ୍ତାକ୍ଷୀ ଯେ ବଜାକ୍ଷୀ ।
କାଳନ୍ଦୀ ଭୁଜସାକ୍ଷୀ କାତ୍ୟାୟନୀ ଅଭୟା ॥
ଅନ୍ଧାଶ୍ୱ ମୁକୁଳାକ୍ଷୀ ଶାମୁଙ୍କା ଯେ ବଢ଼ୋଲା ।
ସୋଲେହା ଗଙ୍ଗା ଯମୁନା ମୋହିନୀ ମେଖଳା ॥
ନୂଅଦାକ୍ଷୀ ହିଯୁଦାକ୍ଷୀ ଯୁଗାକ୍ଷୀ ରୂପାକ୍ଷୀ ।
ମଣ୍ଡନୀ ଚନ୍ଦନରେଖା ସାରସରୂଅକ୍ଷୀ ॥
ଗୋପାଳାକ୍ଷୀ ଗୋପାଳୀ ସାନନ୍ଦୀ ନନ୍ଦନାକ୍ଷୀ ।
ଚନ୍ଦ୍ରରେଖା ସୁନ୍ଦରୀ ସ୍ୱନନ୍ଦା ମେନକାକ୍ଷୀ ॥
ଇନ୍ଦ୍ରାବତୀ ଶ୍ରୀକୃଷ୍ଣା ପୂର୍ଣ୍ଣାକ୍ଷୀ ଦୁଲଣାକ୍ଷୀ ।
ପଙ୍କଲରେଖ ଯେ ଫିହବେଣୀ ମହାମାକ୍ଷୀ ॥
ମହେଶ ପ୍ରିୟା ଛିନ୍ନ ଦମାକ୍ଷୀ କୋମଳାକ୍ଷୀ ।
ମାରଧାକ୍ଷୀ କମଳାକ୍ଷୀ ଦେବୀ ବନତାକ୍ଷୀ ।

ଯମାକ୍ଷୀ ଧବାକ୍ଷୀ ଧରମାକ୍ଷୀ ତ୍ରାଲମ୍ବାକ୍ଷୀ ।
ତ୍ରାଲମ୍ବୀ ପଦାକ୍ଷୀ ପଦ୍ମ ଡାକେଣୀ ଟଙ୍କାକ୍ଷୀ ॥
ହୃଷ୍ଟଶ୍ୱ ହିତଦା ଅନ୍ଧ ଦେବୀ କ୍ଷପଣାକ୍ଷୀ ।
ମୁଦ୍ରାକ୍ଷୀ ମାକ୍ଷୀ କମାକ୍ଷୀ ବନଦ୍ୱୀପଦାକ୍ଷୀ ॥
ଅନଳୀ ନଉଳୀ ପୁଣି ସୁଦନ୍ତା ଛଇକ୍ଷୀ ।
କୁଳଶୀଳଦାୟିନୀ ଯେ ସଦାକ୍ଷୀ ପାର୍ଦାକ୍ଷୀ ॥
ସୁରସଞ୍ଚାକ୍ଷୀ ମଞାକ୍ଷୀ ଗିରାକ୍ଷୀ ଧବାକ୍ଷୀ ।
କୃଷ୍ଣା ଅନ୍ନପୂର୍ଣ୍ଣା ଦେବୀ ସଙ୍କାକ୍ଷୀ ବଂଶାକ୍ଷୀ ॥
ବସୋସକ୍ଷୀ ନମାକ୍ଷୀ ଯେ ଷଠିଦଉଗ୍ରାକ୍ଷୀ ।
ଭଗଳୀ ବକଗଳୀ ଯେ ଦୁଷ୍ଟଦୁର୍ଦ୍ଦଣ୍ଡାକ୍ଷୀ ॥
ସୁହଣୀ କପଟଣୀ ଯେ ବନାଶୀ ହୋଷ୍ଠାକ୍ଷୀ ।
ବକ୍ରଟରୂପୀ ବଜ୍ରଦ ଅଗ୍ନି ସୁମନ୍ତାକ୍ଷୀ ॥
ଭାନୁମତୀ ରେବତୀ ଭାନୁଜାତ ନିଗତୀ ।
ଶଚୀ ତନୁଜ କେଶଶ୍ୱ ହିମାକ୍ଷୀ ଯଜାତି ॥
ସଦାଶିବା ଶିବଭଦ୍ରା ଦାସୀ ଦେବବତୀ ।
ଧର୍ମେଶ୍ୱରୀ ବାରଣୁଣୀ ପୁଣି ଧର୍ମବତୀ ॥
ଜମ୍ବୁବତୀ ଲକ୍ଷଣାକ୍ଷୀ ସମାକ୍ଷୀ ବଗ୍ରାକ୍ଷୀ ।
ବଗାକ୍ଷୀ କୂପାକ୍ଷୀ ମନ୍ଦୋଦରୀକ୍ଷୀ ପର୍ବତାକ୍ଷୀ ॥
ନେମାକ୍ଷୀ ନିଜଟା ଧୂର୍ଜଟାକ୍ଷୀ ଓଁକାରାକ୍ଷୀ ।
ଶ୍ରୀନେତ୍ୟଶ୍ୱରୀ ଅପବର୍ଗୀ ଶୂଳୀ ହିନେହାକ୍ଷୀ ॥
ଯୁଅନ୍ଦ ଚନ୍ଦ୍ରକାରଣୀ ଯାଗେଣୀ ମଗୁଣୀ ।
ସୁହାଗିଣୀ ଗୋମତୀ ଯେ ଦେବୀ ଗୋସ୍ୱାମଣୀ ॥
ଭୈରବୀ ଉଗ୍ରଚଣ୍ଡୀ ଯେ କ୍ଷମାକ୍ଷୀ ଅଳାକ୍ଷୀ ।
ଧାର୍ମିକାମିନୀ ଯାମୁନୀ ଶିଶ୍ୱ ଅନନ୍ଦାକ୍ଷୀ ॥
ସାଶ୍ୱ ଶୁଅ ଶଙ୍ଖିନୀ ସବାଳୀ ଉଷଉମା ।
କୃଷ୍ଣଭଦ୍ରା ଅନନ୍ତା ଯୋଧନା କ୍ଷେମା ଧର୍ମା ॥
କୁକୁଟୀ ଅବଲୋକନୀ କରୁଣୀ ତପାକ୍ଷୀ ।
ବର୍ଗୀସାକ୍ଷୀ ତାପ୍ସ ପାଶ୍ୱ ସତୀ ଦମଣାକ୍ଷୀ ॥
କାଳୀସୋଶ୍ୱ ଅନାକ୍ଷୀ ବରଙ୍ଗୀ ଭଙ୍ଗୀ ଛେଟି ।
କାଇଙ୍ଗିଣୀ କଳହକାରଣୀ କୁଅପେଟି ॥
ଗିରଅ କୁକୁଅ କଇଲାସୀ କାମଚଣ୍ଡୀ ।
ଇତ୍ୟାଦି ସେ ଗିରବରେ ହୋଇଲେକ ମଣ୍ଡି ॥
ହେ ଦକ୍ଷ ଯେତେ ଜାତହେଲେ ମହାଦେବୀ ।
ଜଣେ ଜଣେ କରି ନାମ କେତେ ମୁଁ କହିବି ॥
ଅକଳନ ଚରିତ ଏ ତିଶ୍ୱ ଭଗବତୀ ।
ପୃଥ୍ୱୀରେ ଯେତେକ ନାମ ଅଛଇ ଯୁବତୀ ॥

ଅସଂଖ୍ୟ ଅଟଇ ଜାଣ ଦେବୀଙ୍କର ନାମ ।
ଏହା କି ସଂକ୍ଷେପେ କହିବାକୁ ମୁହିଁ କ୍ଷମ ॥
ପୃଥ୍ୱୀମଧ୍ୟରେ ଅଛନ୍ତି ଯେତେକ ମୂରତି ।
ଦେବୀମାନଙ୍କର ନାମ ସେ ବହି ଅଛନ୍ତି ॥
ଠିକ ଠିକ କରି ମୁହିଁ ଥୋକାଏ କହିଲି ।
ଭଜି ଭଜି କରି ନାମମାତ୍ର ଯେ ଧରିଲି ।
ଶୁଣ ହୋ ପରୀକ୍ଷ ରାଜା ବର୍ଣ୍ଣ ରୂପମାନ ।
ଶ୍ୱେତ ପୀତ ପାଣ୍ଡୁର ଯେ କୃଷ୍ଣରଙ୍ଗବର୍ଣ୍ଣ ॥
ପଞ୍ଚବର୍ଣ୍ଣ ଯେଣ ଉପୁଜିଲେ ଦେବୀମନେ ।
ମହାଭୈରବୀ ଭୀମା ପ୍ରତାପୀ ସେମାନେ ॥
ଦେବୀଙ୍କର ନାମ ଜପ ପାଇବ ହେ ମୋକ୍ଷ ।
ସକଳଗୁଣେ ଦେବୀ କାର୍ଯ୍ୟ କରନ୍ତି ପ୍ରତ୍ୟକ୍ଷ ॥
ଏମନେ ମୋହ ଅଣିଲେ ଅସୁର ସମସ୍ତ ।
ନୋହିଲେ ଏତେ ଅସୁରେ ହୁଅନ୍ତେ କି ହତ ॥
ଚଉଷଠି ଯୋଗିନୀ ନବକୋଟି କାତ୍ୟାୟନୀ ।
ଅନନ୍ତ କୋଟି ଦେବୀଙ୍କି ହେଉଛି ଦଇନ ॥
ଏହାଙ୍କର ଶ୍ରୀଚରଣ ନିତ୍ୟ ହୃଦେ ଭାବ ।
ବଦନ୍ତି ଶୂଦ୍ରମୁନି ଶାରଳା ଯେ କବ ॥
ଦେବୀମାନଙ୍କର ନିତ୍ୟ ନାମ ସୁମରନ୍ତେ ।
ନାଶକର ଦେବତା ଯେ ଶଙ୍କା କରେ ଚିତ୍ତେ ॥
ଦେବୀମାନଙ୍କର ପାଦପଦ୍ମ ହିରେ ଯେଣ ।
ବଦନ୍ତି କବି ଶାରଳା ଦାସ ଶୂଦ୍ରମୁନି ॥
ଶୁଣ ପରୀକ୍ଷିତ ରାଜା ବୋଲେ ଶୁକବ୍ରହ୍ମା ।
ନାନା ଅପଦ ଦଣ୍ଡଲେ କରନ୍ତି ସେ କ୍ଷମା ॥
ଏଙ୍କୁ ଅନେକ ପୁଣି ରୂପେ ଜଗକ୍ଷିଣୀ ।
ତ୍ରୈଲୋକ୍ୟ ମୋହିନୀ ଅଟନ୍ତି ଯେ କାମସେଣୀ ॥
ହେ ପରୀକ୍ଷ ଜାତ ମଧ୍ୟ ଅବସାନ ଏହି ।
କରନ୍ତି ଗୃହବାସ ଏ ମନୁଷ୍ୟଙ୍କୁ ମୋହି ॥
ମହାଋଷି ବଡ଼ ତପୋଧନ ତପ ଭଜି ।
ମହତ୍ତ୍ୱ ପୁରୁଷଙ୍କ ଦର୍ପ ଦ୍ୟନ୍ତି ଭଞ୍ଜି ॥
ହରନ୍ତି ଦୁର୍ଗତି ଏଥି ହୋଇ ଶାନ୍ତମୂର୍ତ୍ତି ।
ନ ଜାରଙ୍ଗ କଉତୁକ କରୁଣ ଥାଆନ୍ତି ॥
ଜାତକାଳ କାଳେ ମାତା ରୂପ ସେ ହୁଅନ୍ତି ।
ଯୌବନରେ ପତ୍ନୀରୂପେ ମୋହିତ କରନ୍ତି ॥
ଅନ୍ତକାଳେ ସେମାନେ ଯେ ହୁଅନ୍ତି କାଳିକା ।
ଶେଷକାଳେ ହୁଅନ୍ତି ସେ ହୁଙ୍ଗୁଳାଇ ପିଶା ॥

ଏତେ ରୂପେ ଧରିଣ ସେ ମୋହନ୍ତି ସଂସାର ।
ଏହିମାନେ ନାଶ କରିଦ୍ୟନ୍ତି ମହୀଭାର ॥
ଏମାନଙ୍କ ଜାତକରି ସେହି ଅବିନାଶୀ ।
ଦୁର୍ଗାଦେବୀ ଅଜ୍ଞାଦେଲେ ପାଶକୁ ହକାରି ॥
ଅସୁରଙ୍କର ଭାରକୁ ମହୀ ନ ସହଇ ।
ତୁମ୍ଭେ ଯାଇଣ ସେ ଅସୁରଙ୍କୁ ଶୀଘ୍ର ମୋହ ॥
ଅଜସହିରେ ଖାଅ ଲୋ ସବୁ ବୁକୁ କାଢ଼ି ।
ଏକମାତ୍ରକ ମହିଷାଅସୁରକୁ ଛାଡ଼ ॥
ଦୁର୍ଗା ଦେବୀଙ୍କର ଅଜ୍ଞା ପାଇ ସର୍ବ ଦେବୀ ।
ମହାମୋହିନୀ ରୂପକୁ ଧରିଲେ ସେ ଭାବି ॥
ଏଙ୍କୁ ଅନେକ ଦଶନ୍ତି ଦେବୀମାନେ ଯୁବା ।
ଦାନବଙ୍କ ଅଗ୍ରେ ସେ ହେଲେ ଯାଇଁ ଉଭା ॥
କୋଟିରମ୍ଭା ଯାହାଙ୍କର ପାଦେ ନୋହେ ସରି ।
ତାହାଙ୍କ ମୁହିଁ କେ ମୋହ ନୋହେ ଦେହଧରି ॥
ଏଙ୍କୁ ଏକ ଦାନବ ଯେ ମହା ମହାବଳୀ ।
ସୁଲକ୍ଷଣ ହେଲେ ଯେଣୁ ଅଛି ମହୀଅଳି ॥
ଗିରିବର ସମାନରେ ଦିଶନ୍ତି କୌଣପେ ।
ଅକାଶ ମଣ୍ଡ କମ୍ପୁଛି ଦାନବଙ୍କ କୋପେ ॥
ଅକାଶରୁ ଦେବୀମାନେ ତଳକୁ ଖସିଲେ ।
ଯେସନେକେ ଖଗବର ପକ୍ଷୀ ଶୂନ୍ୟେ ଚଳେ ॥
ମହାମୋହିନୀ ଅଟନ୍ତି ସେହି ଚନ୍ଦ୍ରମୁଖୀ ।
ଅସୁରେ ମୋହ ହୋଇଲେ ସେମାନଙ୍କୁ ଦେଖି ॥
ଶସ୍ତ୍ରମାନ ପକାଇଣ ଛାଡ଼ି ରଥମାନ ।
ଅଯାତ୍ମ ହୋଇଲେ ସେ ବନ୍ଧିଲ ମଦନ ॥
କେମୋହେ ଢଳଇ କେହୁ ମଦନରେ ବାଇ ।
କେବୋଲଇ ବାନ୍ଧବ ଗୋ କର ମୋତେ ଥାଇ ॥
କେ ଯାଇ ଚରଣଧରି କହନ୍ତି ଭଜୋଇ ।
ବୁଡ଼ିଲି ମଦନଜଳେ ରଖ ବାରେ ସହି ॥
କେ କାହାକୁ କହେ ସଖୀରେ ଧର ହାତ ।
ମୋତେ ରକ୍ଷା ସଖି ଅଗୋ ହେଉଛି ଅନାଥ ॥
ଏମନ୍ତେ ସେ ଅସୁରଙ୍କୁ ଲାଗିଲାକ ମୋହ ।
ଯେ ଯାହା ଇଚ୍ଛାରେ କରନ୍ତି ସେ ପ୍ରୀତିସ୍ନେହ ॥
ପ୍ରତିଜ୍ଞା କରନ୍ତି କେହୁ ଜଣେ ହାତ ଧରି ।
ବକ୍ଷସ୍ଥଳେ ହସ୍ତଦେଇ ବାହାସ୍ଫୋଟ ମାରି ॥
ବୋଲଇ ରେ ବାନ୍ଧବ ମୁଁ ମହାବଳବନ୍ତ ।
ମୋତେ ତୁ ଭଜ ବସ୍ତୁଛ ଧର ତୋର ହାତ ॥

କୋଳାହଳ ଶୁଣିବେ ଯେ ଆପଣଙ୍କ ସର୍ବେ ।
ଏ ସର୍ବ୍ବଯୁବତୀ ସଙ୍ଗ କରିବ ସେ ଏବେ ॥
ଏବା କାଳିରେ ଯେବଣ ଜନେ ଥିବେ ଆସି ।
ସେହି ସେ ଏ ରମଣୀଙ୍କି ପାଇବେ ଉଲସି ॥
ଛାଡ଼ି ନିଜ ଗୃହବାସ ଅସନ ଭୋଜନ ।
ଚାହିଁଥିବ ଏ ସୁନ୍ଦରୀମାନଙ୍କ ବଦନ ॥
ବେଣୀ ବସନ ସ୍ତପନପର ପରଚ୍ୟାତି ।
ପ୍ରାଣହିଁ ପଡ଼ନ୍ତେ ଯାଉ ଏହାଙ୍କର ଲାଗି ॥
ସ୍ତ୍ରୀସ ବୃନ୍ଦ ଦେଖି ମୈଷାସୁର ଯେ ବୋଇଲା ।
ଏହାଙ୍କରେ ମୋର ସୈନ୍ୟ ବଳ ନାଶଗଲା ॥
ଏହାଙ୍କ ରୂପ ଦେଖି ନ ପାରନ୍ତି ଜରୁର ।
ଅନ୍ୟୋଽନ୍ୟରେ ସମସ୍ତେ ଯେ ହ୍ରନ୍ତି ମସମର ॥
ଏହାଙ୍କରେ ନାଶଗଲେ ସକଳ ଦନୁଜ ।
ମୁଁ ବୋଲଇ ସ୍ତ୍ରୀଙ୍କର କିସ ବଳବୀର୍ଯ୍ୟ ॥
ଅବଳା ବୋଲି ଏହାଙ୍କୁ ବୋଲଇ ନ ଜାଣି ।
ଏଲୁ ଏ ପ୍ରଧାନ ସବଳର ବୋଲି ଭଣି ॥
ସରଗେ ଚାହିଁଲେ ଏ ଯେ ପାଷାଣ ଫୁଟଇ ।
ବଣେନେ ଚାହିଁଲେତ ଗିରି ଜଳିଯାଇ ॥
ଅପଣେ ଅସୁରେଶ୍ୱର ଦେଲ ଘୋର ଡାକ ।
ଏ ସ୍ତ୍ରୀବୃନ୍ଦଙ୍କୁ ଭୋଗକର ଯେଝାସୁଖ ॥
ଶୁଣି ବଚନେ ଦାନବେ ହୋଇଲେ ହରଷତ ।
ଅନନ୍ଦେ ଧରିଲେ ଦେବୀମାନଙ୍କର ହସ୍ତ ॥
ମାନବୀ ରୂପରେ ସେ ଯେ ହୋଇଛନ୍ତି ତୂନୀ ।
ଯେ ଯାହାଇଚ୍ଛାରେ ସେହି କନ୍ୟା ଗଲେ ଘେନି ॥
ବହଇ ବସନ୍ତ ବାୟୁ ହରଷରେ ପୁଣି ।
ସେ ହବ ଉଦ୍ୟାନ ବନେ ଶୁଭିଲେ ପିକଧ୍ୱନି ॥
ଦେବୀମାନଙ୍କୁ ଘେନିଣ ସେ ଅସୁରମାନେ ।
ଗଲେ ଯେ ଯାହାରେ ପୁଣି ନିକୁଞ୍ଜ କାନନେ ॥
ଯେଝାରେ ଯାଇ ପଶିଲ ଶଯ୍ୟାକୁ ବଲ୍ଲଭ ।
ଦେବୀମାନଙ୍କୁ ଘେନି କେ ଚୁମ୍ବନ କରଇ ॥
କେ କାହାକୁ କେଳେ ଘେନି ଗୃହେ ଅରମ୍ଭିଲ ।
ଯେଣୁ ସେ କାମିନୀ ଛଦ୍ମ ମାନବୀ ଯେ ହୋଇ ॥
ନାନା କଉତୁକ କରୁଁ ରଜନୀ ହୋଇଲା ।
ଅସୁରଙ୍କ ମନ୍ଦିରେ ନରୁଥଳ କଲା ॥
ବଜାଇ କେ ବଳଘୋଷ ମୃଦଙ୍ଗ ଧୁମୁସ ।
ମନ୍ଦିରେ ନୃତ୍ୟକରେ କେବଣ ଅସୁର ॥

ଭୁଅନ୍ତେ ନ ଅସର ମିଷ୍ଟ ବାକ୍ୟ ବୋଲି ।
ଦେବୀମାନେ ତାହାଙ୍କୁ ଯେ ହେଲେ ମହାକାଳ ॥
ଅକଳନ୍ତ ସମୁଦ୍ର ଯେ ମୈଷା ସୈନ୍ୟପନ୍ତ ।
ରଥମାନେ ବୋଇତ ଯେ ନକ୍ର ଗଜପନ୍ତ ॥
ଫେନ ଯେ ପତାକା ମୀନ ଅଶ୍ୱର ସମୂହ ।
ତହିଁ ପକାଇଲେ ଦେବୀ ମାୟାଜାଲ ମୋହ ॥
ନିଠାଇ ବନ୍ଧିଲେ ସେ ଯେ କାମଶର ମୁଦ୍ରା ।
ସର୍ବ ଦାନବମାନଙ୍କୁ ଲାଗେ ମହାନିଦ୍ରା ॥
ହାସ୍ୟ କଉତୁକେ ଦେବୀ କୋଳାଗତ କରି ।
ବେନି ବେନି ଖଣ୍ଡ କରି ରୁଧିରୁ ବିଦାରି ॥
ଅସୁରେ ଅଚେତନ ଯେ ମଦ କାମକ୍ରୋଧେ ।
ଏତେ ବଳ ଥାଇ ନାଶ କ୍ଷଣକର ମଧ୍ୟେ ॥
କବେଣ ଉଚ୍ଛୁଟ କଲେ କରେ ବେନିଫାଳ ।
କେ ମୁଣ୍ଡ ମୋଡ଼ିଣ ଛିଣ୍ଡାଇଲେ ବକ୍ଷସ୍ଥଳ ॥
ହୃଦୟରେ ବସି କେହୁ ଛିଣ୍ଡାଇଲେ ବାହା ।
ପିଠିପରେ ବସି କେହୁ ବିଦାରିଲେ ହସ୍ତ ॥
କେହୁ ଯେ କାହାର ଉପାଡ଼ିଲେ ବାହାବେନି ।
କେ ଚରଣ ଉପାଡ଼େ କେ ମୋଡ଼ଇ ମୂର୍ଦ୍ଧନୀ ॥
ପଞ୍ଜର ବିଦାରଇ କେ ନଖାଘାତ ଘେନି ।
କେ କାହାର ଅନ୍ତ୍ରପିତ୍ତ କରେ ଉନ୍ମାଇନ୍ଦି ॥
ମୁଣ୍ଡ କେ ଚୋବାଇଣ କେ କଳେବର ଭକ୍ଷି ।
କେ ଅସ୍ଥି ଚର୍ମ ଖାଅନ୍ତି ନ ଥୁଅନ୍ତି କିଛି ॥
ଅକଳନ୍ତ ବଳ ପଡ଼ିଗଲେ କ୍ଷଣ ମଧ୍ୟେ ।
ବିକଟାଳ ରୂପେ ନୃତ୍ୟ କରନ୍ତି କବନ୍ଧେ ॥
ପହରକେ ଦୈତ୍ୟବଳ ପକାଇଲେ ମାରି ।
ମେଦିନୀ ଅନନ୍ଦ ହେଲା ଏହା ଗୁହିଁକରି ॥
ସମସ୍ତ ଦେବୀଏ କରପଦ୍ମ ଶିରେ ଦେଇ ।
ଦୁର୍ଗା ଦେବୀଙ୍କ ଅଗରେ ଉଭା ହେଲେ ଯାଇଁ ॥
ଧରଣୀ କହିଲେ ଦୁର୍ଗା ଅବେ ଶୁଣ କଥା ।
ଅଜୁଁ ଜଗତ ମାତା ଗୋ ଛୁଟିଗଲା ବ୍ୟଥା ॥
ଅସୁର ସଇନ୍ୟ ଅଜ ସବୁ ନାଶଗଲା ।
ସେନାମାନଙ୍କୁ ଘେନି ଗୋ ମହିଷା ରହିଲା ॥
ମାଗୋ ଶୂନ୍ୟ ଉପଶୂନ୍ୟ କାଳକମୋଚନ ।
ବେନି ଦୂତପତି କାଳ ବିକାଳ ଏମାନ ॥
ଧୂମ୍ରଲୋଚନ ସାରଥି ଦେବେନବଦନ ।
ଅବରହିଁ ରହିଲେ ଗୋ ବାଦ୍ୟକାରମାନ ॥

ଏତେ ମାତ୍ର ଅଛନ୍ତି ଗୋ ମୈଷା ସନ୍ନିଧାନ ।
ଏ ବାହାରେ ନାହାନ୍ତି ଯୋଦ୍ଧା ଏକଜନ ॥

—•॥୦॥•—

### କାଳବମୋଚନର ଯୁଦ୍ଧେ ଗମନ ଓ ପରାଜୟ ।

ଏଥୁ ଅନନ୍ତରେ ତହିଁ ପାଚିଲେକ ସର୍ବେ ।
ମହିଷା କଟକ ଗଲେ ସର୍ବ ସେନାପତି ॥
ବୋଇଲେ ଦେଖିବା ରଣରଙ୍ଗ କୁତୂହଳ ।
କେମନ୍ତ ହୋଇଛି କାଲି ସଂଗ୍ରାମ ମଣ୍ଡଳ ॥
ସେନାଙ୍କ ମୁଖରୁ ଶୁଣି ଏସନେକ ବୋଲ ।
ମହିଷାସୁର ନୃପତି ବୋଇଲା ହେ ଶୃଳ ॥
ଶାର୍ଦ୍ଦୂଳେକ ଚଢ଼ି କରେ ଘେନ ବଜ୍ର ଯାଠି ।
ବଳେ ସଙ୍ଗେ ଚଳେ ଘେନ ସେନା ନବକୋଟି ॥
ଲକ୍ଷ୍ମୀଭଦ୍ରା ନଗର ଯେ ଦକ୍ଷିଣ ତଟରେ ।
ସକଳ ଦେଖନ୍ତି ଯାଇଁ ହର ଉଦ୍ୟାନରେ ॥
ରକତ ମାଂସ ନଦୀ ଯେ ପ୍ରବଳ ହୋଇଛି ।
ଦେଖିଣ ଅସୁରଙ୍କର ନ ସ୍ଫୁରଇ କଛି ॥
ଏକକୁ ଅନେକ ତହିଁ ବିକଟାଳ ମୂର୍ତ୍ତି ।
ଏସନ ଛନ୍ଦ ନୁହଇ କାହାରହିଁ ଶକ୍ତି ॥
ଯେସନେକ ମୀନମାନ ମାରଇ ଧୀବର ।
ସେହିମତ ହୋଇ ପଡ଼ିଅଛନ୍ତି ଅସୁର ॥
ସକଳ ହତ ଦେଖିଣ ମୈଷାସୁର ସ୍ୱୟେ ।
ଢଳିଲା ପିଠିରୁ ପଡ଼ି ମୂର୍ଚ୍ଛାଗତ ହୁଏ ॥
ସେନମାନେ ସିଞ୍ଚି ତାର ମୁଖେ ଶୀତଜଳ ।
ଚେତନା ବସନ୍ତେ ରଜା ହୁଅଇ ବିକଳ ॥
ଅସୁର ବୀରମାନଙ୍କୁ କୋଳେ ଟେକି ଧରଇ ।
କାହାକୁ ସେ ବକ୍ଷସ୍ଥଳେ ପକାଇ ରଡ଼ଇ ॥
କୋଳେ ନର୍ତ୍ତକ ଅଶ୍ୱ ମୋ ଅଛି କାହିଁପାଇଁ ।
ଏହା ଦେଖୁଅଛି ହୃଦ ଫାଟିତ ନ ଯାଇ ॥
ଭୂମିରେ ଶିର ତାଡ଼ ସେ ବିଦାରଇ ବୁକ ।
ଅତି ଅକୁଳେ କହଇ ସେ ସେନାମାନଙ୍କୁ ॥
ଏମନ୍ତ ହୋଇ ପ୍ରାଣୀଙ୍କି ପଡ଼ଇ ପ୍ରମାଦ ।
ନାହିଁ ଦେଖିଲି କେବେ ମୋ ଏସନେକ ଛନ୍ଦ ॥
ଧିକ ଧିକ ହେଉ ମୋର ଏତେ ବାହାବଳ ।
ଛାଡ଼ିବ ଜୀବନ ଜାଇ ପଶିବ ଅନଳ ॥

ଅହୋ ପଣ୍ଡିତ ଶୁଣ କରି ଏକମନ ।
ମହିଷା ବିକଳ ଦେଖି କାଳବମୋଚନ ॥
ବାହାସ୍ଫୋଟ ମାରି ରଜା ଆଗରେ ବୋଲଇ ।
ମୋହ ଥାଉଁ ଥାଉଁ ଚିନ୍ତା କରୁ କାହିଁପାଇଁ ॥
ମେରୁ ଉପାଡ଼ ପାରଇ ମୁହିଁ ଭୁଜବଳେ ।
ତିନ ଭୁବନକୁ ଟେକିପାରେ ଏକାବେଳେ ॥
ସାତସିନ୍ଧୁ ଏକା ଚଢ଼ି କରି କି ପିଇବି ।
ଚତୁର୍ଦ୍ଦଶପୁର ବିଣ୍ଡା ମାରି କି ଚୂରିବି ॥
ଏହୁ ଦେବୀମାନେ ମୋତେ କେତେକମାତର ।
ଏକ୍ଷଣି ସଭିଙ୍କୁ କରିଦେବି ନାରଖାର ॥
ଏତେ ବୋଲି ଧାଏଁ ଦେବୀଙ୍କର ସନ୍ନିଧାନ ।
କାୟ ବଢ଼ାଇଲା ସେ ଯେ ପଞ୍ଚାଶ ଯୋଜନ ॥
କାଳବମୋଚନର ଏ ବିଶ୍ୱରୂପ ଦେଖି ।
ଦେବୀମାନେ ଦୃଷ୍ଟି ଦେଲେ ସମର ଉପେକ୍ଷି ॥
ଯେଉଁ ଦେବୀମାନେ ତିନ ଜଗତମୋହିନୀ ।
କାଳବମୋଚନ ମୁଖେ ପଡ଼ଲେ ସେ ପୁଣି ॥
ତାଙ୍କୁ ଦେଖି ବିସ୍ମରଇ କାଳବମୋଚନ ।
ଏମାନେ କୂଟେ ମାରିଲେ ଦୈତ୍ୟ ବୀରମାନ ॥
ଏହାଙ୍କୁ ଦେଖିଣ ବୀରେ ମୂର୍ଚ୍ଛି ନ ପାରିଲେ ।
ତେଣୁ ତେଣୁ ଅସୁରେ ଯେ ଅଙ୍ଗଭଙ୍ଗେ ମଲେ ॥
ଏମନ୍ତ ବିଚାରି ସେ ଯେ ରଥ କଲା ତେଜ୍ୟା ।
ବିବସ୍ତ୍ର ହୋଇ କରଣ ଧାଇଁଲା ଦନୁଜା ॥
ରଣେ ଅନର୍ଗଳ ସେହୁ ବିକଟାର ନାଦ ।
ଦେବୀମାନଙ୍କୁ ଦେଖିଣ ଧାଇଁଲାକ ଯାତ ॥
ଯେସନେ ଶବକୁ ଦେଖି ଶିବା ଦଉଡ଼ନ୍ତି ।
ତେସନେ ଧାଇଁଲା ସେହୁ ହୋଇ କୋପମୂର୍ତ୍ତି ॥
ମହାକୋପେ ଦେବୀଙ୍କି ନଖ ଦନ୍ତେ ଧରଇ ।
ମହା ବଳୀ ଦାନବ ତାର ଭୟ ନାହିଁ ॥
ଘୋର ରଡ଼ ଦେଇ ସେ ଦକ୍ଷିଣ ମୂର୍ତ୍ତି କରି ।
ଫିଙ୍ଗିଦେଲା ଦେବୀମାନଙ୍କର ପାଦ ଧରି ॥
ଆକାଶ କମ୍ପିଲା ଅସୁରର ପରତାପେ ।
ଦେବୀମାନେ ପଡ଼ିଲେକ ଯାଇ ଚନ୍ଦ୍ରଦ୍ୱୀପେ ॥
ହେ ପଣ୍ଡିତ ଅନନ୍ତା ବିଜୟା ଯେ କାମାକ୍ଷୀ ।
ତାରେଣୀ ବାଗ ବାସଳ ଭଟ୍ଟେଶ୍ୱରୀ ତାରକ୍ଷୀ ॥
ଭଇରବ ଶ୍ୟାମା ସୁନାମା ମାଳତୀ ସୁଦନ୍ତୀ ।
ସୁକେଶୀ ସୁଲକ୍ଷଣୀ ଯେ ମାତଙ୍ଗୀ ମାରୁଣୀ ॥

କପାଳୀ ବାସେଳୀ ତମ୍ରାର୍କ୍ଷୀ ହରଣାକ୍ଷୀ ।
ନନ୍ଦାକ୍ଷୀ ନନ୍ଦବ୍ରତାକ୍ଷୀ ବଳାକ୍ଷୀ କ୍ଷମାକ୍ଷୀ ॥
ମାତଙ୍ଗୀ ଶରଧା ବିମଳାକ୍ଷୀ ବିଷଳାକ୍ଷୀ ।
ତନ୍ନ ଛନ୍ନ ମେଧା ସ୍ୱାହା ପାବର ତପସ୍ୱୀ ॥
ଲଳିତା ନୀଳାମ୍ବରୀ ନୀଟକନ୍ଧୀ ସୂର୍ଯ୍ୟରେଖା ।
ସୁରଧାକ୍ଷୀ ଶଶିମୁଖୀ ସୁକର୍ଣ୍ଣୀ ସୁରେଖା ॥
ଇନ୍ଦ୍ରାକ୍ଷୀ ଚନ୍ଦ୍ରାକ୍ଷୀ ମାରକମାକ୍ଷୀ ଭଣଇ ।
ସାରଥ ସାରେଙ୍ଗୀ ସାରସ୍ମୁଖୀ ଅରୁଷ୍ଟାକ୍ଷୀ ॥
ମନ୍ତୁ ଲକ୍ଷ୍ମଲକ୍ଷଣୀ ଯେ କଳଙ୍କା ମିସଳା ।
ଭଟ୍ଟାଇ ଷଣ୍ଢାକ୍ଷୀ ପଦ୍ମାକ୍ଷୀ କାଳୀ କବଳୀ ॥
କାଳକମୋଚନର ଯେ ପ୍ରଥମ ଯୁଦ୍ଧର ।
ଏତେ ଦେବୀ ପଡ଼ିଲେକ ସେ ଚନ୍ଦ୍ରଦ୍ୱୀପରେ ॥
ପୁଣ ଦେବୀମାନଙ୍କୁ ଯେ ଧରି ଅତି ବେଗେ ।
ଦକ୍ଷିଣଦେଶଙ୍କୁ ବୁଲାଇଣ ବେଗେ ଫିଙ୍ଗେ ॥
ଶୂନ୍ୟେ ସେ ଉଡ଼ିଲେ କାଳକମୋଚନ କୋପେ ।
ମେ ମୋହନୀ ଦେବୀ ପଡ଼ିଲେକ କୁଶଦ୍ୱୀପେ ॥
ଶଙ୍କା ନିଃଶଙ୍କା ସ୍ୱଧାକ୍ଷୀ ନୀଳାନ୍ତୀ ତଳାନ୍ତ ।
ଚନ୍ନମୁଖୀ ଅରୁଷ୍ଟାକ୍ଷୀ ଷଡ୍କ୍ଷୀ ଯେ ନିପୁଣ ॥
ବିଧୁରୀ ଶୃଙ୍ଗାର ତନିଭୁବନମୋହନୀ ।
ସୀତା ସୁତାକ୍ଷୀ ଶୁମ୍ଭାକ୍ଷୀ ଅର୍ଦ୍ରାବଳୀ ମାଳୀ ॥
କାମଚଣ୍ଡୀ ଚାମୁଣ୍ଡା ଯେ ତାରା ଉଗ୍ରତାରା ।
ଦେଖା ରେଖା ବଦ୍ରିକା ଯେ ନାସ୍ତିଧର୍ମୀଧସ ॥
ସୁଲ୍ୟାସତ୍ୟା ଗଗନା ଯେ ପବନା ମାର୍କଣ୍ଡା ।
ହୁଷ୍ଟାକ୍ଷୀ ବହୁବଧାକୀ ଚଣ୍ଡା ଯେ ପ୍ରଚଣ୍ଡା ॥
ତାଳୁକୀ ଜାନୁକୀ ଶବ ନନ୍ଦୀ ନବମାକ୍ଷୀ ।
ସିଦ୍ଧା ଦ୍ୱାରଶୁଣି କୁନ୍ଦୀ ଲୁମାସ ଭଣ୍ଡାକ୍ଷୀ ॥
ଭେଟୀ ଭଙ୍ଗାକ୍ଷୀ ଜଙ୍ଗାକ୍ଷୀ ଜଟୀ ଯେ ଉତ୍କଣ୍ଠୀ ।
ଛଲୁକୀ ଯେ ନକ୍ଷତ୍ରାକ୍ଷୀ ପ୍ରତାଙ୍ଗୀ ପାଉଣ୍ଡି ॥
ମାଳତୀ କାମାକ୍ଷୀ ସବୁଦ୍ରାକ୍ଷୀ ଶାନ୍ତ କାନ୍ତ ।
ଚର୍ଚ୍ଚାକ୍ଷୀ ସେ ପୁତ୍ତଳାଇ ଜ୍ଞାନାକ୍ଷୀ ସୁକାନ୍ତ ॥
ମେନକାକ୍ଷୀ ସୁଗମାକ୍ଷୀ ଯମାକ୍ଷୀ ସୁନୀତ ।
ଭଦ୍ରାକ୍ଷଣୀ ଅନନ୍ଦା ଯେ ସାନନ୍ଦା ସର୍ବ୍ବତୀ ॥
ଛଦାକ୍ଷିନୀ ଚନ୍ଦା ଅଜ ପ୍ରଚଣ୍ଡାର୍ଦ୍ଧଚନ୍ଦ୍ରା ।
କୋଟଳା ଷଉସ ଛତାଭଗ୍ନୀ ଅଗ୍ନି ନିଦ୍ରା ॥
ଶୁଣ ପରୀକ୍ଷିତ ଅଦେ ବୋଲେ ଶୁକମୁନ ।
ଏମନ୍ତେ କୋଟିଏ କୋଟି ସେହୁ କାତ୍ୟାୟନୀ ॥

କ୍ରୌଶ ଦ୍ୱୀପରେ ପଡ଼ିଲେ ଯନ୍ତଂ ଦେବୀମାନେ ।
ପୁଣ ସେ ଅସୁର ଧାଇଁ ଅତି କୋପମନେ ॥
ଦଶଶ୍ରି ଧରିଲା ଅଣ୍ଡକର ଦେବୀଗଣ ।
ଅନ୍ତରୀକ୍ଷେ ବୁଲାଇଲା ଧରିଣ ଚରଣ ॥
ଅତି ବେଗେ ଫିଙ୍ଗିଦେଲା କରି ଅନ୍ତରୀକ୍ଷ ।
ଫିହଳ ଦ୍ୱୀପେ ପଡ଼ିଲେ ଦେବୀ ଅଶୀଲକ୍ଷ ॥
ସଜ୍ଜାକ୍ଷୀ ଝଂଝାକ୍ଷୀ କେକନ୍ଦୀ କଣ୍ଠାକ୍ଷୀ ଚମାକ୍ଷୀ ।
ମରକ୍ଷାକ୍ଷୀ ଗାଙ୍ଗୀ ଗଙ୍ଗା ବାଜୀ ଯେ ବଜାକ୍ଷୀ ॥
ସିଙ୍ଘିଣୀ ଶ୍ରୀପ୍ସା ଯେ ରେହା ସୁରେହା ଅସସ୍ଥ ।
ଦୁଅସକ୍ଷୀ ଗତ ମୁକ୍ତ ସ୍ୱସ ପୋଏଲାକ୍ଷୀ ॥
ସୁଧା ସୁମେଧା ସ୍ୱାହାଣୀ ଗହମୀ ଗମାକ୍ଷୀ ।
ରହଣୀ ଦଇବୀପାଳୀ ଗୌତମୀ ଗୋଧାକ୍ଷୀ ॥
ସୀମନ୍ତନୀ ମାନିନୀ ଯେ ଜାଗୀ ଜମ୍ବୁବତୀ ।
ଗନ୍ଧ ସୁଗନ୍ଧିନୀ ପ୍ରଭଞ୍ଜନୀ ବଜଲାନ୍ତ ॥
ଦୋହଣୀ ମନ୍ଦୋଦରୀ ଯେ ମନ୍ଦାଗ୍ନି ନର୍ମ୍ମଦା ।
ଯୁକ୍ଷୀ ପୋଷ୍ଟୀ ବହରଣୀ ଗୈଳୀ ପରମଦା ॥
ବାଇଦେକ୍ଷୀ ବରହାକ୍ଷୀ ନେପାଳୀ କପାଳୀ ।
ଅମ୍ବୀ ଯମୁନା ମିରଗୀ ବାସନ୍ତୀ ପାଟେଳୀ ॥
ଚନାମାଳୀ କଣ୍ଠାକ୍ଷୀ ଯେ କେଶରୀ ବାହନୀ ।
ଫିହନୀ ହରଣୀ ମୃଗୀ ସମ୍ମେଶ୍ୱରୀମାଳୀ ॥
ଫିହଳ ଦ୍ୱୀପେ ପଡ଼ିଲେ ଏତେ ଦେବୀଯାଇଁ ।
ମହାବଳୀ ଦାନବକୁ କେହି ସମ ନୋହି ॥
ପୁଣି ଧାଇଁ ଦେବୀଗଣ ଧରି ଅନ୍ତରୀକ୍ଷେ ।
ଚକ୍ରଆକାର କରି ସେ ବୁଲାଇ ପ୍ରତ୍ୟକ୍ଷେ ॥
ବୁଲାଇ ବୁଲାଇ ଫିଙ୍ଗିଦେଲା ନିଜଧାପେ ।
ନବଲକ୍ଷ ଦେବୀ ପଡ଼ିଗଲେ କ୍ରୌଞ୍ଚଦ୍ୱୀପେ ॥
ରଙ୍ଗି ଭଙ୍ଗି ଶ୍ଳେଷ୍ଟ ରୋଧା ଅମ୍ବିକା ଚମ୍ପାଳୀ ।
ପୂତନ ବକ୍ଷିଭ କେନ୍ଦୁ ଅକ୍ରୁରୁ ପାଟ୍ଠୋଳ ॥
ସୁନେହା ଉମା ଯାମାକ୍ଷୀ ସୁନେତ୍ରୀ ଉମାକ୍ଷୀ ।
କୋଇଲ ଲହଲା ମାହେଶ୍ୱରୀ ହଂସମାକ୍ଷୀ ॥
କୋପତାକ୍ଷୀ ପଳାଶୀ ଯେ ମନ୍ମଥ ସାରଥି ।
ଲେଷ୍ଟାକ୍ଷୀ ପଦ୍ମାକ୍ଷୀ ମରଦାଙ୍ଗୀ କେତକଅ ॥
କେତକୀ ରତି ବେତାଳୀ କଣ୍ଠାଇ ଉଣ୍ଡୁଣୀ ।
ପେଞ୍ଜରଣୀ ସାଙ୍ଗୀମେଷୀ କୁମୁଟୀ କଲାଣୀ ॥
ଦଳଣୀ ଦାଳଣୀ ସ୍ୱଣୀ କାମୀ ବାଡେଶ୍ୱରୀ ।
ପାଣିଖାରମୁଖୀ ବିମୁଖାଇ ଘଣ୍ଟବସ୍ତ ॥

ଏ ଦେବୀମାନେ ପଡ଼ିଲେ କ୍ରୌଞ୍ଚଦ୍ୱୀପେ ଯାଇଁ ।
କୋଟିସଙ୍ଖେ ଦଇତ ଧରି ପୁଣିହିଁ ଫିଙ୍ଗଇ ॥
ଦେବୀମାନଙ୍କୁ ବୁଲାଇ ଫିଙ୍ଗିଲା ସକ୍ଷସ ।
ନବଅଯୁତ ପଡ଼ିଲେ ବଲଙ୍କ ଯେ ଦେଶ ॥
କମାକ୍ଷଣୀ କାମାଖୁଣୀ ପଶ୍ଚିମା ବାସବୀ ।
ଅନନ୍ତାକ୍ଷୀ ଅନାଳୀ ଯେ ମାଳା ଊଷଧାକ୍ଷୀ ॥
ବରୁଧାକ୍ଷୀ ଖଗବସ୍ତି ଗେଲବାକ୍ଷୀ ରତ ।
ବେନ୍ତ୍ରା ନିଜାନ୍ତ୍ରୀ ଝଁରଜା ଛନ୍ଦନୀ ଯୁବତୀ ॥
ଚଁବୋସି ବ୍ରଣସି ଭସାରୁଣୀ ତାକେଶ୍ୱରୀ ।
ତ୍ରମ୍ଭାଇ ମାନନୀ ଅର ସ୍ମୃଣୀ ସୁଧାସ୍ୱୀ ॥
କାଳୀ କୁବେଲୀ ବେଲାହଳୀ ନାଗେଶ୍ୱରୀ ।
ଘାନରତା ଶୂନ୍ୟବାସୀ ରଙ୍ଗିଣୀ ଚଣ୍ଡିସ୍ୱ ॥
ଘୋକା ଶାନ୍ତ କାଳିକା ଯେ କାଳସନ୍ଧି ଦେବୀ ।
ରେବତୀ ଧବଳାକ୍ଷୀ ଯେ ସୁପାହି ଭୈରବୀ ॥
ଶୁଣ ହେ ପକ୍ଷିଷବଜା ବୋଲେ ଶୁକମୁନି ।
ବଲଙ୍କଦେଶେ ପଡ଼ିଲେ ଏତେକ ଯୋଗିନୀ ॥
ପୁଣିହି ଦେବୀଙ୍କି ସେହୁ ଧରିଲା ଦଇନ୍ତ୍ରେ ।
ଉତ୍ତରଦେଶ ଫିଙ୍ଗିଲା ନବକୋଟି ଚଣ୍ଡୀ ॥
ଲେଖା ଅମ୍ବିକା ଯେ ଗୋଳକମା ପୋଳକମା ।
ହାତଅବାହନୀ ନୀଳାବତୀ ନିତ୍ୟା ନିମା ॥
ନିମିକାକ୍ଷୀ ସ୍ୱରୂପା ବାସବୀ କାମରୂପୀ ।
ଲୁଲାଇ ମେଖଳୀ ମହାଖଳୀ ଦିବ୍ୟରୂପୀ ॥
ପଲାଶୀ କୁତୂହଳୀ ଯେ ଷଠି ନଉଛାକ୍ଷୀ ।
ଲେଉଟାକ୍ଷୀ କମାକ୍ଷୀ ଅମ୍ଭାସୀ ମୁକୁଳାକ୍ଷୀ ॥
ତପବତୀ ରଙ୍କାସ୍ୟ ଯେ ନଯୋଗେ ଯୋଗେଶ୍ୱରୀ ।
ରୂପାକ୍ଷୀ ଅନନ୍ତାକ୍ଷୀ ଯେ ଜୟା ବାଘାମ୍ବରୀ ॥
ଛେତନଶୁଣୀ କଙ୍କାଳୀ ସେତାଞ୍ଚୁଣୀ ବାଳୀ ।
ବେତାଳୀ ହିଙ୍ଗୁଳା ଧବଳାଙ୍ଗୀ ଯେ ଧବଳୀ ॥
ମାରୁଗୁ ପିଙ୍ଗଳା ଜନ୍ନୁ ସାରଙ୍ଗୀ ଯୁବାନ୍ତା ।
ହକାଳୀ ଶଉଗୁ ଅରୁଣାକ୍ଷୀ ବଳାଶୁଣୀ ॥
କଷାକଣ୍ଠା ହାକେଶ୍ୱରୀ ତ୍ରାକେଶ୍ୱରୀ ଦେବୀ ।
ଶୀଯୁ ନର୍ମଦା ତ୍ରାକେଣୀ ହାକେଶ୍ୱରୀ ସବ ॥
ମେଖଳ. ମହାଖଳା ଯେ ସମା ଭ୍ରକେଶ୍ୱରୀ ।
ଗୁଣବତୀ ଚନ୍ଦ୍ରାବତୀ ଦକ୍ଷିଣା ଉତ୍ତରୀ ॥
ମହୀ ବଇସନାଶିନୀ ପାଷାଣୀ ସାବିତ୍ରୀ ।
ରତ ଦମ୍ଭଣୀ ସିହାସ୍ୱ ଭୈରବୁପା ସତୀ ॥

ଜଗତତାରଣୀ କନକାଙ୍ଗୀ ସ୍ୱଣ୍ଣମସ୍ତା ।
ସୁରୂପା ଗୁରୁରୂପାଶୁଣୀ କମଳା ସୁଜାତା ॥
ସାନନ୍ଦା ଅନନ୍ଦା ଶ୍ୟାମା ଅମ୍ବିକା ଅମୃତା ।
ଚଣ୍ଡାକ୍ଷୀ ତୋରଣୀ ଧନୁ ଧନଶ୍ରୀ ସଙ୍ଗୀତା ॥
ସୁଭଦ୍ରୀ କରକାକ୍ଷୀ ଯେ ଭୈଷାକ୍ଷୀ ଫୁଲାଇ ।
ହଟକେଶ୍ୱରୀ ଯେ ଦ୍ୱାରଶୁଣୀ ଶରଧାକ୍ଷୀ ॥
ଶୁଣ ହେ ପକ୍ଷୀଷ ସ୍ୱଜା କାଳବମୋଚନ ।
ପୁଣିହିଁ ଦଇନ୍ତ୍ରେ ଧରି ଅନେକ ଦେବୀମାନ ॥
ଅନ୍ତରୀକ୍ଷେ ବୁଲାଇଣ ଫିଙ୍ଗିଲା ନିଠ୍ଠାଇ ।
ଜମ୍ବୁଦ୍ୱୀପ ମଧ୍ୟେ ପଡ଼ିଲେ ଦେବୀ ଯାଇ ॥
କରତାଳ କରାଳକା ମଗ୍ର କେଶଘୋଷି ।
ମହାବିକଟରୂପା ଯେ ଶିବାସୁରଲୋଷୀ ॥
ବିକଟଦଂଷ୍ଟ୍ରା କରାଳୀ ଭୟଙ୍କରମୁଖୀ ।
ଏମାନଙ୍କୁ ଫିଙ୍ଗିଦେଲା କ୍ଷଣେହେଁ ନ ରଖି ॥
ଏ ମୋହିନୀ ଦେବୀ ମୋହୁଥିଲେ ଯେ କପଟ ।
ଅସୁରବଳ ଧ୍ୱଂସନ କରୁଥିଲେ କୂଟେ ॥
ଶୂନ୍ୟରୁ ଜାତହୋଇଣ ମୋହୁଥିଲେ ପୃଥ୍ୱୀ ।
ରତିଅଙ୍ଗ ଦେଖାଇଣ ଦୈତ୍ୟଙ୍କୁ ମାରନ୍ତି ॥
ରୂପେଣ ମୋହିନୀ ଏହୁ ଏକେ ନବଯୁବା ।
ହକାର ଖାଅନ୍ତି ସେହୁ ସକଳ ଦାନବା ॥
ମହିଷାସୁରର ଆଠସରୁ କଲେ କ୍ଷୀଣ ।
ଏ ଦେବୀମାନଙ୍କକୋପେ ଦୈତ୍ୟହେଲେ ମ୍ଳାନ ॥
ଏମନ୍ତ ବୋଲିଣ ଦେବୀମାନଙ୍କୁ ଫିଙ୍ଗଇ ।
ଦେବୀମାନେ ପଳାନ୍ତି ସେ ଛନ୍ନ ଭିନ୍ନହୋଇ ॥
ସମସ୍ତ ମୋହିଲେ କାମଶେଣା ଦେବତାରେ ।
କାଳବମୋଚନଙ୍କୁ ସେ ହାରିଲେ ସମରେ ॥
ସପ୍ତଦ୍ୱୀପକୁ ତାହାଙ୍କୁ ପକାଇଲା ଫିଙ୍ଗି ।
ଅନନ୍ତକୋଟି ଦେବୀଏ ପଡ଼ିଲେକ ବେଗି ॥
ନିର୍ଘାତ ପ୍ରାୟେ ପଡ଼ିଲେ ଯାଇ ଅତିଦୂରେ ।
ଉଠି ନ ପାରି ପଡ଼ିଲେ ଯେ ଯେଉଁଠାବରେ ॥
ମୁଣ୍ଡବେଣ୍ଡ କାହାର ଯେ ଭଗ୍ନହେଲା କାୟେ ।
କାହାର ହସ୍ତ କେପାଁ ଯେ କାର ଭଗ୍ନପାୟେ ॥
କେ କଙ୍କାଳପେଟୀ ଗ୍ରୋଟା ଗୋଡ଼ ପିଠି ଭୁଜ ।
କେତେ ଅଷ୍ଟବଣ୍ଡ ହୋଇ ରହିଲେ ଅପୂଜା ॥
ଶିର ବାଙ୍କ କାହାର ଯେ ହେଲା ଚକ୍ଷୁ କାଣ ।
ଯେ ଯହିଁ ପଡ଼ିଲେ ସେହି ରହିଲେ ସେ ସ୍ଥାନ ॥

ତାହା ଅର୍ଦ୍ଧ ଅଙ୍ଗ ଖଣ୍ଡେ କେହ୍ନୁ ସହା ସୋତା ।
କାର୍ଯ୍ୟସିଦ୍ଧି କରନ୍ତି ସେ ଜଗତର ମାତା ॥
ଶୁଣ ଆହେ ପରୀକ୍ଷିତ କହେ ଶୁକବ୍ରହ୍ମ ।
କାଳକମୋଚନର ସେ ଏସନ ମହିମ ॥
କାଳ ବିକାଳ କହିଲେ ମହିଷା ଅଗେଣ ।
ତୋର ସୈନ୍ୟମଧ୍ୟେ ସାଧୁ କାଳକମୋଚନ ॥
ସୈନ୍ୟବଳ ନାହିଁ ଏକା ହୋଇଣ ସେ ଗଲା ।
ସକଳ ଦେବୀମାନଙ୍କୁ ଶୂନ୍ୟେ ଫିଙ୍ଗିଦେଲା ॥
ଶୁଣି ମହିଷାସୁର ଯେ ହରଷ ହୋଇଲା ।
ବେନି ଦୂତଙ୍କୁ ସେ ରତ୍ନେ ସ୍ନାନ କରାଇଲା ॥
ମହିଷାସୁର ହରଷ କେହ୍ନୁ କହିପାରୁ ।
ଶୁଣ ହେ ପରୀକ୍ଷିତରାଜା ମନ ଏକ କରୁ ॥
ପୁଣ ଯୋଦ୍ଧାଇ ଦେବୀଙ୍କି କାଳକମୋଚନ ।
ଦଶଣ୍ଡି ଧରିଲା ଏକ ସହସ୍ର ଦେବୀଗଣ ॥
ଆକାଶକୁ ଫିଙ୍ଗିଦେଲା ହେଲ ମହାକୋପ ।
ଗଗନରେ ପଡ଼ିଲେ କେ ହୋଇ ପରାଭବୀ ॥
ପଶ୍ଚିମ ସୌରାଷ୍ଟ୍ରେ ପଡ଼ିଗଲେ ଘୋରବନେ ।
ବନଦେବତୀ ହୋଇଲେ ସବୁ ଦେବୀମାନେ ॥
କାମାକ୍ଷୀରୂପ ଧରି ସେ ବନସ୍ତରେ ଥାନ୍ତି ।
କେହି ବା ଦେବଙ୍କ କାର୍ଯ୍ୟ ସିଦ୍ଧିକୁ କରନ୍ତି ॥
ମନ୍ଦର ମହାଗ୍ନି ଶିବା ଅସୀତା ଅମାକ୍ଷୀ ।
ମହ୍ୟଶ୍ରେଣୀ ଚନ୍ଦ୍ରାୟଣୀ ମେରୁ ସୀତାକ୍ଷୀ ॥
ବିକଟାଶ୍ରୁଣୀ ଗରୁଡ଼ା ଅବର ଅଜ୍ଜଳା ।
ତେଜସ୍ୱିନୀ ଚଳାବତୀ ରକତା ପିଙ୍ଗଳା ॥
ସୁଖିନୀ ଦୁଃଖିନୀ ସାନ୍ତ୍ୱ ବକୋଷ କୁକ୍କୁଟୀ ।
ବକ୍ଷମୁଣ୍ଡୀ ସୁନ୍ଦରୀ ଯେ ଅଜ ଲମ୍ବପେଟୀ ॥
ଇତ୍ୟାଦି ହୋଇଣ ସାତସହସ୍ର ମୂରତି ।
ଦେବୀମାନେ ହୋଇଲେକ ଯେ ବନଦେବତୀ ॥
ସେ ଦେବୀଙ୍କ ଚରଣରେ ରହୁ ମୋର ମନ ।
ଶାରଳା ଦାସ ଭଣଇ ଏହା ସତ ବନ ॥



କାଳକମୋଚନ ବଧ ।

ହେ ପରୀକ୍ଷ ନରବର ଦ୍ୱିତୀୟ ରଣରଙ୍ଗେ ।
ପ୍ରତିଜ୍ଞା କରିଲ ଯାଇ ମହିଷାସୁର ଅଗେ ॥
କାଳକମୋଚନକୁ ଯେ ମହିଷା କୋଳ କଲା ।
ଶତକୋଟି ରତନ ତା ଶିରେ ଲହୁଡ଼ିଲା ॥
ଅନେକ ବଚନ ଦେଇ କହେ ପୁରୁଷାର୍ଥ ।
ନେହରେ ସମ୍ପଦ ମୋର ହୋଇଲା ପ୍ରାପତ ॥
ପ୍ରଥମରୁ ପଠିଆଇ ଥାନ୍ତି ଯେବେ ତୋତେ ।
ଏ ସମ୍ପଦ ହରାନ୍ତି କି ମୁହିଁ ଅନମିତେ ॥
ଯେଉଁ ସ୍ତ୍ରୀ ଉତ୍ତରିର ଶିରେ ଯାଇ ବସି ।
ତାକୁ କେଉଁ ମାରିବୁ ସେ ଅଟେ ଅବଣାସୀ ॥
ଶୁଣି କାଳକମୋଚନ ବୋଲଇ ବଚନ ।
ଏହିକ୍ଷଣି ତାହାର ମୁଁ ଘେନିବି ଜୀବନ ॥
ତେତେବେଳେ ତାହାକୁ ମୁଁ ଦେଖି ନ ପାରିଲି ।
ଯେ ମୁଖେ ପଡ଼ିଲେ ତାଙ୍କୁ ଫୋପଡ଼ାଇ ଦେଲି ॥
ଏବେ ତୁମ୍ଭେ ନିଜ ନଗରକୁ ବିଜେ କର ।
ଏତେ ବୋଲି କାୟା ବଢ଼ାଇଲା ସେ ଅସୁର ॥
ବଢ଼ିଏ ଛୁଟିଲା ସେହୁ ବ୍ରହ୍ମାଣ୍ଡ କମ୍ପିଲା ।
ଶୁଣି ଦେବତାମାନଙ୍କ ସାହସ ଉଡ଼ିଲା ॥
ଶତ ଅକ୍ଷ ପଦାତି ଯେ ନାହାନ୍ତି ତା ସଙ୍ଗେ ।
ଧାଇଁଲା ଏକାକେ ଲୁହା ଲୌହଧର ବେଗେ ॥
ଉଦୟଗିରି ଶିଖରରେ ବିଜେ ଦେବୀ ଦୁର୍ଗେ ।
ନବକୋଟି କାତ୍ୟାୟନୀ ଥିଲେ ଶୂନ୍ୟମାର୍ଗେ ॥
ଜଣେହେଁ ଦେବୀ ନାହାନ୍ତି ତାହାଙ୍କର ତୁଲେ ।
କାଳକମୋଚନ ପରବେଶ ଏହି ବେଳେ ॥
ମନ୍ଦର ସମାନେ ଦେଖାଯାଏ ତାର କାୟେ ।
ଦୁର୍ଗାଙ୍କୁ ଭେଟିଲା ପୂର୍ଣ୍ଣଚନ୍ଦ୍ରେ ରାହୁ ପ୍ରାୟେ ॥
ଗଦାବର ବୁଲାଇଣ ଓଷ୍ଠେ ଦନ୍ତ ଚାପି ।
କୋପେଣ ପ୍ରତିଜ୍ଞା କରେ ସେହି କାମରୂପୀ ।
କାହିଁ ତୁ ଗୋ ଏଥକୁ ଯେ ଆଇଲୁ ଅଦ୍ଭୁତେ
ମରଣକୁ ଇଚ୍ଛା କଲୁ ତୁହି ଅନମିତେ ॥
ତିନିଭୁବନେ ମହିଷାସୁର ମହାରାଜା ।
ଅନେକ ଭୋଗ କରିବୁ ହେଲେ ତା ଭାରଯା ॥
ଏବେହେଁ ସୁନ୍ଦରି ଥିରେ କରୁ ଯେବେ ଇଚ୍ଛା
ରାଜାକୁ ସମର୍ପି ତୋର ପୂରାଇବା ବାଞ୍ଛା ॥
ଅସ ଅସ ନ ଡରିବ ମନେ କିଛି ଆନ ।
ରାଜା ରାଣୀ ହୋଇ ଭୁଞ୍ଜ ଏ ତିନି ଭୁବନ ॥
କାଳକମୋଚନର ଯେ ଏମନ୍ତ ବାକ୍ୟ ଶୁଣି ।
ହାସ୍ୟ କରି ବୋଲନ୍ତି ଦୁର୍ଗତିତାରିଣୀ ॥
ଅହୋ ତୁ ଯେ ନପତର ଅତିପ୍ରିୟ ହେଉ ।
ଜାଣିଲୁ ଯେଣୁ କଟାକ୍ଷ କଥା ମୋତେ କହୁ ॥

ଶୁଣ ମୋ କଥା ତୁ ଯେବେ ରଜାର ବିଶ୍ୱାସ ।
ମହିଷାସୁରକୁ ମୋର ପାଟେଶ୍ୱ ଦେଇଆସ ॥
ଏହା ଶୁଣି କାଳବମୋଚନ ଯେ ବୋଲଇ ।
ଦର୍ପକଥା କହୁଅଛୁ ସ୍ତ୍ରୀଲିଙ୍ଗ ହୋଇ ॥
ତିନିଭୁବନେ ମହିଷାସୁର ଅଟେ ପ୍ରଭୁ ।
ଯାହାଙ୍କ ସମରେ ସମ ନୋହେ ବିଷ୍ଣୁ ଶମ୍ଭୁ ॥
ଯାହା କୋପକୁ ଡରନ୍ତି ବ୍ରହ୍ମା ରୁଦ୍ର ହରି ।
ତୋ ତହିଁକି ଆସିବ ସେ କାହିଁ ତେଜକରି ॥
ଅଥବା ଯଦ୍ୟପି ତୁହି ନ ଫେରୁ ରେ ବାଳି ।
ଏହିକ୍ଷଣି ତୋତେ ମୁହିଁ କରିବି ଘଟାଳି ॥
ତା ବଚନେ କୋପକଲେ ଦୁର୍ଗତିତାରିଣୀ ।
ଆକାଶ ମର୍ତ୍ତ୍ୟକୁ ଘୁଞ୍ଚିଦେଲେ ତତକ୍ଷଣି ॥
ଅସୁର ନାଶନେ ଗୁହିଁଛନ୍ତି ଅସ୍ତ୍ରପକ୍ଷେ ।
ଶୂନ୍ୟରୁ ଖସି ପଡ଼ିଲେ ଦେବୀ ଲକ୍ଷେ ଲକ୍ଷେ ॥
ପାତାଳେ ବାସେଳୀ ପାଦ ଅକାଶରେ ଶିର ।
କରେ ଖାଣ୍ଡା ମୁଦ୍ଗର ଅଜ ଶଙ୍ଖ ଶର ॥
ହାଣ ବୋଲି ଶୁଭେ ଅକାଶରେ ବାଣ
କାଳବମୋଚନକୁ ହାଣିଲେ ନାରସିଂହଣୀ ॥
ତ୍ରିଶୂଳ ଘେନି ମାଇଲେ ଦେବୀ ଭୈରବୀ ।
ବଜ୍ରକଣ୍ଠି କୁଠାରରେ ବାସେଳୀ ପ୍ରାଭବ ॥
ନାଗପାଶ ଧରି ତାକୁ ବାନ୍ଧିଲେ ତ୍ରିପୁରା ।
ବଜ୍ରଶକ୍ତି ଧରି ପିଟିଲେକ ଉଗ୍ରତାରା ॥
ବ୍ରହ୍ମଶକ୍ତି ଘେନି ମାଇଲେକ ବ୍ରହ୍ମାଣୀ ।
ତ୍ରିଶଳ ଶକ୍ତିକୁ ଧରି ମାରେ ରୁଦ୍ରାଣୀ ॥
ବଜ୍ରାବଳୀ ଗଦା ଧରି ମାରିଲେ ଚାମୁଣ୍ଡା ।
ମାରକମା ଅକ୍ଷୋହିଣୀ ମାରିଲେକ ଖଣ୍ଡା ॥
ପଞ୍ଚହିତ ରଜା ଶୁଣେ କହେ ଶୁକବ୍ରହ୍ମା ।
ତା ଦକ୍ଷିଣ ଭୁଜ ହାଣିଦେଲେ ମାରକମା ॥
କୁଠାର ଧରି ତାହାକୁ ହାଣିଲେ କୁଠାରୀ ।
ବାମଭୁଜ ହାଣି ଘେନି ଗଲେ ବେଗକରି ॥
ବାସେଳୀ ମାରିଲେ ପୁଣ ଖଡ୍ଗ ପ୍ରଚଣ୍ଡ ।
କାଳବମୋଚନର ଯେ ଛେଦଦେଲେ ମୁଣ୍ଡ ।
ପିଶାଚୁଣୀଗଣ ଦେଖି ଆସି କଲେ କେଳି ।
ରକ୍ତ ମାଂସ ଖାଇଲେ ତାହା ସଙ୍ଗେ ମିଳି ॥
ହେ ପରୀକ୍ଷ କାଳବମୋଚନର ନକ୍ତକୁ ।
ଲକ୍ଷେ ପଦ ଡାକିନୀଙ୍କର ଶତା କାଟିବାକୁ ॥
ଅସ୍ତ୍ରିତ ମାଂସ ଦାର କଟିଲ ଖଣ୍ଡେ ଖଣ୍ଡି ।
ବାଣ୍ଟିନେବେ ଯେ ଯାହାରେ ଲକ୍ଷେପଦ ଚଣ୍ଡୀ ॥
କାଳବମୋଚନ ଦୈତ୍ୟ ପଡ଼ିଲା ରଣେ ।
ଆକାଶରୁ ପୁଷ୍ପବୃଷ୍ଟି କଲେ ଦେବଗଣେ ॥
କାଳବମୋଚନ ନାଶ ଦେଖି ଦେବଲୋକେ ।
ଅନେକ ଉତ୍ସବ ସ୍ୱର୍ଗେ କଲେ ବୃନ୍ଦାରକେ ॥
ମେରୁସଙ୍ଗ ମଣ୍ଡାଇଣ ବସିଲେ ସକଳ ।
ସମସ୍ତଙ୍କ ମୁଖ ଯଥା ପ୍ରସ୍ଫୁଟିତ କମଳ ॥
ଲକ୍ଷେସପ୍ତ ଷଷ୍ଟିବର୍ଷ ନ ଥିଲା ସେ ସଙ୍ଗ ।
ଏବେ ଅକାଶମଣ୍ଡଳ ଦିଶିଲାକ ଶୋଭ ॥
ଅମରବଳାଦିଙ୍କା ଯେ ଚଉଷଠି କୋଟି ।
ନାରଦାଦିମାନେ ବୀଣାଯନ୍ତ୍ର ଧରି ଛନ୍ତି ॥
ଅନେକ ଅନନ୍ଦହେଲେ ଦେବେ ସ୍ୱର୍ଗପୁରେ
ଶାରଳାଦାସଙ୍କ ମତ ଥାଉ ସେ ପାଦରେ ॥

—※—

ମହିଷାସୁର କଣ୍ଠିକ ରହୁଗିର ଉପାଖ୍ୟାନ ।

ଏଥୁ ଅନନ୍ତରେ ତହିଁ କାଳ ଯେ ବିକାଳ ।
ମହିଷାସୁରକୁ ଯାଇ କହିଲେ ସକଳ ॥
କାଳବମୋଚନ ମଲା ଅଜ ରଣମଧ୍ୟେ ॥
ସ୍ତ୍ରୀବୃନ୍ଦ ମାରିଲେ ତାକୁ କଉତୁକ ଯୁଦ୍ଧେ ।
କାଳବମୋଚନ ଯେତେବେଳେ ଯୁଦ୍ଧେ ଗଲା ।
ମହିଷା ହରଷ ହୋଇ ପୁରକୁ ଆଇଲା ॥
ନଗରେ ଉତ୍ସବ କରାଇ ସଙ୍ଗ କରି ବସି ।
ଏକାଳେ କାଳେ ବିକାଳେ କହିଲେକ ଆସି ॥
ଶୁଣିଣ ମହିଷାସୁର ମୂର୍ଚ୍ଛାଗତେ ପଡ଼ି ।
ଅଜ୍ଞାନ ପଡ଼ିଲା ରଜା ଘୋର ରବ ଛାଡ଼ି ॥
କୋଳକରି ଧରେ ତାକୁ ସେ ଧୂମ୍ରଲୋଚନ ।
ମୁଖେ ଜଳ ସିଞ୍ଚିକରି କଲା ସଚେତନ ॥
ଅନେକ କ୍ରୋଧ କରଇ ମହିଷା ନୃପତି ।
ଅପଣା ଶରୀରକୁ ସେ ଅପଣେ ବିକୋଶ ।
କାଳିକ୍କ ଅସ୍ଥା ମେ ହରି ନିକାଇଣ ଯାଉ ।
ଏଡ଼େ କଷ୍ଟ ଦେଖିବାକୁ ମୋ ଦେହ ନ ଥାଉ ।
ଅହା କାଳବମୋଚନ ମୋ ପ୍ରାଣ ସମାନ ।
କେନାବଳୀ ନଷ୍ଟକୁ ତୁ ଅଦତ୍ୟାଚରଣ ॥
ଦେହ କପାଇ ରହିଲି ତୋହର ଅଭାବେ ।
ନଷ୍ଟେ ଜାଣିଲି ମୋ ମୃତ୍ୟୁ ହୋଇବଟ ଏବେ ॥

ଅଥବା ଯଦ୍ୟପି ମୁହିଁ ଜୀଇବ କଳଙ୍କ ।
ତାହାକୁ ଯେସନେ ମୁହିଁ କରିବଇଁ ରାଜ୍ୟ ॥
ହେ ଧୂମ୍ରଲୋଚନ ଶୂନ୍ୟ ଉପଶୂନ୍ୟ ତନ ।
ସମସ୍ତେକ ବର୍ତ୍ତିଥାଅ ପଳା ଦେହ ସେଜ ॥
ଏବାସ୍ତୁ ରଣଯାଗକୁ ବରିବ ମୁଁ ଏକା ।
ଛାଡ଼ ମାୟାମୋହ ମୂର୍ଚ୍ଛା ହୋଇଲ ନିଃଶଙ୍କା ॥
ଏକ୍କେ ଏକ୍କେ ଯୋଦ୍ଧା'ଥିଲେ ତନକାବଙ୍କୀତା ।
ଏତ ଅସମ୍ଭବ କେହ୍ନ ନୋହିଲେ ଜାଣନ୍ତା ॥
ଦେବ ଦାନବ ଜଣିଲ ମୋର ବାହୁବଳେ ।
ଦଇବେ ହାରିଲି ଏବେ କର୍ମର ଅବଳେ ॥
ଏସନେକ କପଟତ ଦେବତାଙ୍କ ଅଛ ।
କେହ୍ନ ମୋତେ ନ କହିଲେ ନ ଜାଣେ ମୁଁ କିଛ ॥
ସଂସାର ନ ଚହିଲି ସେନାଙ୍କର ଦର୍ପେ ।
ଏଥକୁ ଦଇବ ବାମ ହେଲା ଅନ୍ୟରୂପେ ॥
ମୁଁ ପାମର ସବୁଙ୍କର ଦେଖିଲି ମରଣ ।
ଜୀବନ ମୁଁ ଧରିଅଛି ମୋର ସ୍ୱତ୍ତ୍ୱପଣ ॥
ସେବଇ ମହିଷାସୁର ପାଇ ବଡ଼ ବ୍ୟଥା ।
ଛିନ୍ନ କୁଳକୁ ଏତ ଅଟ ମନ୍ଦକଥା ॥
ଏକ୍କେ ସମ୍ପଦ ମୋହର ଗଲା ଯେବେ ନାଶ ।
ସେମାନେ ଜଣିଲେ ହୋନ୍ତା ମୋର ପରିଶେଷ ॥
ପାମରୀ ଦୋରୂପୀ ସେହୁ ସ୍ତ୍ରିରୂପମାନ ଛାର ।
ସ୍ନନଜନରେ ନାଶିଲ ସମ୍ପଦ ମୋହର ॥
କେ ବୋଲଇ ଅନେକ ସେ କେ ବୋଲଇ ଏକା
ସ୍ତ୍ରିଶ ହୋଇ ପୁରୁଷଙ୍କୁ ନ କରନ୍ତି ଶଙ୍କା ॥
ଅହେ ବିଷ୍ଣୁ ତୁମ୍ଭେ ମୋର ଅଟ ହେ ବଇରୀ ।
ତୋପରେ କପଟ ମୋହର ନ ଗଲା ଏ ଶିଖ ॥
ବିଷ୍ଣୁର ହସ୍ତରେ ଯେବେ ମୁଁ ହୁଅନ୍ତି ବଧ ।
ବଇକୁଣ୍ଠ ପାଇକର ହୁଅନ୍ତି ମହ ସିଦ୍ଧ ॥
ମୁହିଁ ଯେବେ ବିଷ୍ଣୁକୁତ ପାରନ୍ତି ବା ଜଣି ।
ତ୍ରଇଲୋକ୍ୟେ ଶୁଣନ୍ତା ଯେ ସାଧୁ ସାଧୁ ବାଣୀ ॥
ପୁରୁଷେ ମରିବ ମାଡିଥାନ୍ତି ଯେବେ ପୂର୍ବେ ।
ବିଷ୍ଣୁ ସୁଦର୍ଶନ ଚକ୍ର ପାଅନ୍ତି ନା ଏବେ ॥
ଏବେ ସେ ମୋର ନିକଟ ହୋଇଲାକ ମୃତ୍ୟୁ ।
ଜନମରେ ନାଶ ହେଲି ଦେବତାଙ୍କ ହେତୁ ॥
କହି କହି କୁପିତ ସେ ଦୈତ୍ୟକୁଳ ଷଣ୍ଢ ।
ଧବଳ ପର୍ବତ ପରେ ପ୍ରହାରିଲା ଷଣ୍ଢା ॥

ନବଯୋଜନ ଧବଳ ନାମେ ମହାଶୈଳ ।
ମହିଷାର ଖଡ୍ଗ ପଡ଼ ହୋଇଲା ବେଳନଫାଳ ॥
ଅକାରଣ ଦେଖନ୍ତି ଥାଇ ସର୍ବ ବୃନ୍ଦାରକେ ।
ସାଧୁ ସାଧୁ ମହିଷା ତୁ ବୋଲି ଗରୁହାଙ୍କେ ॥
ସେ ଖଡ୍ଗ ତୁଳାଇ ପୁଣ ଧାମେ ଅକାଶକୁ ।
ଅଜ ମୁହିଁ ମାରିବଇଁ ସର୍ବ ଦେବତାଙ୍କୁ ॥
ବ୍ରହ୍ମାର ମୁଣ୍ଡ ମୋଡ଼ିବ ଯାଇଁ ଏହିକ୍ଷଣ ।
ଶୂନ୍ୟେ ନ ଥୋଇବ ଅଜ ଚଳେ ଦେବଗଣ ॥
ଶୂନ୍ୟ ଭୁବନରେ ସେହ ଦୈତ୍ୟରୂପ ଦେଖି ।
ଦେବତାଏ ପଳାଇଲେ ଗଗନ ଉପେକ୍ଷି ॥
କେହି ବାସ ନ ସମ୍ଭାଳ ସମସ୍ତ ତରୁଧେ ।
ଶରଣ ପଶିଲେ ଯାଇଁ ଦୁର୍ଗାଙ୍କ ସନ୍ନିଧେ ॥
ଧାଇଁଲେ ଦେବଙ୍କ କଷ୍ଟ ଦେଖି ନାରାୟଣୀ ।
ଅରେ ଅରେ ବୋଲି କରେ ଖଡ୍ଗଗକୁ ଘେନି ॥
ଅନକ୍ଷଣେ ଶର ବନ୍ଧିଛନ୍ତି ହସ୍ତଚାପ ।
ଅକାଶ ପଥ ସକଳ କଲେ ଶରପିଞ୍ଜ ॥
ଉସାର ହୋଇଲା ଅଶିସହସ୍ର ଯୋଜନ ।
ନବସହସ ଯୋଜନ ବହଳ ପ୍ରମାଣ ॥
ଏସନେକ ଶରପିଞ୍ଜ ଗଗନ ମଣ୍ଡଳ ।
ଦେଖି ଅଶ୍ଚର୍ଯ୍ୟ ହୋଇଲା ଦୈତ୍ୟ ମହାବଳ ॥
ଯାଇ ନ ପାରଣ ସେ ଯେ ଭ୍ରମଇ ଦର୍ପିଷ୍ଟ ।
ଅବରୁଦ୍ଧ ହେଲା ଏବେ ମୋତେ ସ୍ୱର୍ଗବାଟ ॥
ମନ୍ତ୍ରିଙ୍କ ବୋଲଇ ଅହୋ କରିବା କି ବୁଦ୍ଧି ।
ସ୍ୱର୍ଗପୁର ବାଟ ଏବେ ହୋଇଲା ନିରୋଧ ॥
ଅନ୍ଧକ ମନ୍ତ୍ରୀ ବୋଇଲା ନ ଜାଣୁ କାହାଣୀ ।
ସ୍ତ୍ରିରୂପଙ୍କ ବୋଲି ତୁ ଯେ କହୁ ପୁଣି ପୁଣି ॥
ତୁ ବୋଇଲୁ ରାଜା ସେହୁ ନୁହେ ବିଷ୍ଣୁ ନାଥ ।
ଦେଖ ଶଙ୍ଖ ଚକ୍ର ଗଦା ଶାର୍ଙ୍ଗ ଧନୁ ହାତ ॥
ଏ ସର୍ବ ବିଗ୍ରହ କର ତୁହି ମନେ ଗୁଣି ।
ଅବତାର ହୋଇଛନ୍ତି ଦେବୀ ନାରାୟଣୀ ॥
ଏସନ ବଚନରେ ସେ ହୋଇଲାକ ସ୍ଥିତି ।
ବାହୁଡ଼ଇ ଅପଣାର ପୁରେ ମୈଷା ଧାଇ ॥
ଅସୁ ଅସୁ ପଥମଧେ ଭେଟେ ରତ୍ନଗିରି ।
ଚିନ୍ତିବର ସମାନରେ ମୈଷାରୂପ ଧରି ॥
ରତ୍ନଗିରି ଶିଖରରେ ଭଜେ ମାହେଶ୍ୱରୀ ।
ଯୋଗିନୀଗଣ ସେହିଣ ସେ ମଦ୍ୟପାନ କରି ।

ମହାରୂପ ଦେଖାଇଣ ଦୈତ୍ୟ ମହାବଳୀ ।
ରତ୍ନଗିରି ପକାଇଲା ଘ ନ ମୁନେ ଟାଳି ॥
ଶତେକ ଯୋଜନ ଯୋଡା ଦ୍ୱିଯୋଜନ ସ୍ଥୂଳୀ ।
ଉପର୍ଦ୍ଧ ଯେ ବେନଶତ ଯୋଜନକୁ ବଳ ॥
ବିସ୍ତାର ତା' କ୍ଷେତ୍ରର ଯୋଜନ ପର୍ଯ୍ୟନ୍ତ ।
ସିଂହମୁନେ ତାଡ଼ ଧରେ ଏତେକ ପର୍ବତ ॥
କଣ୍ଠତେ ମହିଷାସୁର ପର୍ବତ ଉପାଡ଼ ।
ଚଳମନା ପ୍ରାୟେ ସିଂହମୁନେ ଅଛ ଧର ॥
ଶୁଣ ପରୀକ୍ଷିତ ରାଜା ସାତପଦ୍ମ ଦେବୀ ।
ପଦର ମେଦିଛ ତହିଁ ଛନ୍ତି ଭଇରବୀ ॥
ନବକୋଟି କାତ୍ୟାୟନୀ ଚଉଷଠି ଯୋଗିନୀ ।
ଦୁର୍ଗା ପର୍ବତେ ଅଛନ୍ତି ଏମାନଙ୍କୁ ଘେନି ॥
ଦେଖ କେତେ ବଳବନ୍ତ ଦାନବର କାୟେ ।
ପର୍ବତ ସିଂହେ ଧରଛି ମାଂସଖଣ୍ଡ ପ୍ରାୟେ ॥
ଭୂମିରେ ହାଣନ୍ତେ ଯେତେ ସିଂହେ ଲାଗେ ମାଷ୍ଟ
ତେତେ ରହିଅଛି ସେହି ରତ୍ନଗିରି ଗୋଷ୍ଠ ॥
କରପଦ ଯୋଡ଼ି କରି କହେ ମାରୁକମା ।
ମହିଷା ଅନ୍ଧାରବଡ଼େ କରଛି ଗୋ ଉମା ॥
ଇଠି ଦେବୀମାନେ ପାଡ଼ିଲେକ ଘୋର ଡାକ ।
ବ୍ରହ୍ମାଣ୍ଡ ହଲୁଛିଲା ଯେ ଦେବୀଙ୍କର ହାକ ॥
ଅନ୍ତରୀକ୍ଷେ ପର୍ବତକୁ ଘେନିଅଛେ ବେଗି ।
ବୁଲାଇ ବୁଲାଇ ତାକୁ ଅଧେ ଦେଲା ଫିଙ୍ଗି ॥
ମରହଟ୍ଟ କାଳାନଳ ସଦୃଶ ସୌରାଷ୍ଟ୍ରେ ।
ପର୍ବତ ପଡ଼ିଲା ସ୍କନ୍ଦ କାନନ ନିକଟେ ॥
ଲକ୍ଷେକ ନବସହସ୍ର ଯୋଜନ ଅନ୍ତରେ ।
ସେ ରତ୍ନଗିରି ପଡ଼ିଲା ଯାଇ ଏତେ ଦୂରେ ॥
ନମସ୍ତେ ଅନାଦି ଶକ୍ତି ନମୋ କାତ୍ୟାୟନି ।
ଖର୍ପରବାହିଣୀ ମଦ୍ୟମାଂସ ତୁ ଭୋଜନୀ ॥
ଅପଦ କାଳରେ ମତୋ ସଦା ତୁହି ରଖ ।
ଖଟ୍ୱଙ୍ଗଧାରିଣୀ ତୁ ଦୁର୍ବଳ ରକ୍ଷ ॥
ପରମ ଯୋଗେଶ୍ୱର ଗୋ ତୋ ମନ ଅଚିନ୍ତା ।
ବୁଦ୍ଧିନ୍ତା ମେଧସୀ ମାଗୋ ତୁହି ନିଷ୍କଳନ୍ତା ॥
ଯାହାକୁ ନମନ୍ତେ କରନ୍ତି ଦେବାସୁର ବ୍ରହ୍ମା ।
ମୁଁ କିସ କହିବି ମାଗୋ ତୋହର ମହିମା ॥
ଜୟ ମାତ ଦୁର୍ଗାଦେବି ଦରିଦ୍ରନାଶିନି ।
ସର୍ବମଙ୍ଗଳଦାୟିନି ଦୁଃଖଦହନାଦିନି ॥
ତୋ ନାମ ଭ୍ରମରନ୍ତି ସେହି କାଳଦଣ୍ଡପାଣି ।
କର ଅନୁଗ୍ରହ ମାଗୋ ଜଗତ୍‌ତାରିଣୀ ॥
ମୃକଣ୍ଡ ଗନ୍ଧ ପ୍ରାପତ ତୋର ପରସାଦେ ।
ଚଣ୍ଡୀପୁରାଣ କହିବ ଅଜ୍ଞ ମୋହନ ତୁ ଦେ ॥
ଦେବତାଙ୍କ କଷ୍ଟ ଫେଡ଼ିଲୁ ଗୋ ଗୋସ୍ୱାମିଣି ।
ଜନ୍ମେ ଜନ୍ମେ ତୋ ପାଦେ ମୁଁ ହୋଇଛି ଦମ୍ପିନ ॥
ଶ୍ରୀ ଦୁର୍ଗାଦେବୀ ଚରଣେ ସେବା ମୋର ନିତ୍ୟେ ।
ରଖ ଶାରଳାଦାସକୁ ଜଗତର ମାତେ ॥
ଶୁଣ ପରୀକ୍ଷିତ ବୋଲେ ଶୁକ ବ୍ରହ୍ମଜ୍ଞାତା ।
ତୁ ଯାହା ପୁଚ୍ଛିଲୁ ବୃତ୍ତ ପୁରାଣର କଥା ॥
ଗିରିବର ପକାଇଣ ମହିଷାସୁର ଅସି ।
ଏଥି ଉତ୍ତାରୁ ତାହାନ୍ତ ହୋଇଲେକ ଶୁଣି ।
ମହିଷାସୁରଙ୍କୁ ବୋଲେ ସେ ଧୂମ୍ରଲୋଚନ ।
ହେ ସ୍ୱାମି ଚାଲ ଏଥର ଅପଣା ଭୁବନ ॥
ଜମ୍ବୁକଳା ସ୍ଥାନେ ଦେବ ନ ଥିବା ହୋ ଷଣେ ।
କାଲି ଅସି ଖୋଜିବା ହୋ ପଡ଼ିମଲେ କେଣେ ॥
ଭଲ ବୁଦ୍ଧି କହିଲାକ ମସାଦାପ ନାତି ।
ନିଜପୁରେ ପ୍ରବେଶିଲା ତହୁଁ ଦୈତ୍ୟପତି ॥
ପାନ ଭୋଜନାଦି ଶେଷ କଲା ଦୈତ୍ୟସର୍ବେ ।
ନିଦ୍ରାବଶ ମନ୍ଦିରେ ଯାଇଁ ଶେଜେ ହୋଏ ॥
ଅହୋ ପରୀକ୍ଷିତ ରାଜା ଶୁଣ ଏକମନେ ।
ଭଇନ୍ତି କାତ୍ୟାୟନୀ ସେ ଅସନ ବନ୍ଧନେ ॥
ଦୁର୍ଗାଦେବୀ ମାନଙ୍କ ଯେ ରହିଛନ୍ତି ଶୂନ୍ୟେ ।
ଅଉ ଦେବୀମାନେ ପଡ଼ିଗଲେ ଅନ୍ୟସ୍ଥାନେ ॥
ଦେବତା ଦେଖିଲେ ଦୁର୍ଗାଙ୍କର ଶୂନ୍ୟ ଗତି ।
ଖେଚରୀ ବିମାନ ଅଣି ଦେଲେକ ତତ୍ପତି ॥
ବୋଇଲେ ଏଥିରେ ବିଜେ କର ମହାମାୟେ ।
ମନପବନ ଗତି ଏ ବିମାନ ଯେ ହୁଏ ॥
ଅନେକ ବିନୟ ହୋଇ କହନ୍ତି ବଚନ ।
ଦୁର୍ଗାଦେବୀ ଅରୋହିଲେ ଖେଚରୀ ବିମାନ ॥
ଏକ ନିମିଷକେ ସପ୍ତଦ୍ୱୀପ ସେ ଭ୍ରମଇ ।
ଦଣ୍ଡକ ମଧ୍ୟରେ କୋଟି ବ୍ରହ୍ମାଣ୍ଡ ସୋଟଇ ॥
ଏତେକେ ବିମାନେ ବିଜେ ଦେବୀ ଜଗନ୍ମାତା ।
ଦିବେ ଅଭିଷେକ କଲେ ଜଗତକରତା ॥
ଶୁଣ ପରୀକ୍ଷିତ କହନ୍ତି ଯେ ବ୍ରହ୍ମବେତ୍ତା ।
ଅନେକ ପ୍ରତାପ କଲେ ମହିଷା ବଳବନ୍ତା ॥

କ୍ଷଣେ ହସେ କ୍ଷଣେ ବର୍ଷେ କ୍ଷଣେ କରେ କ୍ରୋଧ ।
ଆପଣାର ଭୁଜ ଗ୍ରହି କରଇ ସନ୍ନାଦ ॥
ଅଦ୍ୟନ୍ତ କପାଇଁ ମୁଁ ନ ଗଲି ସଂଗ୍ରାମକୁ ।
କର୍ମର ଅବଲେ ବୁଦ୍ଧି ନ ଦଶେ ଅମ୍ଭଙ୍କୁ ॥
ମୁହିଁ ସେ ସ୍ତ୍ରୀବୃନ୍ଦଙ୍କୁ ମାରିଥାନ୍ତି ଭଣେ ।
ସଙ୍ଗାନ୍ତ ନସରିଲି ମୁଁ ଅଧମର ପଣେ ।
ଏସନେକ ବସୁରନ୍ତେ ପାହୁଲ୍ୟାଙ୍କ ଶୁଦ୍ଧି ।
ଦେବାଳୟେ ଶଙ୍ଖଧ୍ୱନି ଶୁଭଇ ସାହାନ୍ତି
ଚାମ୍ପୁଚନ୍ଦ୍ର ଧ୍ୱନି ପୁଣି ଶୁଭେ ଦଣ୍ଡଘଣ୍ଟେ ।
କାକମାନେ ରବ ଦେଲେ ଉଡ଼ିଣ ଆକାଶେ ॥
ଶଯ୍ୟା ତେଜିକରି ସ୍କନ୍ଧେ ଲୋପରେ ଉଠଇ ।
କରେ ଗଦା ଧରି ବାଦ ଟୋକ ସେ ମାରଇ ॥
ସ୍ନାନ ଦେବାର୍ଚ୍ଚନ ସାରି ଦାନବ ଈଶ୍ୱର ।
ବନ୍ଧାକୁ ସ୍ତୁତି କରିଲା ବିଶ୍ୱରୂପ ଧରି ॥
ପିତାକୁ ଲକ୍ଷ୍ୟେ କରଇ ମୈଷା କାମରୂପୀ ।
ପ୍ରଳୟ ସିଂହରୂପ ଧରେ ହୋଇ କୋପୀ ॥
ପୃଥିବୀ ଚୋଟିଲା ନିଜ କାମୁରେ କେଶରୀ ।
ଶରୀର ବଢ଼ଇ ଯେଉଁେ ସ୍ୱର୍ଣ୍ଣ କୂଟ ଗିରି ॥
ହେ ପରୀକ୍ଷ ଯହିଁ ବଢ଼େ ମାତ ଦେବି ଦୁର୍ଗେ ।
ମହିଷାସୁର ପ୍ରବେଶ ତହିଁ ଅତିବେଗେ ॥
ଆକାଶ ଚୋଟିଲା ସିଂହ ହୋଇଣ ବିକ୍ରମ ।
ଦେଖିଲେ ସେ ମହାମାୟେ ତ ର ଉତକର୍ମ ॥
ଦେବୀମାନେ ସହି ନ ପାରିଲେ ତାହା ଦେଖି ।
ଧାଇଁଲେ ସେ ଦେବୀଗଣେ ଗଗନ ଉପେକ୍ଷି ।
ଦୁର୍ଗା ବୋଇଲେ ଲୋ ରହ ରହ କାତ୍ୟାୟନୀ ।
ମହିଷାସୁରକୁ ମୁହିଁ ମାରିବି ଏକ୍ଷଣି ॥
ମୁହିଁ ଦାନବକୁ ମାରିବି ଲୋ ଏହା ତଥ୍ୟ ।
ଅଦ୍ୟନ୍ତ ଦେବଙ୍କ ଆଗେ କରିଅଛି ସତ୍ୟ ॥
ଶୁଣ ହୋ ପରୀକ୍ଷରାଜା ଦୁର୍ଗାଙ୍କ ଚରିତ ।
ଦେବୀମାନଙ୍କୁ ଗ୍ରହିଣ ହେଲେ ସେ କୁପିତ ॥
କାମରୂପୀ ହୋଇ ଦେବୀ ହୋଇଲେ ସିଂହେକ
ମହାଚଣ୍ଡରୂପେ ବ୍ୟାପ ଗଲେ ତିନିଲୋକ ॥
ଚନ୍ଦ୍ର ଚିହରୁ ବଜ୍ର ଯେ ବଢ଼ାଇଲେ କାୟେ ।
ପୃଥ୍ୱୀ ସ୍ୱର୍ଗ ବ୍ୟାପିଗଲା ତାଙ୍କ ତେଜୋମୟେ ॥
ଯେସନେ ମେରୁ ମନ୍ଦର ଦୁହେଁ ହେଲେ ଭେଟ ।
ମଣ୍ଡ ମନ୍ଦର ଲୁଚିଲା ଦେଖି ସିଂହଚୋଟ ॥

ବେଣିସିଂହେ ପଡ଼ତାଳ କଲେ ଏକସାନ୍ତ ।
ବ୍ରହ୍ମାଣ୍ଡ ଯେ ନ ହୋଇଲା ଟଳେ ବସୁମତୀ ॥
ନଖେ ବିଦାରନ୍ତି ଦୁହେଁ ଦୁହିଙ୍କର ଅଙ୍ଗ ।
ନିର୍ଝର ପ୍ରାୟେ ରୁଧିର ବାହାରେ ସର୍ବାଙ୍ଗ ॥
ଭୁଣ୍ଡ ବିସ୍ତାର କରନ୍ତି ଯେବେ ସେହି ବେନି ।
ଗର୍ଭଗତ [illegible] ଏ ଭୁବନ ତିନି ॥
ତେତିଶକୋଟି ଦେବତା ମହାଭୟ ପାଇ ।
ଆକାଶ ମଣ୍ଡଳେ ସେହି ନ ପାରିଲେ ରହି ॥
ପାଦଘାତରେ କମ୍ପଇ ପାତାଳାଦି ପୃଥ୍ୱୀ ।
କର୍ଣ୍ଣ ଟେକିଲେ ଛୁଅଇ ବ୍ରହ୍ମାଣ୍ଡକୁ ସରି ॥
ଦେବୀଙ୍କର ଶରୀର ଅଭେଦ ବଜ୍ରମେହା ।
[illegible]ଲୀଧଟିରେ ଦରସ୍ୟେକ ଯାହାର ମୂର୍ଚ୍ଛନା ॥
ନିଶ୍ୱାସ ବାତଘାତରେ କମ୍ପେ ଗିରିବର ।
ଗର୍ଜନ କରନ୍ତେ ଯଥା ଘଡ଼ଘଡ଼ ମେଘର ॥
ବେନି ସିଂହ ତଡ଼ାତଡ଼ି ହୁଅନ୍ତି ବେନି ତାଳ ।
ଉଠଇ ବଦନ ଜାଣି ପ୍ରଳୟ ଅନଳ ।
ଖୁରାଘାତ ରେଣୁ ହୋଇ ଉଡ଼ଇ କି ପୃଥ୍ୱୀ ।
କର୍ଣ୍ଣଚୋଟେ ଲୋପ ହେଲା ପୁରବାରସ୍ୱର୍ଗି ॥
ଘୃଣି ଯାଇ ମୁଣ୍ଡେ ମୁଣ୍ଡ ମାରଇ ଅସୁର ।
ଚଉଦଭୁବନ ଲୋକେ ହୁଅନ୍ତି ଥରହର ।
ସମର ଲାଗିଲା ଦିବା ରାତ୍ର ପରିଯନ୍ତେ ।
କ୍ଷୀର ସମୁଦ୍ରେ ଲୁଚିଲେ ଚନ୍ଦ୍ରାର୍କ ସହିତେ ॥
ନାହିଁ ଦିବା ନାହିଁ ରାତ୍ରି ନାହିଁ ଚନ୍ଦ୍ରସୂର୍ଯ୍ୟ ।
ଏକୋମାତ୍ର ବସିଜଇ ଦନୁଜର ତେଜ ॥
ଶୂନ୍ୟଭୁବନ ତେଜିଣ ଦେବେ ପଳାଇଲେ ।
ଚଉଦଭୁବନ ଲୋକେ ଚାଟକା ହୋଇଲେ ॥
ଜଳ ତେଜି ସ୍ଥଳେ ପଡ଼ିଲେକ ଜଳଜନ୍ତୁ ।
ପବନ ବିନା କାହାର ନାହିଁ ଜୀବ ହେତୁ ॥
ଶୁଣ ପରୀକ୍ଷିତ ଅହେ ଅସଂଖ୍ୟ ସମର ।
ଏହା କହିବାକୁ ବୁଦ୍ଧି କେତେକ ମୋହର ॥
କବା ଦିବା କବା ରାତ୍ର ସମର ହୋଇଲା ।
ବେନି ସିଂହ ବିନୁ କିଛି କାହିଁ ନ ରହିଲା ॥
ଦେବେ ବିଚାରିଲେ କିବା ପ୍ରଳେ ହେବ ଅଜ ।
ଚଉଦ ଭୁବନ ନଷ୍ଟ ହୋଇବ ଦହଯ ॥
ମହାଘୋର ସମରତ ହୁଅନ୍ତେ ଅତି ବେଗେ ।
ସିଂହଲୁହିଁ ମାତବହିଲେକ ଦେବୀ ଦୁର୍ଗେ ॥

ବକ୍ଷସ୍ଥଳେ ବସିଣ ସେ ହୋଇ କୋପମୂର୍ତ୍ତି ।
ମହିଷାସୁରର ଦେହ ନଖେ ବିଦାରନ୍ତି ॥
ନଖେ ବିଦାରନ୍ତେ ଯେ ନ ଫୁଟେ ତାର କାୟେ ।
ବିସ୍ମୟ ହୋଇଲେ ତହୁଁ ଦୁର୍ଗା ମହାମାୟେ ॥
ଅନେକ ପ୍ରକାରେ ବିଦାରଣ କଲେ ବୁକୁ ।
ବକ୍ଷସ୍ଥଳେ ବସି ପ୍ରଶଂସିଲେ ମହିଷାକୁ ॥
ସାଧୁ ରେ ମହିଷାସୁର ଜୀବନ ତୋ ଧନ୍ୟ ।
କେଡ଼େ ତପେ ମନ ଇଲୁ ଚତୁର୍ବଦନ ॥
ଏସନେକ କରି ତୋତେ ଧାତା ଦେଲା ବର ।
ଚକ୍ରରେ ନିର୍ମିତ ହେଲା ତୋହର ଶରୀର ॥
ପ୍ରତ୍ୟକ୍ଷରେ ବସୁ ମୋ ବାହନ ସିଂହ ପ୍ରାୟେ ।
ତୋତେ ବଧ କରିବାକୁ ମୋର ମନ ନୋହେ ॥
ନିରେପି ଗୃହିଁଲେ ତାକୁ ଦୁର୍ଗା ମହାମାୟା ।
ଗୃହାନ୍ତେ ତାହାରଠାରେ ବସେ ବଡ଼ ଦୟା ॥
କର ଚରଣ ଦାନବ କ୍ରମେ କ୍ରମେ କାଢ଼ି ।
ସଦୟ ଭାବ କରିଣ ଦେଲେ ତାକୁ ଛାଡ଼ି ॥
ପଳାଇଲା ଦାନବ ଯେ ଭୟେ ମହାରଣୁ ।
ଧାସ୍ତାମ ହୋଇ ଭ୍ରମଇ ଦୈତ୍ୟକୁଳ ଭାନୁ ॥
ନିଜରୂପ ଧରି ରଣୁ ପଳାଇଲା ଡରେ ।
ଯାଇଁଣ ପ୍ରବେଶ ହେଲା ଆପଣାର ପୁରେ ॥

## ଶନ୍ୟ ଉପଶୂନ୍ୟ ବଧ ।

ଅର୍ଦ୍ଧ୍ୟଧର ବଚେ ଚନ୍ଦ୍ରାବତୀ ଯେ ଭାରିଯା ।
ମୋହେ ଅସାସ୍ଥାମ ଦେଖି ମୈଷାସୁର ରାଜା ॥
ଉଷ୍ଣଜଳ ସେଚନେ ସେ ପଖାଳିଲା କାୟେ ।
ଚେତନା ପାଇଲା ତହୁଁ ରକ୍ଷକୁଳ ସ୍ୱପ୍ନେ ॥
ପ୍ରିୟ ଅପ୍ରିୟ ଭାବ ନ ଜାଣେ ସେ ଦନୁଜ ।
କର୍ମକୁ ସନ୍ତାପ କରେ ମୈଷାସୁର ରାଜ ॥
ସଖା ସୋଦରତ ମୋର ଅଜ କେହୁ ନାହିଁ ।
ମୋହର ଏ ଅବସ୍ଥାତ କାକୁ କହିବଇଁ ॥
ମହିଷା ବିକଳ ଦେଖି ବୋଲେ ଚନ୍ଦ୍ରାବତୀ ।
ଶୁଣିଣ ପଣିବା ନାଥ ଛାଡ଼ ମନଭ୍ରାନ୍ତି ॥
ଗଳାରେ କୁଠାର ଦନ୍ତେ ଧରିଣ ତରଣ ।
ଗଲ ତାହା ଚରଣରେ କରିବା ଦଇନ ॥
ଅନେକ ବିନୟେ ଯହୁଁ କହିଲା ସେ ବାମା ।
ଶୁଣି ତୋଷ ହୋଇଲେକ ଦୈତ୍ୟ ମହାତମା ॥
ପଣିବଇଁ ଶରଣ ଗୋ ଛାଡ଼ ଧର୍ମ ବାଟ ।
ଷଦିକୁଳକୁ କଳଙ୍କ ହୋଇବ ପ୍ରକଟ ॥
ସ୍ତ୍ରୀସ୍ୱହୋଇ ସଖି ଅରେ ପାଷାଣ ତା ହୃଦୟ ।
ନପୁଣ ସଖି ମୋତେ କେ ନ କରଇ ଦୟା ।
ନାନା ଜନ୍ମ ମଧ୍ୟରେ ଯେ ନାରୀ ଜନ୍ମ ସାର ।
ଏଡ଼େ ବଡ଼ ଦୁଃଖକୁ ଗୋ ତାର ନାହିଁ ଶିନ ॥
କଷ୍ଟ ଦେଖି କରି ତାର ନୁହଇ ସଦୟେ ।
ନିଷ୍ଟୟ ଜାଣିଲି ମୋର କାଳ ପ୍ରାପ୍ତ ପ୍ରାୟେ ॥
ଅରେ ସଖି ଆଜ ସେହୁ ଯେଉଁ ଯୁଦ୍ଧ କଲା ।
ତାହାକୁ କେମନ୍ତେ ଲୋକେ ବୋଲନ୍ତି ଅବଳା ॥
ହରି ସହିତେ ହରନ୍ତି କୋପକୁ ମୋହର ।
ସ୍ତ୍ରୀସ୍ୱମାନ ହୋଇ କଲା ସେ ଘୋର ସମର ॥
ଦିବସ ରଜନୀ ସହ ମହାରଣ କଲା ।
ମହାସିଂହ ହୋଇଣ ଯେ ମାଡ଼ିଣ ବସିଲା ॥
ନଖେ ବିଦାରି ସଦୟ କରି ଛାଡ଼ିଦେଲା ।
ନୋହିଲେ ସଖି ଗୋ ମୃତ୍ୟୁ ଆଜ ହୋଇଥିଲା ॥
ପଳାଇ ଯିବାକୁ ମୋତେ କାହିଁ ନାହିଁ ସ୍ଥାନ ।
ଜାଣିଲି ସଜନ ଏହା ଦେବଙ୍କ ରଚଣ ॥
ନିସତ ହୋଇଲେ ସଖି ହୋଇବ ବା କସ ।
କ୍ଷତ୍ରିୟ କୁଳକୁ ଏହା ହେବ ଅପଯଶ ॥
ହେ ପରାକ୍ଷ ମୈଷା ଭାର୍ଯ୍ୟା ସହ ଭାଳେ ବସି ।
ଶୂନ୍ୟ ଉପଶୂନ୍ୟ ଦୁହେଁ ମିଳିଗଲେ ଆସି ॥
ଉଷ୍ଟ୍ରକ ବାହନ ଭୂଲେ ଦଶସ୍ତ୍ରରଥୀ ।
ଯେନାବଳୀ ନସ୍ତ କନ୍ଧ୍ଵଳ ସେନାପତି ॥
ସେହୁ ନସ୍ତ ଦଣ୍ଡ୍ରଅସି ନଣା ଅଧିକାର ।
ପୂର୍ବ ରଣାପାଳକ ଯେ ଥାନ୍ତି ଅନୁସର ॥
ରାଜା ଦ୍ୟକୁଳ ଶୁଣିଲେ ଭ୍ରମଣିର ବେଳେ ।
ନିଉଷାକ କରି ରାଜା ଅଗରେ ଶୁତଲେ ॥
ମହା ମତୁଅଳ ଦୁହେଁ ମଦ୍ୟ ରସ ଖାଇ ।
କେନ୍ତ ପରପର ତାଙ୍କ ସୋଦରତ ନାହିଁ ॥
ଶୂନ୍ୟ ଉପଶୂନ୍ୟକୁ ଯେ ମୈଷାସୁର ଗୃହିଁ ।
ବୋଲେ ମୋତେ ଅଇଲ କି ଦେଖି ବେଣଗିଇ ॥
ଶୂନ୍ୟ ଉପଶୂନ୍ୟ ଭଣି ରାଜାଠାରୁ ଶୁଣି ।
ଅମ୍ଭେ ଥାନ୍ତେ ତୁ କାହିଁକି କରୁ ହୋ ଭାଳେଣି ॥
ଅନେକ ଭୋଗକଲୁ ହୋ ତୋର ବାହୁବଳେ ।
କ୍ଷୁଧା ତୃଷା ଯମ ଦଣ୍ଡ ଜାଣିଲୁଁ ସକଳେ ॥

ଏତେକାଳେ ସପଣ୍ଡିତ ପଢ଼େ ନାଥ ତୋତେ ।
ଅନେକ କାଳରୁ ତୁମ୍ଭେ ପୋଷିଥିଲ ମତେ ॥
ଆମ୍ଭର ପ୍ରତିଜ୍ଞା ବଳବନ୍ତ ଦେଖ ତୁହ ।
ମାରବୁଁ ଯେ ତ୍ରିଦଶବୃନ୍ଦ ନ ଥୋଇବୁଁ କାହିଁ ॥
କ୍ଷଣକେ ବ୍ରହ୍ମାଣ୍ଡ ଆମ୍ଭେ କରିପାରୁଁ ନାଶ ।
ଅମ୍ଭେ ଥାଉଁ କପାଁ ତୋର ଏତେକ ସାହସ ॥
ତୋହ ଅଜ୍ଞା ନୋହେ ବୋଲି ହୋଇଥାଉଁ ତୁନି ।
ଦିଅ ଅଜ୍ଞା ମାରିଅସୁଁ ସକଳ ସଇନ ॥
ଯୋଗୀମାନଙ୍କୁ ଛପିବୁଁ ପାତାଳ ପୁରକୁ ।
ଉଡ଼ାଏ ମାରି ଚୂର୍ଣ୍ଣି କ କରିବୁଁ ମେରୁକୁ ॥
ପିଇ ଶୁଖାଇ ପାରୁ ହେ ସପତ ସାଗର ।
ଏହି ସ୍ତବ ତ୍ରିଦଶବୃନ୍ଦ କେତେକ ମାତର ॥
ସେନାଙ୍କ ବଚନେ ମୈଷା ଅସୁର ଭୁଲଇ ।
ସେହିକାଳେ ଘୋରଧର୍ମ ବଳ କି ଦଶଇ ॥
ଏତେକ ବଚନ ସେହୁ ମୈଷା ଦଣ୍ଡଧାରୀ ।
ଶୂନ୍ୟ ଉପଶୂନ୍ୟଙ୍କୁ ସେ ଦେଲା ନେଇ ଶାଢ଼ୀ ॥
ରତ୍ନ ବସ୍ତ୍ର ଅଳଂକାର ତାଙ୍କୁ ଦେଇ ସ୍ନେହେ ।
କାପୁଣ୍ୟ ହୋଇ କରଇ ବହୁତ ବିନୟେ ॥
ବୃହନ୍ତ ବଂଶ ତୁମ୍ଭେ ହୋ ଉଦ୍ଧରଣ ଧର ।
ଯୁଗେ ଯୁଗେ କଥା ରହିଥାଉ ହେ ତୁମ୍ଭର ॥
ରଜାର ବିନୟ ଶୁଣି ଦୁଷ୍ଟ ସେନାପତି ।
ସମଦଣ୍ଡ ଘେନିଣ ସେ ଚଳିଲେ ତ୍ୱରିତ ॥
ବାଜଇ ଯେ ବଜ୍ରଘୋଷ ଝମକ ନିଶାଣ ।
ଅକାଶେ କମ୍ପିଲେ ଶୁଣି ଦେବାସୁରଗଣ ॥
ସୁନନ୍ଦ ପ୍ରନନ୍ଦ ବୋଲି ବେନି ସେ ଦନୁଜ ।
ଏକପାଦ ତିନଶିର ଅଷ୍ଟ ଅଷ୍ଟ ଭୁଜ ॥
ଘେନି ଶକ୍ତି ଖଡ଼ୁଗ ଯେ କୁନ୍ତ ଅସିବର ।
ଦଶଲକ୍ଷ ଯୋଦ୍ଧା ତୁଲେ ହୋଇଲେ ବାହାର ॥
ବେନିଲକ୍ଷ ଯୋଦ୍ଧା ସହିତରେ ଶ୍ୱାନମୁଖ ।
ଲାଗିଲେ ସେ ରହୁଗିର ଉତ୍ତରର ପାଖ ॥
ବେନିଲକ୍ଷ ଯୋଦ୍ଧା ସହ ଶୂନ୍ୟ ସେନାପତି ॥
ପର୍ବତ ପଶ୍ଚିମ ପାଶେ ଲାଗିଲେକ ଯାତି ।
ଚାରିଲକ୍ଷ ଯୋଦ୍ଧା ତୁଲେ ଉପଶୂନ୍ୟ ସ୍ନେହେ ।
ପର୍ବତର ପୂର୍ବ ପାଶେ ପରବେଶ ହୁଏ ॥
ଚାରିଆଡ଼ ହୋଇଣ ସେ ବେଢ଼ିଲେକ ଆସି ।
ମହା ପ୍ରଚଣ୍ଡ ଦାନବେ ବଢ଼ାଇ ଦର୍ପିଷ୍ଟ ॥

ଶୁଣ ପରୀକ୍ଷିତ ବୋଲେ ଶୁକ ବ୍ରହ୍ମଋଷି ।
ଏ ଶ୍ରୀଭାଗବତ ଶୁଣ ଏକମନ କରି ॥
ଗଗନ ମେଘକେ ଅସୁରଙ୍କ ଆଷ୍ଟ ଦେଖି ।
ଦୁର୍ଗା ହକାରିଲେ ବେତାଳୀ ଯେ ଘୋରମୁଖୀ ॥
ଅସୁର ସଇନବଳ ଦେଖସିଲେ ବେଗେ ।
ମହିଷାସୁର ଅଇଲେ କହ ମୋର ଆଗେ ॥
ଗିରିଶିଖେ ଉଠେ ଯାଇଁ ସେ ରଣବେତାଳୀ ।
ନିରେଖି ଗୃହେଁ ସେ ଅସୁରଙ୍କୁ ପରକଳ ॥
ଦେଖିଲ ଯେ ଜଣେ୨ ମୈଷାସୁର ନାହିଁ ।
ଦୁର୍ଗାଙ୍କର ଶୀଘ୍ରମୁରେ ବେଗେ ଯାଇଁ କହି ॥
ନଗ୍ରରକ୍ଷା ପାଳକ ଗୋ ଶୂନ୍ୟ ଉପଶୂନ୍ୟ ।
ଏ ଦୁହେଁ ଗୋ ବର୍ତ୍ତିଥିଲେ ଧରଣ ଜୀବନ ॥
ଏ ପ୍ରାଣେ ଥିଲାକୁ ଅଇଲେକ ଆଷ୍ଟ ଘେନି ।
ଅଜ୍ଞାଦିଅ ମାରବୁଁ ଏ ସକଳ ସଇନ ॥
ଶୁଣି ଦୁର୍ଗା ହକାରି କୁଠାରୀ ଉଗ୍ରତାସୀ ।
ଯଟଶୋବନ୍ତୀ ଅସ୍ଥିଳାସ୍ୟୀ ଅମ୍ବିକାସ୍ୟୀ ହାସ୍ୟ ॥
ବୋଇଲେ ତୁମ୍ଭେପାଶହେଁ ଯାଅ ଗୋ ସମରେ ।
ମାର ଦାନବବଳ ଗୋ ନ ଥାନ୍ତୁ ଏଥିରେ ॥
ଏ ଅଜ୍ଞା ପାଇଣ ସେହୁ ହୋଇ ଊର୍ଦ୍ଧ୍ୱ ଦୃଷ୍ଟି ।
କରେ କୃପାଣ ଧରିଣ ସମରରେ ଉଠି ॥
ଶୂନ୍ୟରେ ଗମିଲେ ସେହୁ ବିସ୍ତାରଣ ପାଷ୍ଟ ।
ଏକ ନିମିଷକେ ତିନିଭୁବନ ସେ ଘୋଟ ॥
ଅସୁରମାନଙ୍କର ଯେ ବଢ଼ାଇ ପ୍ରତାପ ।
ଦେବୀମାନଙ୍କୁ ଦେଖିଣ ଥାଇଲେ କୋଣପ ॥
ଦେବୀଏ ଦୈତ୍ୟଙ୍କ ପରେ ପଡ଼ିଲେକ ଗର୍ଜି ।
କେଶରୀ ଦେଖନ୍ତେ ଯେସନ୍ତେ ବନଜୀବେ ଭଜି ॥
ରେରେକାର କରି ପାଡ଼ନ୍ତି ସେ ଘୋରହାକ ।
ବ୍ରହ୍ମାଣ୍ଡ ପୂରିଲା ଡାକେଣୀଙ୍କର ହାକ ॥
ଧାଇଁଣ ଦାନବେ ତାଙ୍କୁ କଲେ ଶର ବୃଷ୍ଟି ।
ନାଗଚ ଛଳିଲେ ପଡ଼ ଦେବୀଙ୍କର ଦୃଷ୍ଟି ॥
ଧାଇଁ ଦେବୀ ଅସୁରଙ୍କ ଧରନ୍ତି ଅକର୍ଷି ।
ନଖନ ବିଦାରି ପ୍ରାଣ ପକାବନ୍ତି ନାଶ ॥
ହସ୍ତୀ ପିଞ୍ଜରକୁ ଧରନ୍ତି ସେ ବେନିହସ୍ତେ ।
ମୋଡ଼ି ବେନିଖଣ୍ଡ କରିଦ୍ୟନ୍ତି କ୍ଷଣମାତ୍ରେ ॥
ଶିରେ ନଉଡ଼ନ୍ତି ନେଇ ଦୈତ୍ୟଙ୍କର ଶୋଣି ।
ଯେସନେକ ବହୁଯଏ ସ୍ନାନ ହେବାପାଣି ॥

ମୁଣ୍ଡ ମୋଡ଼ ଗଳାରେ ଲମ୍ବାନ୍ତି କରି ମାଳ ।
ନାଚନ୍ତି ସେ ରଣରଙ୍ଗେ କଉତୁକେ ଖେଳ ॥
ମାରନ୍ତି ଯେ ଶର ଶକ୍ତି ଗଦା ମୁଦ୍ଗର ।
ପର୍ବତ ଉପାଡ଼ି କରି ପେଷନ୍ତି ଅସୁର ॥
ନିର୍ଘାତ ପ୍ରାୟେ ପଡ଼ନ୍ତି ଦେବୀଙ୍କର ମୁଣ୍ଡ ।
ଭୀଷଣ ଶସ୍ତ୍ରମାନେ ଯେ ହୁଅନ୍ତି ଖଣ୍ଡ ଖଣ୍ଡ ॥
ଅଗ୍ନି ଶର ପଡ଼େ ଯେସନେ ତୃଣ ଉପରେ ।
ଦେବୀଙ୍କର ଦେହେ ପଡ଼ି ଶସ୍ତ୍ର ହୋନ୍ତି ଧ୍ୱଂସି ॥
ଶସ୍ତ୍ର ଭାଜନ୍ତେ ଅସୁରେ ହୋନ୍ତି ଶୂନ୍ୟହସ୍ତ ।
ମାଲ ବନ୍ଧାଣ କରି ସେ ପଶୁଦ୍ଧନ୍ତି ଯୂଥ ॥
ପାଦ ବଢ଼ାଇଲେ କେହୁ ମାରେ ନେଇ ବଢ଼ା ।
କେ ମୁଷ୍ଟିରେ ମାରେ କେହୁ ପ୍ରହାରଇ ଖୁନ୍ଦ ॥
କେହୁ ଶିର ଚୂର୍ଣ୍ଣ ହୋଏ ଯାର ଦେହେ ପଡ଼ ।
ଦନ୍ତାଘାତେ ତାହାର ସେ ରୋମ କି ଉପୁଡ଼ ॥
ଦୈତ୍ୟେ ମୁଖ ଉଚ୍ଚାନ୍ତେ ସେ ଧରନ୍ତି ଦଶନ୍ତି ।
କେନଭୁଜ ଧରି ସେହୁ କରନ୍ତି ଦ୍ୱିଖଣ୍ଡି ॥
ରୁଧିର ପିବନ୍ତି ଦେବୀ ଲୁହାଇଣ ମୁହିଁ ।
ମହା ବିକଟାକ୍ଷୀ ରଙ୍ଗବର୍ଣ୍ଣ ତାଙ୍କ ଦେହ ॥
ଚରଣ ଧରି ଦୈତ୍ୟଙ୍କୁ ଫିଙ୍ଗନ୍ତି ଆକାଶେ ।
ଅସ୍ଥି ଚର୍ମ ମାଂସ କରଦ୍ୟନ୍ତି ଏକ ଗ୍ରାସେ ॥
ବାଜେ ଶଙ୍ଖଘୋଷ ବୀର ଦାଉଣ୍ଡି ମର୍ଦ୍ଦଳ ।
ନର୍ତ୍ତ ମାଂସ ଭୁଞ୍ଜନ୍ତି ନାଚନ୍ତି କୁତୂହଳ ॥
ଗାବନ୍ତି ଗୀତ ସେ ରଣ ରଙ୍ଗେ ହୋଇ ଖେଳ
କ୍ଷଣେ କ୍ଷଣେ ଗୀତ ଗାନ୍ତି କ୍ଷଣେ ହୁଳହୁଳି ॥
ଅତି ଅଶ୍ଚର୍ଯ୍ୟରେ ସେହୁ କରନ୍ତି ସଂଗ୍ରାମ ।
କହିଲେ ନ ସରେ ତାହାଙ୍କର ମହାତମ ॥
ରଣ ରଙ୍ଗରେ ନିର୍ଭୟ ଦେବୀ ମହାମାୟୀ ।
ଜଗତ ଅନ୍ତ କାରଣୀ ସେ ମୁକ୍ତିଗତିଦାୟୀ ॥
ନାହିଁ ନାହିଁ ଚଣ୍ଡୀଯୁଦ୍ଧ ଶୁଣନ୍ତେ ଆପଦ ।
ଜ୍ୱରରୋଗ ନାଶ ଯାଇ ନ ପଡ଼େ ପ୍ରମାଦ ॥
ଚଣ୍ଡୀଯୁଦ୍ଧ ଶୁଣେ ଯେଉଁ ନର ଏକଚିତ୍ତେ ।
ଭଗବତୀ ପୁରାଣ ଏ ପ୍ରସିଦ୍ଧ ଜଗତେ ॥
ପରମାର୍ଥ ପୁଣ ଗତି ପାଅନ୍ତି ଅନନ୍ଦ ।
ଅହେ ବୁଧଜନେ ଭାବ ହୃଦରେ ଗୋବିନ୍ଦ ॥
ନମାମି ଗୋବିନ୍ଦ ବାଞ୍ଛାଦାତା ଶିରୋମଣି ।
ଧନ ପୁତ୍ର ଲଭ ନରେ ଚଣ୍ଡୀପାଠ ଶୁଣି ॥

ଶ୍ରୀ ଦୁର୍ଗା ଦେବୀଙ୍କର ଯେ ଚରଣାରବିନ୍ଦେ ।
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ସଦା ବନ୍ଦେ ॥
ଶୁଣି ଆନନ୍ଦ ହୁଅଇ ଅଭିମନ୍ୟୁ ବଣ୍ଣି ।
ଧର୍ମ ଅର୍ଥ କାମ ମୋକ୍ଷ ଏଥିଁ ସବୁ ଅଛି ॥
ତୁମ୍ଭେ ଶୁକ ବ୍ରହ୍ମବେତ୍ତା ମୋତେ ଉଦ୍ଧରନ୍ତା ।
ପାପକୁ ମୋହର ଅନ୍ତ ନାହିଁ ନା ଖଣ୍ଡନ୍ତା ॥
ପିଷବା ମୋହର ଯାନେ ଅଜ୍ଞାନର ପାପ ।
ଏଣେ ଭାଙ୍ଗିଲାଟି ସବୁ ପାପଙ୍କର ଦର୍ପ ॥
ଅମୃତ ନଶାତ ବୁହାଇଲ ବ୍ୟାସ ସୁତ ।
ସଂକ୍ଷେପେଣ କହ ମୋତେ ସଂଗ୍ରାମ ଚରିତ ॥
ରାଜାର ବଚନେ କହନ୍ତି ସେ ବ୍ରହ୍ମସୁତ ।
ଶୁଣ ସାବଧାନେ ଅଭିମନ୍ୟୁର ସନ୍ତତ ॥
ମହାରଣେ ପଡ଼ିଲେ ସେ ଦଶଲକ୍ଷ ଯୋଦ୍ଧା ।
ରକ୍ତମାଂସ ଭକ୍ଷିଲେକ ଦେବୀ ପାଇ କ୍ଷୁଧା ॥
ଖଡ୍ଗେ ନ ହାଣିଲେ ସେ ଯେ ନ ବନ୍ଧିଲେ ବାଣ
ମାଂସ ଖାଇଲେ କରି ସେ କଉତୁକ ରଣ ॥
ଶୂନ୍ୟ ଉପଶୂନ୍ୟ ନିଜ ସୈନ୍ୟ ନାଶ ଦେଖି ।
ମହାକୋପ କଲେ ଦୈତ୍ୟଗଣେ ଉପଲକ୍ଷି ॥
ଦେବୀଙ୍କ ଚରଣ ବିପୁଳ ଯେ ଉଗ୍ରତାର ।
ଧାଇଁଯାଇଁ ଅକ୍ଷୋଭିଲେ ସେ ଦେବୀ ଅସୁର ॥
ଲୁହାର ନସ ରଥେ ରଥେ ଅଛନ୍ତି ଯେ ଚଢ଼ି ।
ରଥରେ ଯୋଚା ଅଛନ୍ତି ଗଧ ଅଶ୍ୱ ଗୃଧ ॥
ରଥ ଦେଖି କୋପେ ଧାଇଁଲେକ ଦେବୀଦେବୀ ।
ଉପରୁ ପାଟି ଅକାଶ ତଳପାଟି ଭୂବ ॥
ନବଯୋଜନ ବିସ୍ତାର ଯେଉଁ ଲୁହା ରଥ ।
ଏକ ଗ୍ରାସରେ ଗିଳିଲେ ଦେବୀ ସାମରଥ ॥
ରଥ ଛାଡ଼ି ପଳାଇଲେ ଦୈତ୍ୟଭାଇ ଦେନ ।
ଧାଇଁଣ ପିଟିଲେ ଲୌହ ସାର ଗଦା ସେନ ॥
କୋଟିଏକ ପଡ଼ିଲା ତ ଦେବୀଙ୍କର ମୁଣ୍ଡ ।
ଗଦାବର ପଡ଼ିକରି ହେଲା ନପି ଚୂର୍ଣ୍ଣ ॥
ରେ ରେ କାର କରି ଉଠିଲେକ ଯୋଗମଣୀ ।
ବଜ୍ରକର୍ଣ୍ଣ କଟାରରେ ତାଙ୍କ ଶିର ହାଣି ॥
ଶିର ଛାଡ଼ି ଦୈତ୍ୟଙ୍କର ପଡ଼ିଲାକ କ୍ଷିତି ।
ପୁଣିହିଁ ଗର୍ଭରୁ ମୁଣ୍ଡେ ହେଲା ଉତପତ୍ତି ॥
ପୁଣିହିଁ ଶସ୍ତ୍ର ଧରିଲେ ସେ ଦେବୀ ଦନୁଜେ ।
ସ୍ୱର୍ଗେ ନେଇ ଶର ଲଗାଇଲେ ମହାତେଜେ ॥

ମୁଷଳ ଭୁଷଣ୍ଡି ପିଟନ୍ତି ସେ ମହାବଳୀ ।
ତ୍ରିପୁରା ପରେ ପିଟନ୍ତି ଦୁର୍ଦ୍ଧେ ହୋଇ ଟମଳ ॥
ମୁଦଳ ଯେ ଚୂର୍ଣ୍ଣ ଗଲା ଦେବୀଙ୍କର ଦାଟେ ।
କୁଠାର ହାଣିଲେ ନେଇ ତାହାଙ୍କର ମଥେ ॥
ସେହି ଶିର ଭୂମିରେଣ ପଡ଼ିଲାକ ଟଳି ।
କବନ୍ଧ ହୋଇ ରଣରେ କରେ ମହାକେଳି ॥
ଅହୋ ପରୀକ୍ଷିତ ରାଜା ଶୁଣ ଏକ ଚରିତ୍ର ।
ସେହୁ ଦୁଷ୍ଟପଦ କଥା ନ ସରେ କହନ୍ତେ ॥
ଲେଖିକର ତାହା କେହୁ କରିବାକ ଶେଷ ।
ଶୁଣ ପରୀକ୍ଷିତ ରାଜା ଅତ୍ୟନ୍ତ ରହସ୍ୟ ॥
ପୁଣ ହୁଁକାର ଶବଦ କଲେ ସେ ଭୂପତ ।
ଗର୍ଭ ଭିତରୁ ପ୍ରତ୍ୟେକ ହୋଇଲା ସମ୍ଭୂତ ॥
ମହା ବିଶ୍ୱରୂପ ପ୍ରକାଶିଲେ ସେ ଦନୁଜ ।
ତାହାଙ୍କୁ ଦେଖିଣ ଦେବୀ ହୋଇଲେ ଆଶ୍ଚର୍ଯ୍ୟ ॥
ମାରନ୍ତି ସେ ଛେଲ ଚକ୍ର ଗଦା ମୁଦ୍‌ଗର ।
ଦେବୀଙ୍କ ଦେହରେ ବାଜ ହେଉଛନ୍ତି ଚୂର ॥
ଦେବୀମାନେ ହୋଇଣ ଯେ ଅତ୍ୟନ୍ତ ପ୍ରଚଣ୍ଡ ।
ଶିର ଛେଦୁଛନ୍ତି ରହୁଅଛି ସେହୁ ପିଣ୍ଡ ॥
ଶତବାର ଶିର ଛେଦୁଛନ୍ତି ତାହାଙ୍କର ।
ପୁନଃ ପୁନ ହୃଦୟରୁ ବାହାରଇ ଶିର ॥
ହେ ପରୀକ୍ଷ ଯେତେ ଶିର ପଡ଼ିଲା ସେ ରଣ ।
ସେ ଶିରମାନେ ହୋଇଲେ ଅତ୍ୟନ୍ତ ଭୀଷଣ ॥
ଏକ ଜନରୁ ଯେ ଲକ୍ଷେ କୋଟି ଶିର ହୁଏ ।
ସମରେ ବିମୁଖ ପାଇଲେକ ମହାମାୟେ ॥
ବସ୍ତୁର କରନ୍ତି କେତେ ମରିବେ ଅସୁର ।
ସ୍ୱାଙ୍କର ବିନାଶ ହେବ ଏ ସଚରାଚର ॥
ପ୍ରେତାଶୁଣୀ ନାମରେ ଯେ ଏକଇ ମୂରତି ।
ତ୍ରିପୁରାର ଅଗେ ଉଭା ହେଲା ସେ ତତ୍ପତ ॥
ସେ ବୋଇଲା ଗୋ ତ୍ରିପୁରା ଦୁଃଖ କ୍ଷମା କରୁ ।
ଏ ଅସ୍ତ୍ରେ ଚୂଡ ଫଳ ଏହା ନ ବସ୍ତୁରୁ ॥
ଅମର କଣ୍ଠରୁ ଏ ଦୁହେଁ ଉତପତ୍ତି ।
ଜପାସୁର ଦାନବର ଅଟନ୍ତି ସନ୍ତତି ॥
ଜପାସୁର ଦାନବ ଯେ ହେଲା ମହାତପୀ ।
ରଣସ୍ତମ୍ଭ ଶୈଳେ ତପ କରଇ ଅଦ୍ୟାପି ॥
ଜଳ ପ୍ରସାର ବ୍ରହ୍ମାଙ୍କ ଧ୍ୟାନ କରୁଥାଇ ।
ପବନ ଦେବତା ନିତ୍ୟ ଆହାର ଦିଅଇ ॥
ଯିଏ ଦ୍ରବ୍ୟ ଅଛି ତାର ହସ୍ତରେ ପଡ଼ଇ ।
କ୍ଷୁଧାବେଳେ ତାହା ସେହୁ ଆହାର କରଇ ॥
ଗର୍ଭ ଭିତରେ ସ୍ତ୍ରୀଙ୍କର ଅଛି ଜ୍ୟୋତି ଲିଙ୍ଗ ।
ପବନ ଦେବତା ହୋଇଲ ପାଏ ତାର ଅଙ୍ଗ ॥
ଶିରରୂପୀ ହୋଇ ସ୍ତ୍ରୀଙ୍କ ଗର୍ଭେ ରହିଅଛି ।
ଶିର ଛିଡ଼ନ୍ତେ ତହିଁରୁ ଶିର ବାହାରୁଛି ॥
ଗର୍ଭରୁ ଶିର ସ୍ତ୍ରୀଙ୍କର ଯେବେ ଯିବ ନାଶ ।
ତେବେଟି ଏ ଦନୁଜ ଗୋ ହୋଇବେ ବିନାଶ ॥
କରେ ଅଜଗବ ଧନୁ ଧର ଗୋ ତ୍ରିପୁରା ।
ବଜ୍ରଶକ୍ତି ଘେନ ଏବେ ଶସ୍ତ୍ର ମହାଘୋର ॥
ନାଭିରେ ପଡ଼ିବ ଯଇଁ ଏ ଶୂଳ ଶକତି ।
ହୃଦରେ ପଡ଼ିବ ଅଗୋ ବଜ୍ର ଯେ ଶକତି ॥
ବ୍ରହ୍ମ ଶକତି ପଡ଼ିବ ପୁଣି କଣ୍ଠତଟେ ।
ଏତେ ପ୍ରକାରେ ମରିବେ ଏ ଦାନବ ଦର୍ପିଷ୍ଟେ ॥
ଏ ତିନି ଶସ୍ତ୍ର ଯେ ଥିବ ତିନିଠାରେ ଫୁଟି ।
ଦାବାନଳ ଶରେ ଯେବେ ସ୍ତ୍ରୀଙ୍କ ଶିର କାଟି ॥
ପିତାର ହାତେ ପଡ଼ିବ ଯାଇଁ ସେହି ଶିର ।
ଆହାର କରିବ ତାହା ରକ୍ଷ ମହାବୀର ॥
ଦାବାନଳ ଅଗ୍ନି ଅଛି ତା ଗର୍ଭ ଭିତର ।
ତେବେ ତା ଉଦରେ ଦଗ୍ଧ ହୋଇଯିବ ଶିର ।
ପ୍ରେତାଶୁଣୀ କହିଲା ଏପ୍ରାୟ ମୃତ୍ୟୁଭେଦ ।
ଏମନ୍ତେ ସେ ଦାନବଙ୍କୁ ପଡ଼ିବ ପ୍ରମାଦ ॥
ଶୁଣି ବ୍ରହ୍ମାଙ୍କୁ ମାଗିଲେ ସେ ବ୍ରହ୍ମ ଶକତି ।
ପିତାମହ ଆଣି ତାଙ୍କ କରେ ଦେଲେ ଧାତି ॥
ଈଶ୍ୱରଙ୍କୁ ମାଗିଲେ ଯେ ତ୍ରିଶୂଳ ଶକତି ।
ତ୍ରିପୁରା କରେ ତା ଆଣିଦେଲେ ପଶୁପତି ॥
ଶତଧାର ବଜ୍ର ଆଣି ଦେଲେ ସୁରପତି ।
ଅଜଗବ ଧନୁବର ଯୋଗ୍ୟ ଦେବୀ ଧାତି ॥
ଶୁଣ ହେ ପରୀକ୍ଷ ରାଜା ଦେବୀର ଚରିତ ।
ମନରୁ ଅଧିକ ଗରୁ ଯେଉଁ ତିନି ଶସ୍ତ୍ର ॥
ଏକାବେଳେ ତିନିଶସ୍ତ୍ର କେ ଯୋଡି ପାରିବ ।
ଏମନ୍ତ ଚରିତ ନାହିଁ ନ ଥିଲା ନୋହିବ ॥
ସେ ତ୍ରିପୁରା ପ୍ରତ୍ୟକ୍ଷରେ ଅଟେ ତ୍ରିପୁରାର ।
ଉଗ୍ରତାରା ପ୍ରତ୍ୟକ୍ଷରେ ପିତାମହ ସର ॥
ତିନିଶକ୍ତିକି ତ୍ରିପୁରା ଯୋଡରେ ଯେତେବେଳେ ।
କର୍ମ୍ମ ରହି ନ ପାରିଲେ ଗଗନ ମଣ୍ଡଳେ ॥

ସେହିକ୍ଷଣି ପୃଥ୍ୱୀ ତେଜ ବାୟୁ ଜଳାକାଶ ।
ପଞ୍ଚଧାତୁ ଏକକଲା ସେହି ମହାରସ ॥
ଚନସ୍ତ୍ର ଯୋଚାନ୍ତେ ତ୍ରିପୁର ଗୋସାମଣୀ ।
ଅଦ୍ଭୁତେ ଶୁଭିଲା ଯେ ଅକାଶରୁ ବାଣୀ ॥
ମାଗୋ ଏ ତନଘକତ ପଡ଼ ଦୈତ୍ୟଦେହେ ।
ପୃଥ୍ୱୀରେ ପଡ଼ିଲେ ପୃଥ୍ୱୀ ନାଶ ଯିବ ହାଦେ ॥
ଅକାଶରୁ ଏହି ବାଣୀ ଶୁଣି ମହାମାୟେ ।
ତନଶସ୍ତ୍ର ଛେଦିଲେ ସେ ଅସୁରଙ୍କ କାୟେ ॥
ଶସ୍ତ୍ରକୁ ବୋଇଲେ ପଡ଼ ଅସୁର ଉପର ।
ପୃଷ୍ଠ ରହିବଟି ତୁମ୍ଭେ ନ ହେବ ବାହାର ॥
ମନଭେଷ୍ଣ ଶର ସେହି ଅଂତ୍ର ତନଦେହି ।
ଯାଇଣ ପଡ଼ିଲେ ବେଗେ ଅସୁରଙ୍କ ଦେହେ ॥
ନାଭିରେ ରହିଲା ଶୁଳ ଶକତ ଯେ ପୃଷ୍ଠ ।
ହୃଦେ ପଡ଼ ବଜ୍ର ଶକ୍ତି ନିକଳ ଲେଉଟି ॥
ବ୍ରହ୍ମ ଶକତ ଭେଦି ଯାଇଁ କଣ୍ଠତଟେ ।
ଦାବାନଳ ଶରରେ ଯେ ତାଙ୍କ ଶିର ତୁଟେ ॥
ପବନା ଶର ସେ ଶିର ଉଡ଼ାଇଣ ନେଲା ।
ଜପାସ୍ତ୍ର ହାତେ ନେଇ ଶୀଘ୍ର ପକାଇଲା ॥
ଜାଣିଲା ବାୟୁ ଅହାର ଦେଲାର ସେପର ।
ଗ୍ରାସକଲା ଥାତକାରେ ଗଣ୍ଡୂଷ ସେ କର ॥
ଦାବାନଳେ ପଡ଼ଣ ସେ ହୋଇଲା ଦହିଯ୍ୟ ।
ଉପାୟରେ ନାଶଗଲେ ସେ ବେନି ଦନୁଜ ॥
ଶୂନ୍ୟ ଉପଶୂନ୍ୟ ଦୁହେଁ ନାଶଗଲେ ଏଣେ ।
ଦେଖି ଅନେକ ଅନନ୍ଦ ହେଲେ ଦେବଗଣେ ॥
ଜୟ ମାତା ବୃନ୍ଦାରକଗଣ ପରଂବନ୍ଦୁ ।
ମହୀ ମଣ୍ଡଳ ମଧ୍ୟରେ ମହିମା ତୋ ସାଧୁ ॥
ପିତା ଯାର ମହିମା ନ ଜାଣେ ଅନ୍ତକର ।
ମୁଁ କେମନ୍ତେ ଜାଣିବ ନର ଦେହେ ଅବତର ॥
ଯମଦଣ୍ଡୁ ବଞ୍ଚିବ ସେ ଦେବୀଙ୍କ ପ୍ରସାଦେ ।
ସେବେ ଶୁଦ୍ର ମୁନି ତ୍ରିପୁରାର ପଦ୍ମପାଦେ ॥
ପଢନ୍ତ ବସି ପୁରାଣ କହେ ଶୁକ ବ୍ରହ୍ମା ।
ଅସଂଖ୍ୟ ଅଟଇ ଚଣ୍ଡୀ ଯୁଦ୍ଧର ମହିମା ॥
ଶୂନ୍ୟ ଉପଶୂନ୍ୟ ବଧ ଅନ୍ତଭେଣ କଥା ।
ମହିଷାସୁର ଯୁଦ୍ଧରେ ହୋଇଲା ବାରତା ॥
ଶୁଣି ବୋଲେ ଅଉ ପ୍ରାଣେ କସ ପ୍ରୟୋଜନ ।
ଦଶ ବର୍ଷ ଖାଇବ ମୋ ଯାଉ ଏ ଜୀବନ ।
ଶତେ ପଦ୍ମ ସୈନ୍ୟ ଥିଲେ ଏକୁଁ ଏକ ଜଣା ।
ନର ନାଗ ଲୋକଙ୍କୁ ସେ ନ କରି ଗଣନା ॥
ଏକକ୍ଷୌଣୀ ଏକ କୋଟି ପଦାତି ଯେ ଥିଲେ ।
ଚଉଦ ଘନ ସଂଗ୍ରାମେ ଏତେକ ପଡ଼ିଲେ ॥
ପୃଥିବୀ ସବୁ ଯୋଡ଼ନ୍ତି ଯେତେ ସୈନ୍ୟବଳ ।
ଅସ୍ଥି ମାଂସ ରକତ ଯେ ନ ପଡ଼ିଲା ତଳ ॥
ପୁଣି ମନେ ବିଗୁଣିଣ ବୋଇଲା ମହିଷାସୁର ।
ଏକା ଯାଇଁ ଆଜ ମୁହିଁ କରିବ ସମର ।
ଏତେ କହି ଅନ୍ତଃପୁରୁ ବାହାର ଦନୁଜ ।
ଧୂମ୍ରଲୋଚନକୁ ବୋଲେ ରଥ ମୋର ସାଜ ॥
ସ୍ୱର୍ଗୁଁ ଅଣିଥିଲା ସୂର୍ଯ୍ୟଙ୍କୁ ଯେ ବିମାନ ।
ମଣ୍ଡନ କରେ ସାରଥି ସେ ଧୂମ୍ରଲୋଚନ ॥
ସ୍ୱର୍ଗ ଭଣ୍ଡାର ଦ୍ରବ୍ୟ ସେ ରଥେ ଲାଗି ଅଛି ।
ତାହାକୁ ବର୍ଣ୍ଣିବାକୁ ବା ଶକ୍ତି କାର ଅଛି ॥
ସୈନ୍ୟ ଚଳଇ ସହିତ ଦଗ୍ଧବ ମନେ ।
ଷଣ୍ଡେକେହିଲୋକେବ୍ୟ ଚଳେ ବାହନ ବସ୍ତ୍ରେ ॥
ବଜ୍ରକେତନ ମୁକୁଟ ଅଭରଣ ମାଥେ ।
କଲା ମହିଷାସୁର ସ୍ୱର୍ଣ୍ଣ ଖଞ୍ଜିତ ମର୍ତ୍ତେ ॥
ଶିରେ ପୀନଦ୍ଧିମା ଶୋହେ ଲଲାଟରେ ଟୋପି ।
ପଞ୍ଚପଦ୍ମ ସ୍ୱର୍ଣ୍ଣ ଯେ ମାଣିକ୍ୟ ନବକୋଟି ॥
କୋଟି ସୂର୍ଯ୍ୟ ରଶ୍ମି କଣି ଯେଉଁ ରହୁଚେଳେ ।
ସେ ମଣି ମୁକୁଟ ତାର ଶିରରେ ଭସଲେ ॥
କର୍ଣ୍ଣେ କର୍ଣ୍ଣାଞ୍ଚଳ ତମ ବିଦାରଣ ମଣି ।
କଣ୍ଠେ ଝରଜଳ ରହି ସୂର୍ଯ୍ୟରଶ୍ମି ଜାଣି ॥
ଗଜମୁକୁତାର ମାଳ ଶୋହେ କଣ୍ଠତଟେ ।
ଲମ୍ବିତ ଯେ ଉଭଶିଶ ବକ୍ଷସ୍ଥଳ ପୁଟେ ॥
ପୁଣ ସ୍ୱର୍ଣ୍ଣ ମାଣିକ୍ୟରେ ଯୁକ୍ତ ଗ୍ରପଥରେ ।
ବେନି ଭୁଜରେ ବାନ୍ଧିଛି ଅଭରଣ କର ॥
ମର୍କତ ମଣି ତୁଲ୍ୟରେ ହାର ଗ୍ରୀବ ଶୋଭି ॥
ସରଳବେନିଶୋଟି ଯେ ଶୋଭେ ତା କଟିଟି ॥
ଜଡ଼ିତ ରହି ନାୟକ ସେ ଅଙ୍ଗୁଳି ମୁଦ ।
ଏକ ଶୟାରେ ତାହାର ଖଞ୍ଜି ସପ୍ତଦିଧି ॥
ବେନି ପାଦରେ ରତନ ନୂପୁର ତା ଶୋହେ ।
ଦିବ୍ୟ ଅବତାର ସେହି ମହିଷାସୁର ସହେ ॥
ଶ୍ରୀ ଭୁଜରେ ଶୋହେ ଧନୁ ବାମ ଅଦ୍ୟାବଳି ।
କୋଟିଏ ଲକ୍ଷ ବଳକୁ ସଦସ୍ତ୍ରେ ଭସ୍ମ ।

ଧନୁରେ ଶୋଭେ ମାଣିକ୍ୟ ମୁକ୍ତା ଗ୍ରନ୍ଥି ଗ୍ରନ୍ଥି ।
ବାଳଅର୍କ ଜାଣି ସେହି ଧନୁ ତେଜ ରାଜି ॥
ଅସୁରେ ପଦ୍ମ ଉପରେ ମୁକ୍ତା ପନ୍ତ ପନ୍ତ ।
ହାର ମାଳା ତହିଁ ଧାତୁଗଣରେ ଝଟକନ୍ତ ॥
ଦେବଙ୍କ ଦୁର୍ଲଭ ଯେଉଁ ଧନୁର ମହିମା ।
ଯାହା ଜାତ କରଅଛି କୁଶୀକରୁ ବ୍ରହ୍ମା ॥
ଅତଏବେ ଥୋଇଥିଲା କୁବେର ଭଣ୍ଡାରେ ।
ତହୁଁ ଶୁମ୍ଭ ନିଶୁମ୍ଭ ଯେ ନେଲେ ବଳାତ୍କାରେ ॥
ତେଣେ ଜିଣିଲେ ତେତିଶ କୋଟି ଦେବତାଙ୍କୁ ।
ସେ ଧନୁ ଦେଲେ ଯେ ନେଇ ମହିଷାସୁରଜାଙ୍କୁ ॥
ମେଖଳା ଧନୁ ଜାଣି ସେ ଧନୁର ସଙ୍କେତ ।
ସେ ଧନୁକୁ ମୈଷାସୁର ଧରେ ନିଜ ହସ୍ତ ॥
ପ୍ରସିଦ୍ଧ ତେତିଶ କୋଟି ଅପାଲଟ ଶର ।
ମହା ମୁଦ୍ଗର ବାଛି ବସିଲା ରଥର ॥
ସହସ୍ରେ ଗୁରୁଜ ପଞ୍ଚଷଠିକୋଟି ଖଣ୍ଡା ।
ଜଗତରେ ଅଜେୟେ ସେ ଦୈତ୍ୟକୁଳଷଣ୍ଢା ॥
ଶୁଣ ପରୀକ୍ଷିତ ମୈଷାସୁର ଭୁଜବଳେ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଜିଣିଥିବ ହେଲେ ॥
ତାହା ସମ୍ପତ୍ତି ବର୍ଣ୍ଣିବ କେଉଁ ରବତଳେ ।
ସପ୍ତସିନ୍ଧୁ ଯେହ୍ନେ କରଗାରେ ଏକତଳେ ॥
ମହା ସମ୍ଭ୍ରମରେ ସଜହେଲା ସାରମଣି ।
ରଥରେ ବିଜେ କରିଲା ବଜ୍ର ଦଣ୍ଡପାଣି ॥
ନବରୁ ବାହାର ହେଲ ରକ୍ଷକୁଳ ବ୍ରହ୍ମ ।
ରଥେ ବିଜେ କରନ୍ତେଣ ଉଭେ ଧଣେ ଧୂମ୍ର ॥
ତପତାଗ୍ନି ସହ ବାତ ବହଇ ଉତ୍ତରେ ।
କାଳାନଳ ଜ୍ୟୋତକୋଟି ଗଜେ ମଧ୍ୟପୁରେ ॥
କନ୍ୟାମାସ ଶୁକ୍ଳ ମହାଅଷ୍ଟମୀର ଦିନ ।
ଚଣ୍ଡଦଣ୍ଡ ମୂଳାନକ୍ଷତ୍ର ସେ ବିଦ୍ୟମାନ ॥
ମୂଳାନକ୍ଷ ପରେ ପୂର୍ବାଷାଢ଼ା ଯେ ନକ୍ଷତ୍ର ।
ଏ ଯୋଗରେ ମୈଷାସୁର ବିଜେକଲା ରଥ ॥
ପାପଗ୍ରହମାନ ଲଗ୍ନପଞ୍ଚମରେ ରହି ।
ମହିଷା ଦକ୍ଷିଣମୂର୍ତ୍ତି ହୋଇଣ ଗମଇ ॥
ବଷ୍ଟିକରଣ ଯେ ଅତଗଣ୍ଡ ନାମେ ଯୋଗ ।
ଏକଜଣ୍ଠ ମହିଷାସୁର ସମରେଣ ବେଗ ॥
ତାହାର ରଥ ଯେ ଧୂମ୍ରଲୋଚନ ସାରଥି ।
କାମରୂପୀ ଦାନବ ଟେ ତାହିଁ ଚନ୍ଦ୍ରା ସାତ ॥

ଯେସନେ ଧଣେ ଲୋହିତ ଦହନର ଶିଖା ।
ବେଢ଼ି ଚରଣ ଧଇଲେ ଦାନବର ଏକା ॥
ପବନୁ ବେଗ କରି ସେ ବାହଇ ବିମାନ ।
ଚଣ୍ଡଦଣ୍ଡେ ହେଲା ରହୁଛିରେ ସନ୍ନିଧାନ ॥
ଦୁର୍ଗାର ସମ୍ମୁଖେ କହନ୍ତି ଯେ ନାରାୟଣୀ ।
ମୈଷାସୁର ଦାନବ ଗୋ ସମରେ ପଳଣି ॥
ସଙ୍ଗେ ନାହିଁ ତାହାର ଗୋ ଆଉ ସୈନ୍ୟ ସେଣୀ ।
ବିମାନ ଅରୋହି ଅସେ ମୈଷାସୁର ଏକା ॥
ମହିଷାସୁର ହୋଇଲା ଯହୁଁ ସନ୍ନିଧାନେ ।
ଦୁର୍ଗା ଦେଖା ବିଜେ କଲେ କ୍ଷେତ୍ରସ୍ଥ ବିମାନେ ॥
ଅକାରେ ଗଙ୍ଗା ନାମ ଦେବଗଣ ଚଣ୍ଡ ।
ସୂର୍ଯ୍ୟକରୁ ତେଜଶ୍ରୀ ଏ ଯାନ ଦୁଇ ଭେଟ ॥
ଜଗଜ୍ଜନନୀ ମୋହିନୀ ଦୁର୍ଗାରୂପ ଦେଖି ।
ମୈଷାସୁରଦାନବ ଯେ କହେ ହୋଇ କୋପୀ ॥
ଅଲ୍ପ ତ ହୋଇ ଅଇଲୁ ତୁ କେବଣ ଦେଶୁଁ ।
ଏ ରୂପ ଦେଖାଇ ମୋର ସୈନ୍ୟଙ୍କୁ ବିନାଶୁ ।
ଏଡ଼େ ଏଡ଼େ ଯୋଦ୍ଧା ମୋର ମାଇଲୁ ଅସାଢ଼େ ।
ବିଶ୍ୱାସଘାତକୀ ଅଟେ ଅଟୁ ତୁହି ଏଡ଼େ ॥
ପୁଣ ପୁଣ ଦାନବ ସେ କହେ ଗଳଗାଜ ।
ଅଜ ତୋହର ମାଂସ ଲୋ ଖାଇବ ମୁଁ ଭୁଞ୍ଜ ॥
ତୋହର ରୁଧିରେ ଅଜ କରିବ ମୁଁ ସ୍ନାନ ।
ତେବେ ପାଶୋରିବ ସେନାଙ୍କର ଦୁଃଖମାନ ॥
ମୈଷାସୁରର ଏ ବାଣୀ ଶୁଣି ମହାମାୟୀ ।
କହନ୍ତି କର୍କଶ ବାକ୍ୟ ହୋଇଣ ନିର୍ଭୟୀ ॥
ଅରେ ଦେବଙ୍କର ଶତ୍ରୁ ଅଜ କାହିଁ ଯିବୁ ।
ସଖା ସୋଦର ମରାଇ ଖାଇ କି କରିବୁ ॥
ଏଡ଼େ ଦର୍ପ କରଣ ରେ କସ୍ମଳୁ ରାକ୍ଷସ ।
ଭୁଣ ପ୍ରମାଣେ କାଟିବ ଅଜ ତୋର ମାଂସ ॥
ରାଜ୍ୟ ଭୋଗ କରିବାକୁ ନ କର ତୁ ଅଶ ।
ଗୃଧ୍ର ଜମ୍ବୁକ କରିବେ ଅଜ ତୋତେ ଗ୍ରାସ ॥
ଦୁର୍ଗା ବାଣୀ ଶୁଣି ଧରିଲା ସେ କରେ ଧନୁ ।
ନାରାଚ ପୂରିଲା କପିଳ ସିଦ୍ଧ ଗୁନ୍ତ ॥
ସହସ୍ରେକ ଭୁଜ ସେ ଯେ ଦେଖିଣ ଦୁର୍ଗାଙ୍କୁ ।
ଶତେ ଶସ୍ତ୍ର ଶତ ବନ୍ଧେ ସହସ୍ରେ ଭୁଜକୁ ॥
ସେ ଅସୁରର ନାରାଚ ଦେଖି ଗୋସାମଣୀ ।
ପଞ୍ଚଶତ ଭୁଜେ ଧନ ଧରିଲେ ଯେ ଝାଣି ॥

ଦୁର୍ଗାଙ୍କ ସମର ଦେଖି ମୈଷାସୁର ସଙ୍ଗେ ।
ଗିରିବର ସମେ ବଢାଇଲା ତାର କାୟେ ॥
ଲକ୍ଷେଶର ବାନ୍ଧିଲେ ସେ ଧାତକାରେ ଜମା ।
ମହିଷା ଶରୀରେ ପଡ଼ ହୋଇଗଲା ଚୂନା ॥
ନବଲକ୍ଷ ଶର ମୈଷାସୁର ପୁଣି ପେଷି ।
କମ୍ପିତ ନାସ୍ତରେ ଦୁର୍ଗାଦେବୀ ତାହା ନାଶି ॥
କୋପେ ମହିଷାସୁର ଯେ କାୟ ବଢ଼ାଇଲା ।
ଶୂନ୍ୟ ଭୁବନ ପର୍ଯ୍ୟନ୍ତ ତେଜ ପ୍ରକାଶିଲା ॥
ଅସୁର ବଳକୁ ବଳ ହେଲା ଦୁର୍ଗାତେଜ ।
ଚତୁର୍ଦ୍ଦଶ ଭୁବନ କି ହୋଇବ ଦହ୍ୟ ॥
ଭାଦ୍ରବା ମାସରେ ଯେସନେ କରେ ଜଳବୃଷ୍ଟି ।
ଦେବୀଙ୍କର ବାଣ ତେସନେ ସ୍ୱର୍ଗ ମର୍ତ୍ତ୍ୟ ଘୋଟି ॥
ଲାଘବ ଶରେ ସେ ଯହିଁ ନ ପାରିଲା ଜିଣି ।
ଦେବଶରକୁ ଦାନବ ବଢେ ବେଗେ ଟାଣି ॥
କୋପେ ଦାନବ ପର୍ବତା ଶର ଯେ ପେଷିଲା ।
ଶ୍ରୀଦୁର୍ଗାଙ୍କର ଉପରେ ପଥର ବର୍ଷିଲା ॥
ଶତେ ତାଳ ବଢ଼ିଲରେ ବରଷେ ପାଷାଣ ।
ଏକ ଏକ ପଥର ଯେ ଯୋଜନେ ପ୍ରମାଣ ॥
ପାଷାଣ ପଡ଼ନ୍ତେ ଦେଖିଲେକ ଦେବୀ ଦୁର୍ଗେ ।
ବଜ୍ରାବଳି ନାସରକୁ ସନ୍ଧାନିଲେ ବେଗେ ॥
ଯହିଁ ଇନ୍ଦ୍ର ଗିରିପକ୍ଷ ଛେଦିଥିଲେ ପୂର୍ବେ ।
ସେ ଶସ୍ତ୍ର ପଡ଼ି ପର୍ବତ ନାଶଗଲେ ସର୍ବେ ॥
ଦୁର୍ଗା ଧରିଲେକ ଅଗ୍ନିବାଣ ଯେ କୋଟିଏ ।
ସମ୍ଭାଳ ସମ୍ଭାଳ ଅରେ ମୈଷାସୁର ସଙ୍ଗେ ॥
ଏକା ଅଗ୍ନିବାଣ ହେଲା କୋଟି କୋଟି ମୂର୍ତ୍ତି ।
ଦେଖି ପ୍ରଶଂସିଲା ନମ୍ର ଦାନବର ନାଥ ॥
ଏଡ଼େ ସୁଲକ୍ଷଣୀ ତୁମ୍ଭେ କାର କୁଳବଧୂ ।
ପ୍ରିୟାମାନ ହୋଇଣ ମୋ ଜୀବନହିଁ ସାଧୁ ॥
ନାହିଁ ନ ଥିଲା ନୋହିବ ଏ ତିନି ଭୁବନ ।
ସେନାକୁ ମାରିଲୁ ଦେଖାଇଣ ଯଉବନ ॥
କାହିଁକି ବୋଲନ୍ତି ତୋତେ ଅବଳା ଯେ ବାମା ।
ଏହି ଜଗତରେ ତୁହି ଷଢିଆ ଉତ୍ତମା ॥
ପ୍ରଥମେଁ ଯଦ୍ୟପି ଏହି କଥା ଜାଣିଥାନ୍ତି ।
ସମର ନକର ନତେ ଶରଣ ପଶନ୍ତି ॥
ଏବେବେହେଁ ସୁନ୍ଦରୀ ଅରେ କହେ ମୁହିଁ ତୋତେ ।
ଦେବୁ କି ମୋର ଭାରିଯା ହୁଅଇ କେତେ ॥

ଦୁର୍ଗା ବୋଇଲେ ରେ କ୍ଷମା ହୋଇଲୁ ଅଶକ୍ୟ ।
ଇହ ପରଲୋକେ ସତ୍ୟ ଲୋପାଇଁ ପାତକ ॥
ଅରେ ଦୈତ୍ୟଏଥି ତୋତେକରିବିରେ ରକ୍ଷା ।
ମୋ ନିମନ୍ତେ ମୋତେ ଦେବତାଙ୍କ ବଡ଼ଦକ୍ଷ ॥
ଦେବଙ୍କୁ କଷ୍ଟ ଦେଇ ତୁ କଲୁ ବଇରସ ।
ତୋତେ ବଧକଲେ ସ୍ଥିର ହୋଇବଟେ ସ୍ୱର୍ଗ ॥
ଦୁର୍ଗାଙ୍କ ମୁଖ୍ ନିର୍ଦ୍ଦୟ ବଚନକୁ ଶୁଣି ।
କୋପେ ଟର୍ଜି ମହିଷା ଶତେ ନାଗ ଜାଣି ॥
ଯେଉଁ ଅଗ୍ନିବାଣ ବାନ୍ଧିଥିଲେ ଦେବୀ ଦୁର୍ଗେ ।
ସେହି ଲାଗିଗଲା ଧୂମ୍ରଲୋଚନର ଅଙ୍ଗେ ॥
କୋପେ ଦୁର୍ଗାଦେବୀ ନାରଦାତ ବାଣ ମାରି ।
ଧୂମ୍ରନେତ୍ର ସାରଥି ତା କରରେ ନିବାରି ॥
କୋପେ ମୈଷାସୁର ମେଘାଶର ଯେ ପେଷଇ ।
ମୁଷଳ ଧାର ପ୍ରମାଣେ ଶର ବରଷଇ ॥
ଅର୍ଦ୍ଧଚନ୍ଦ୍ର ଶର ମାରି ଦେଲେ ଦେବୀ ଦୁର୍ଗେ ।
ମେଘାଶର ନଷ୍ଟହୋଇ ଉଡ଼େ ଶୂନ୍ୟମାର୍ଗେ ॥
ପୁନରପି ବ୍ରହ୍ମଶର ମାରେ ଭୋସାମଣୀ ।
ଧୂମ୍ରନେତ୍ର ସାରଥି ତା ପକାଇଲା ହାଣି ॥
ବେନ୍ଧୁ ବେଳ ସମର ଯେ ହୋଇଲା ଅପାର ।
ପ୍ରଳୟ ହେବ କି ଅଜ ଏ ନବ ସଂସାର ॥
କୋଟି କୋଟି ଶର ପ୍ରହାରିଲା ମୈଷାସୁର ।
ଦେବୀ ଦୁର୍ଗେ ଛେଦନ୍ତି ତା କୋଟିତ ପ୍ରକାର ॥
ଯେତେ ଶର ପ୍ରହାରିଲେ ଜଗତଜନନୀ ।
ଧୂମ୍ରଲୋଚନ ସାରଥି ପକାଇଲା ହାଣି ॥
ବ୍ରହ୍ମଶର ପାଶୁପତ ନ ସମ୍ଭୁଣ ଶର ।
ସବୁ ଚୂର୍ଣ୍ଣ ହୋଏ ଧୂମ୍ରଲୋଚନ ଅଙ୍ଗର ॥
ଦୁର୍ଗା ଦେଖିଲେକ ଧୂମ୍ରଲୋଚନ ମହିମା ।
ବୋଇଲେ ଧନ୍ୟ ଧନ୍ୟ ତୁ ଅଟୁ ମହାତମା ॥
ସାରଥି ହୋଇ ଏମନ୍ତ ମହିମା ତୋହର ।
ଧନ୍ୟ ଗର୍ଭଧାରୀ ମାତା ଅବର ପିଅର ॥
ହୁଙ୍କାର ଶବଦ କଲେ ଜଗତଜନନୀ ।
ଶବ୍ଦୁଁ ଜାତ ହେଲେ ଲମ୍ବଡ଼ାଢ଼ୀ ଭୁଷଣୀ ॥
ମର୍ତ୍ତ୍ୟେ ତଳପାଟି କଲେ ଅକାଶରେ ଜିଭ ।
ଲମ୍ବଡ଼ାଢ଼ୀର ମହିମା ଦେବଙ୍କୁ ଦୁର୍ଲଭ ।
ତାଙ୍କ ବିଶ୍ୱରୂପ ଦୁର୍ଗା ଦେଖିଲେ ପ୍ରତ୍ୟକ୍ଷ ।
ବୋଇଲେ ବୋ ତୁମ୍ଭେ ଧୂମ ଲୋଚନକୁ ଭକ୍ଷ ॥

ସୂର୍ଯ୍ୟକେତୁ ସମାନ ଯେ ବିକଟ ଭୁବତ ।
ମୈଷାସୁର ରଜା ଅଛେ ଥିବ ଏକାମାତ୍ର ॥
ଦେବୀମାନେ ତୁମ୍ଭେ ସର୍ବେ ମିଳି ଯୁଦ୍ଧକର ।
ଧୂମ୍ରଲୋଚନର ଯୁଦ୍ଧ ହେଲା ଅଗୋଚର ।
କାଳଯୋଦ୍ଧ ବୋଲନ୍ତି ଚାଙ୍କଣୀ ଭୁଷଣ୍ଡୀ ।
ଧୂମ୍ରଲୋଚନଙ୍କୁ ମୁଣ୍ଡ ଗିଳିବ ଏକ୍ଷଣି ॥
ଲମ୍ବତୁଣ୍ଡୀ ବୋଇଲେକ ବିକଟ ମୁଁ ରଥ ।
ପ୍ରତିଜ୍ଞା କରିଣ ସେହୁ ଧାଇଁଲେ ଭୁବନ ॥
ବେନି ଦେବୀ ଧାମନ୍ତେଣ ମୈଷା ବଧେ ଶର ।
ସମସ୍ତ ଶର ପଡ଼ିଲେ ଦେବୀଙ୍କ ରୁଣ୍ଡର ॥
ଶସ୍ତ୍ରମାନଙ୍କୁ ଯେ ଦେବୀ ନ କରନ୍ତି ସ୍ଥିତ ।
ଚାଙ୍କଣୀ ଧୂମ୍ରଲୋଚନେ ଗିଳଇ ତତ୍ପର ॥
ଭୁଷଣ୍ଡୀ ଚିକ୍କଦେଲା ସୂର୍ଯ୍ୟକେତୁ ଯାନ ।
ଭୟେ ମୈଷାସୁର ତହୁଁ ହେଲା ଅନ୍ତର୍ଦ୍ଧାନ ॥
ଦୁର୍ଗାଦେବୀ ଅଗେ ଯାଇଁ କହିଲେ ଚାଙ୍କଣୀ ।
ମୈଷାସୁର ପଳାଇଲା ଜୀବନକୁ ଘେନ ॥
ଭୟରେ ମହିଷାସୁର ହେଲା ଅନ୍ତର୍ଦ୍ଧାନ ।
ଆକାଶେ ଦେଖନ୍ତି ସର୍ବ ଦେବଗଣମାନ ॥
ଦିବ୍ୟରଥୁ ବେନି ସ୍ତୁହିଁଦେଲେ ଦେବୀ ଦୁର୍ଗେ ।
ମହିଷାସୁର ରହିଛି ଯାଇଁ ଶୂନ୍ୟମାର୍ଗେ ॥
ଶେଷରେ ବିମାନ ତେଜ୍ୟା କଲେ ମହାମାୟୀ ।
କେଶରୀ ପିଠିରେ ବେଗେ ବଡ଼େଇଲେ ଯାଇଁ ॥
ଆକାଶରେ ଉଡ଼ିଯାଏ ସେ କେଶରୀ ବଳୀ ।
ମହିଷାସୁର ସମ୍ମୁଖରେ ଶୀଘ୍ର ଯାଇ ମିଳି ॥
ଦେଖିଣ କୋପାନଳ ଯେ ମହାଦାସ ନାଥ ।
କୋପଭରେ ପେଷିଦେଲା ଶତଧାର ଶକ୍ତି ॥
ଦେଖି ଅମୋଘ ଶରକୁ ପେଷି ମହାମାୟେ ।
ବେନିଶର ପଡ଼ି ତାକେ ହେଲେ ଅନ୍ତର୍ଦ୍ଧାୟେ ॥
କୋପରେ ଗର୍ଜିଲ ଘନ ଘନ ମହାବଳୀ ।
ଧାଇଁଣ ବଛିଲା ପୁଣି ଶର ଅର୍ଦ୍ଧାବଳୀ ॥
ଦୁର୍ଗାଦେବୀ ମାରିଲେକ ବଜ୍ର ମୁଦ୍ଗର ।
ବେଣ୍ଟଅସ୍ତ୍ର ପଡ଼ିତାକେ ହେଲେ ଶତଚୁର ॥
ଅସୁର ସେ ପେଷିଲା ପୁଣି ଦୈତ୍ୟମଣି ।
ରୁଦ୍ରଶର ପେଷି ହାଣିଦେଲେ ଯୋଷାମଣୀ ॥
କ୍ରୋଧେ ମୈଷାସୁର କାଳଦଣ୍ଡ ଯେ ପେଷିଲା ।
ଉପାୟ ବଳେ ତା ଦୁର୍ଗାଦେବୀ ହଣାଣିଲା ॥

ପୁଣ କୋଟିଏକ ବାଣ ବର୍ଷି ଦୁର୍ଗାଦେବୀ ।
ନଳିକା ପାତ ହୋଇଲା ସର୍ବ ଦିବ ଭୁବ ॥
ସ୍ୱର୍ଗ ନେଇ ହାମେ ପଳାଇଲେ ଦେବଗଣ ।
ବାଣ ଚଳେ କବା କୋଟି ସୂର୍ଯ୍ୟର କିରଣ ॥
ଦେଖିଣ ମହିଷାସୁର ପ୍ରତିଶର କଲା ।
ଶତଷଠି ବାଣରେ ତା ଛଣ୍ଡାଇଣ ଦେଲା ॥
ଅନନ୍ତରେ ନାଗର ପେଶଇ ମହିଷା ।
ଦୁର୍ଗାଙ୍କୁ ଜିଣିବ ବୋଲି କରଇ ଭରସା ॥
ଦୁର୍ଗାଦେବୀ ଯେତେ ଶର କଲେକ ପ୍ରହାର ।
କେହି ନ ବାଜଇ ପୁଣି ମହିଷା ହୃଦର ॥
କୋପେ ଦୁର୍ଗାଦେବୀ ପୁଣ ଲକ୍ଷେବାଣ ଧର ।
ମୈଷାସୁର ଶିର ଛେଦ ବୋଲିଣ ପ୍ରହାର ॥
ବେନି ଭୁଜକୁ ଯେ କୋଟି୨ ଶର ପେଷି ।
ବ୍ରହ୍ମଶର ପୁଣ କଲେ ପାଦ ଛେଦ ଭାଷି ॥
ଦେଖିଣ ମହିଷାସୁର ପ୍ରତିଅସ୍ତ୍ର କଲା ।
ସବୁ ନାଗରମାନଙ୍କୁ ଛେଦ ପକାଇଲା ॥
ଧାଡ଼କାରେ ଦେବୀ ଅର୍ଦ୍ଧଚନ୍ଦ୍ର ବାଣ ପେଷି ।
ମୈଷାସୁର ଧନୁଖୋଣ ପକାଇଲେ କାଟି ॥
ପୁଣ ବାରୁଣା ଶରକୁ ପେଷି ଯୋଷାମଣୀ ।
ମହିଷା ଗଦା ଶୁଭୁଜ ପକାଇଲେ ହାଣି ॥
ବିଅସ୍ତ୍ର ହୋଇଣ ବସ କରିଲ ଫିହବଳା ।
ମହାମନ୍ତ୍ର ମହିଷିଏ ହେଲା ଅନର୍ଗଳା ॥
ଗୁରୁ ଚରଣେ ପୂରିଲା ଜମ୍ବୁଦ୍ୱୀପ ପୃଥ୍ୱୀ ।
ନିରକଣ୍ଠି ଯୋଡିଲା ତା ପୁର ବାରସ୍ଥିତି ॥
ଉତ୍ତର ଦକ୍ଷିଣ ପୂର୍ବ ଯେ ପଶ୍ଚିମ ଉତ୍ତର ।
ଏଥିପୂର୍ଣ୍ଣ ହୋଇଲା ଯେ ମହିଷା ଶରୀର ॥
ସ୍ୱର୍ଗମର୍ତ୍ତ୍ୟ ବେଢ଼ପୁର ଏକା ତା ଶରୀର ।
ମହାବିଶ୍ୱରୂପ ଧରିଅଛି ସେ ଅସୁର ॥
ତହିଁରୁ ଅଭିରଣ ମୈଷାସୁର କାଯ୍ୟେ ।
ପ୍ରତ୍ୟକ୍ଷ ଦଶଇ ସେହୁ ଉଦେଗିରୁପ୍ରାୟେ ॥
ଫିଙ୍ଗିବେ ହାଣିବାକୁ ସେ ଲୋଡ଼ଇ ଗୌରବ ।
ତଳମଧ୍ୟାପର ତାଙ୍କୁ ଦିଶେ ବିସ୍ମୟ ।
ମୈଷାସୁର ରୂପ ଦେଖି ଦୁର୍ଗାଦେବୀ ବୋଲେ ।
ଏ ଥିଲା ନୋହିବ ଏବେ ନାହିଁତ ଦେଖିଲେ ॥
ଦଶଶତ ଭୁଜେ ଦେବୀ ଧରିଲେକ ଧନୁ ।
ନାଗତ ଫସଲଣ ସେ ଧଞ୍ଚିଲେ ସଘନୁ ॥

ମହା ବିଶ୍ୱରୂପ ପ୍ରକାଶିଲେ ମହାମାୟେ ।
ମୈଷାସୁର ଉପରକୁ ଶର ବୃଷ୍ଟି ହୁଏ ॥
ଅନୁକ୍ଷଣେ ଶର ତହିଁ ଜଳେ ଦେବୀ ଦୃଷ୍ଟି ।
ମହିଷାସୁର ଶରୀରେ ପଡ଼ି ଗୁଣ୍ଡା ଉଠି ॥
ଦେବଶର ମାନ ପୁଣି ଦୁର୍ଗାଦେବୀ କଲେ ।
ମହିଷାସୁର ଶରୀରେ ତଳେ ନ ଭେଦିଲେ ॥
ଖଣ୍ଡ ଖଣ୍ଡ ମହାମାୟେ ହୋଇଲେ ବିମୁଖ ।
ବକ୍ଷ ଦେହେ ନ ଭେଦିଲ ତୀକ୍ଷ୍ଣଶର ଯାକ ॥
ଏକଧନୁକରେ ଲକ୍ଷେ କୋଟି ଶର ବନ୍ଧି ।
ପଞ୍ଚ ଯ ଧନୁରେ ଦିବ୍ୟାସ୍ତ୍ର ଶର ସନ୍ଧି ॥
ମେରୁଗିରି ପ୍ରାୟେ ଦୈତ୍ୟ ନିଶ୍ଚଳେ ରହିଛି ।
ଯେତୁଁ ବେଳ କୋପଦ୍ଧରେ କାୟା ବଢ଼ାଉଛି ॥
କୋପେ ଗୋସାମଣୀ ପୁଣ ଦିବ୍ୟ ଅସ୍ତ୍ର କଲେ ।
ନାଗପାଶ ବାଣ ମନ୍ତ୍ର ପଢ଼ିଣ ପେଷିଲେ ॥
ଅଇଲେ ଯେ ନାଗ ମହା ବିଶ୍ୱରୂପ ଧରି ।
ଫୁତ୍କାର ଗର୍ଜନରେ ବିଷ ବୃଷ୍ଟି କରି ॥
ଜଗତ ଆକୁଳ ହେଲା ଦେଖି ମୈଷାସୁର ।
ଫିହ ମାରି ନ ପକାଇଲା ସେ ଅକ୍ଷୟ ଶର ॥
ପୁଣ ସୁଦର୍ଶନ ଚକ୍ର ଧରି ମହାମାୟୀ ।
ମୈଷାସୁର ଶିରଚ୍ଛେଦ ବୋଲିଣ ପେଷିଲ ॥
କୋଟିଏ ସୂର୍ଯ୍ୟର ତେଜ ଯେଉଁ ମହାଚକ୍ର ।
ମୈଷାସୁର କଣ୍ଠେ ପଡ଼ି ହୋଇଲା ସେ ବକ୍ର ॥
ପୁଣ ଦେବୀ ନାରାୟଣ ଶର କରେ ଧରି ।
ଧନୁର୍ବେଦ ପଢ଼ି ଗୁଣେ ବସାଇ ଓଙ୍କାର ॥
ଉଚ୍ଚୁଳନ୍ତେ ମନ୍ତ୍ର ପଢ଼ି ତେଡ଼େ ବଡ଼ ଶର ।
ସପ୍ତସିନ୍ଧୁ ଦଶେ ଜଳନ୍ଧନ୍ତ ପରକାର ॥
ଶୂନ୍ୟେ ବହନ୍ତା ପୁରୁଷେ ରହି ନ ପାରିଲେ ।
ଆଜ କି ପ୍ରଳୟ ହେବ ଏହା ବିଚାରିଲେ ॥
ତନବେଳ ଉନ୍ମୁଳଣ ଛାଡ଼ିଲେ ସେ ଶର ।
କୋଟିଏ ନିର୍ଘାତ ପରି କଲା ଶବ୍ଦ ଘୋର ॥
ମୈଷାସୁର ବକ୍ଷସ୍ଥଳେ ଯାଇଣ ପଡ଼ିଲା ।
ତେଡ଼େ ଶର ନ ଭେଦଣ ବାହୁଡ଼ି ଅଇଲା ॥
ପୁଣ ପର୍ବତ ପରସୁ କୋଟିଏ ପେଷିଲେ ।
ମୈଷାସୁର ଅଙ୍ଗେ ସେ ଯେ ଭେଦି ନ ପାରିଲେ
ଯେତେ ଦେବଶର ଛାଡ଼ିଲେକ କାତ୍ୟାୟନୀ ।
ମୈଷାସୁର ଶିରେ ପଡ଼ି ସର୍ବେ ହେଲେ ହାନି ॥
ମହିଷାସୁରର ଦେହ ଅଭେଦ୍ୟ ତ ଜାଣ ।
ଦେବଶାସ୍ତ୍ରମାନ ପଡ଼ି ହୋଉଛନ୍ତି ଚୂର୍ଣ୍ଣ ॥
ନାସ୍ତିକଙ୍କୁ ଭୟ ଯେ ନ କରେ ମୈଷା ସ୍ୱୟେ ।
ଦୁର୍ଗା ଛାମୁରେ ଦ୍ୱିଗୁଣ ପ୍ରତାପ ଦେଖାଏ ॥
ମୁଖନାଦ କରଣି ସେ ଧାଏଁ ଅତି ବେଗେ ।
ଦୁର୍ଗା ବାହନ ସିଂହକୁ ପ୍ରହାରିଲା ଶିଙ୍ଗେ ॥
ତାହା ଦେଖିଣ ଗର୍ଜିଲ ସିଂହ ମହାବଳ ।
ଦୁର୍ଗା ବୋଇଲେ ରେ ବାବୁ ସମ୍ଭାଳ ସମ୍ଭାଳ ॥
ମୁହିଁ ହାଦେ ବ୍ରତ କରିଅଛି ରେ ଅଗସ୍ତ୍ୟ ।
ମୈଷାକୁ ମାରିବ ମୁହିଁ ତୋର ଓଡ଼ାଜ କାହୁଁ ॥
ଦୁର୍ଗାର ବଚନ ଶୁଣି ଶାନ୍ତ ସେ କେଶରୀ ।
ପୁଣ ପୁଣ ମୈଷାସୁର ଶରୀର ବିସ୍ତାରି ॥
କୋପେ ଦୁର୍ଗାଦେବୀ ଲୌହସାର ଗଦା ନେଇ ।
ମହିଷାସୁର ଉପରେ ପ୍ରହାରିଲେ ପୁଣି ॥
ବୁଲାଇଣ ମହାମାୟେ ପ୍ରହାରିଲେ ଝରି ।
କୋଟିବଜ୍ର ତେଜ ତ ମହିଷା ଉପରି ।
ବେନ ଗଦା ମୈଷା ବକ୍ଷ ସ୍ଥଳରେ ପଡ଼ିଲା ।
ତେଡ଼େବଡ଼ ଗଦା ବାଜି ଧୂଳି ହୋଇଗଲା ॥
ଅନତବେଳେ ଶିରେ ପ୍ରହାରିଲେ ଗଦା ବେନି ।
ରଣଝଣ ଶବ୍ଦଇ ଯେ ଉଠିଲା ବହନି ॥
ଲୁହାର ଗଦା ସଙ୍ଘଟ୍ଟ ହେଲା ଉତ୍ପାତ ।
ତ୍ରିଶୂଳ ଧରି ମାରିଲେ ପୁଣି ଜଗନ୍ମାତ ॥
ନିର୍ଭୟ ଦାନବ ବୀର କୋପେ ଧାଇଁଅଛି ।
ଶୂଳ ଶସ୍ତ୍ର ପଡ଼ି ତାର ନୋହିଲା ସେ କଛି ॥
ପୁଣ ଦୁର୍ଗା ପେଷିଲେ ଯେ ବଜ୍ର ମୁଦ୍ଗର ।
ମହିଷାସୁରର ଶିରେ ପଡ଼ି ହେଲା ଚୂର ॥
କୋପେ ଦେବୀ ବୁଲାଇଲେ ଗଦା ସୂର୍ଯ୍ୟାବଳୀ ।
ମହିଷାସୁର ଉପରେ ପ୍ରହାରିଲେ ତୋଳି ॥
ସେ ଶସ୍ତ୍ରରେ ନାଶଗଲା ମହାଜାନେ ଦୈତ୍ୟ ।
ସେ ଗଦା ବିନାଶ ହେଲା ମୈଷାସୁର ମାଥ ॥
ପୁଣ ପ୍ରହାରିଲେ ଜାଜାମ୍ବର ଯେ ପରଶ ।
ସେହି ପଡ଼ି ଚୂର୍ଣ୍ଣ ହେଲା ମୈଷାସୁର ଶିଙ୍ଗ ॥
ଶସ୍ତ୍ର ଅନନ୍ତେ ନ ଫୁଟେ ପୁଣି ତାର କାୟେ ।
ସମସ୍ତ ଦେବଙ୍କ ଶସ୍ତ୍ରମାନ ହେଲେ କ୍ଷୟେ ॥
ଶସ୍ତ୍ର ପଡ଼ନ୍ତେଣ ମୈଷା ପାତଇ କପାଳ ।
ଯେତେଁ ତାର ତେଜ ହେଉଛି ପ୍ରବଳ ॥

ତାହା ଦେଖି କୋପେ ଜଗଜ୍ଜନନୀ ଧାଇଁଲେ ।
ପଞ୍ଚଶୁ କୁଠାର ତୋଳ ବେଗେ ସେ ମାରିଲେ ॥
କରବାଳ ପଡ଼ିଲାକ ମହିଷାର କନ୍ଧେ ।
ବେନିଖଣ୍ଡ ହୋଇଣ ସେ ପଡ଼ିଲ ଭୂମି ମଧ୍ୟେ ॥
ପଡ଼ିଲା ବେନମନ୍ଦର ଗିରିପ୍ରାୟେ ହୋଇ ।
ଅସୁର ରଡ଼ ଶବ୍ଦରେ ବ୍ରହ୍ମାଣ୍ଡ କମ୍ପଇ ।
ଦେଖିଣ ଆନନ୍ଦ ହେଲେ ସର୍ବ ବୃନ୍ଦାରକେ ।
ସାଧୁ ସାଧୁ ଶବଦ ଯେ ଶୁଭେ ତିନଲୋକେ ॥
ଆକାଶରୁ ଦେବତାଏ କଲେ ହେମ ବୃଷ୍ଟି ।
ବାଦ୍ୟ ସିଦ୍ଧ କଲେ ସେହୁ ଖଣ୍ଡିଲେ ଅରିଷ୍ଟି ॥
ଶୁଣ ପରୀକ୍ଷିତ ରାଜା ଅପୂର୍ବ କାହାଣୀ ।
ମହିଷାସୁରର ଶିର ଛେଦ ଗୋସାମଣୀ ॥
ଦେବତାଙ୍କ ଅଗୋଚର ସେ ଅସୁର ମାୟା ।
ଗର୍ଭ ଭିତରୁ ବାହାର କଲା ନିଜ କାୟା ॥
ବାଳାର୍କ ପ୍ରାୟେ ମହିଷାସୁର ନିଜମୂର୍ତ୍ତି ।
ବାମକରେ ପରଶେଲ ଡାହାଣରେ କାତି ॥
ନିଜରୂପ ପ୍ରକାଶିଲା ଦୈତ୍ୟ ଯନ୍ତୁଁ ହାଦେ ।
ବେଗେ ତ୍ରିଶୂଳ ଧରିଣ ମାର ଦେବୀ ହୃଦେ ॥
ଶୂଳ ତା ହୃଦେ ମାଡ଼ିଲେ ଦେବୀ ମହାବଳେ ।
ବିଶ୍ୱରୂପ ପ୍ରକାଶିଣ ବସି ବକ୍ଷସ୍ଥଳେ ॥
ମହିଷାସୁରର ପୃଷ୍ଠେ ବାମପାଦ ଦେଇ ।
ଦକ୍ଷ ଚରଣ ମାଡ଼ିଲେ ବକ୍ଷସ୍ଥଳେ ନେଇ ॥
ଅକ୍ଷୋହିଣି ଶୂଳ ମାଡ଼ିଲେ ସହସ୍ରେକ ଭୁଜେ ।
ତଥାପିହିଁ ନ ମରଇ ସେ ଦୁଷ୍ଟ ଦନୁଜେ ॥
ମହିଷାସୁର ଦାନବ ଛାଡ଼ୁଅଛି ଡାକ ।
ସମସ୍ତ ବଳ କନ୍ଦର ହେଉଅଛି ଧୂଳ ॥
ଭୁଜବଳ ତଣ୍ଡ ପରାସ୍ତେ ହୋଇ ସେ ଭ୍ରମଇ ।
ନିଶ୍ୱାସବେ ସହସ୍ରେକ ଯୋଜନ ଗମଇ ॥
ହୁଙ୍କାର ମୁଖେ ଡାକଦେଲେ ଦେବୀ ଗୋସାମଣୀ ।
ଅଲେ କାଳିକା ବାସେଳୀ ରୁଦ୍ରା ନାରାୟଣୀ ॥
ଦୁର୍ଗା ବଚନରେ ନବକୋଟି କାତ୍ୟାୟନୀ ।
ଛପନ କୋଟି ପିଶାଚୀ ଚଉଷଠି ଯୋଗିନୀ ॥
ନବକୋଟି ଘୋରହା ଯେ ନିଅର୍ବୁଦ ଚଣ୍ଡୀ ।
କୌଦକୋଟି ଡାକିନୀ ଛପନକୋଟି ଚାମୁଣ୍ଡୀ ॥
ଉଗ୍ରତାରା ସମଚଣ୍ଡୀ ତ୍ରିପୁରା କୁଠାରୀ ।
ଯୋଗନମା ମାତ୍ରକମା ନିମି ମାହେଶ୍ୱରୀ ।

ମହା ବଣୁରୂପ ପ୍ରକାଶଇ ମହାଶୁର ।
ଧୂଳିକର ହେଲା ଖୁରଘାତେ ଗିରିବର ॥
ମହା ମହା ପରବତମାନେ ଯେତେ ଥିଲେ ।
ମୈଷାସୁର ପାଦ ବାଜି ଚୂର୍ଣ୍ଣ ହୋଇଗଲେ ॥
ବ୍ରହ୍ମଲୋକ ପରଯନ୍ତେ ଶୃଙ୍ଗ ବଢ଼ାଇଲା ।
ଦେବତାଙ୍କୁ ମାରିବାକୁ ମୁଖ ବୁଲାଇଲା ॥
ଅଳ୍ପଲେ ଦେବତାଗଣେ ନ ପାରନ୍ତି ରହି ।
ଡାକନ୍ତି ହେ ଦୁର୍ଗାଦେବୀ କର ଏଥୁଁ ତ୍ରାହି ॥
ମାର ଦିବ୍ୟବାଣ ମରୁ ଅସୁର ଚଣ୍ଡାଳ ।
ନିମିଷକେ ନାଶିବ ଏ ଅମର ମଣ୍ଡଳ ॥
ଦେବତାଙ୍କର ବଚନ ଶୁଣି ଗୋସାମଣୀ ।
ଲକ୍ଷକର ପଦ୍ମେ ଶର ପେଷିଲେ ତକ୍ଷଣି ॥
ମୈଷାସୁର ଅଙ୍ଗେ ବାଜି ଧୂଳି ହୋଇଗଲେ ।
ଦେଖି ଜଗତଜନନୀ ମହାକୋପ କଲେ ॥
ଦେଖି ମାଏ ଦେବତାଙ୍କ ଅତ୍ୟନ୍ତ ବିକଳ ।
କୋଦଣ୍ଡରେ ବସାଇଲେ ଶର ମହାକାଳ ॥
ଗୁଣରୁ ଛୁଡ଼ନ୍ତେ ତାକୁ ଜଗତୁ ଛନ ଛନ ।
କି ଅବା ସୃଷ୍ଟି ପ୍ରଳୟ ହେବ ଅଜ୍ଞାନନ ॥
ଦେବତାଏ ଭୟେ ଶୂନ୍ୟପୁରୁ ପଳାଇଲେ ।
ସେ ରୁଦ୍ରଶର ପ୍ରତାପେ ରହି ନ ପାରିଲେ ॥
ସେ ଶରକୁ ଅଙ୍କି ତହୁଁ ଦେଲେ ଗୋସାମଣି ।
ମହିଷାସୁରର କନ୍ଧ ପଜାଅରୁ ହାଣି ॥
ଅପାଲଟକ ଶର ସେ ଜଗତେ ଅଟଇ ।
ଯାକୁ ପେଷିବ ତା ଶିର କମଳ କଟଇ ॥
ମନ୍ଦର ଗିରି ସମାନେ ମୈଷ ସୁର କାୟେ ।
ମହାକାଳ ବାଣ ହେଲା ମେରୁଗିରି ପ୍ରାୟେ ॥
କରେ ତାର ବଜ୍ର ନବନଶୀ ଯେ କୁଠାର ।
କ୍ଷତ ତାହାକୁ ବ୍ରହ୍ମା ବିଷ୍ଣୁ ମହେଶ୍ୱର ॥
ପ୍ରଳୟାନ୍ତକ ଶର ସେ କଳ୍କି ଅବତାର ।
ସବୁକାଳେ ନାଶ କରେ ପୃଥ୍ୱୀ ମହାଭାର ।
ହେ ପରୀକ୍ଷ ଦୁର୍ଗା ପେଷୁଁ ଘୋର ମହାକାଳ ।
ମୈଷା ଉପରକୁ ଗଲା ଘେନି କରବାଳ ॥
ତାର ଘୋର ରୂପ ଦେଖି ଧାଇଁଲା ମହିଷା ।
ବେନିଶୃଙ୍ଗ ମରଇ ନ ରଖି ଜୀବ ଆଶା ॥
ପୁଣି ଘୁଞ୍ଚି ଶୃଙ୍ଗ ମାରଇକି ମହାବଳୀ ।
ବାଣକୁ ଧରିଲା ଯାଇଁ ମୈଷାସୁର ତୋଳି ॥

ଜ୍ଞାନେଶ୍ୱରୀ ସ୍ୱାମାୟଣୀ ବ୍ରହ୍ମାୟଣୀ ଦେବୀ ।
ଗଙ୍ଗାଧରୀ ମହାମାୟା କପାଳୀ ଭୈରବୀ ॥
କାଳୀ କଙ୍କାଳୀ ବେତାଳୀ ଲମ୍ବୋଦରୀ ସଙ୍ଗୀ ।
ତାରକୀ ଭୁଅଶୁଣୀ ଏ ଚିତ୍ରାଙ୍ଗର ଦେବୀ ॥
ଅଠର ମେଞ୍ଛ ଚଣ୍ଡୀ ଦେବୀ ଅଶୀ କୋଟି ।
ମହା ମହିଷ ଉପରେ ଏମାନେ ଦେଁ ଉଠି ॥
ନବକୋଟି କାତ୍ୟାୟନୀ ମହାକୋପାନଳେ ।
ମାଡ଼ଣ ବସିଲେ ମୈଷାସୁର ବକ୍ଷସ୍ଥଳେ ॥
ଚୌଷଠି ଯୋଗିନୀ ଧରିଲେକ ଶୂଳ ଚାପି ।
ଦେବୀ ଭୁଜେ ମାଡ଼ିଲେକ ପଣ୍ଡ କାମରୂପୀ ॥
ପଦ୍ମପଦ୍ମ ଦେବୀ ମାଡ଼ି ବସିଲେକ ଜାନୁ ।
ସାତପଦ୍ମ ଶୋଣେହା ଯେ ଚାପି ତାର ତନୁ ॥
ଗୃହପାଦ ଧରିଲେକ ଛପନ କୋଟି ଦେବୀ ।
ଶିର ମାଡ଼ି ବସି ଚଉଷଠି ଭଇରବୀ ॥
ତେରକୋଟି ବ୍ୟାଘ୍ର ଚର ପୃଷ୍ଠୁ ମାଂସ ଭକ୍ଷି ।
ସିଂହ ଯାଇଁ ଧଇଲେକ ତାର ବେଗେ କୁକ୍ଷି ॥
ତକ୍ଷକ ନାଗ ବେଢ଼ିଲା ପୁଣ ଶତେ ପୁର ।
ବେନି ପାଦ ଧଇଲା ସେ ନାସିକା ଉପର ॥
ବଣ୍ଟରୂପ ଧରି ସର୍ବେ ମହିଷାକୁ ଚାପି ।
ଜଗତେ ମହିଷାସୁର ଅଟେ କାମରୂପୀ ॥
କ୍ରୋଧରେ ମହିଷାସୁର ଦେହ ଦେଲା ଝାଡ଼ି ।
ସିଝାତ ହୋଇ ଦେବୀଏ ବସ୍ତି ଦୂରେ ପଡ଼ି ॥
ଜମ୍ବୁଦ୍ୱୀପରେ ପଡ଼ିଲେ ଛପନ କୋଟି ଦେବୀ ।
ଚନ୍ଦ୍ରଦ୍ୱୀପେ ପଡ଼ି ଚୌଦକୋଟି ଭଇରବୀ ॥
କୁଶଦ୍ୱୀପରେ ପଡ଼ିଲେ ନବକୋଟି ଚଣ୍ଡୀ ।
ତନସାଗର ଚାମୁଣ୍ଡା କ୍ରୌଞ୍ଚ ଦ୍ୱୀପେ ମଣ୍ଡି ॥
ସିଂହଳ ଦ୍ୱୀପରେ ଶତେପଦ୍ମ ପିଙ୍ଗୁଳୀ ।
ପାସଦ୍ୱୀପରେ ପଡ଼ିଲେ କୋଟି ଗୋସାମଣୀ ॥
ଶାକଲ୍ୟ ଦ୍ୱୀପରେ ନବକୋଟି କାତ୍ୟାୟନୀ ।
ପଦ୍ମୁକ ଡାକିନୀ ଭୁଲେ ଚଉଷଠି ଯୋଗିନୀ ॥
ଗ୍ରାମେ ପର୍ବତେ ବନରେ ପଡ଼ିଲେ ଯେ ସ୍ଥାନେ ।
ଉଠି ନ ପାରିଲେ ବ୍ୟଥା ପାଇ ଦେବୀମାନେ ॥
କେତେକ କାଣୀ କୁବୁଜା କେ ହୋଇଲେ ଯେ କେଣା ।
ହସ୍ତ ପଞ୍ଜର ଭାଜନ୍ତେ ହୋଇଲେ ବିରୂପା ॥
ଯେ ଯହିଁ ପଡ଼ିଲେ ସେହି ରହିଲେ ସେଠାଇଁ ।
ଦୁର୍ଗାଦେବୀ ବୋଇଲେକ ଡାକେଶ୍ୱରୀ ସଇ ॥
ଦେବୀ ପଡ଼ିଲେ ଯେ ଯାହିଁ ଭ୍ରଷ୍ଟ ଯେ ହୋଇ ।
ସିଦ୍ଧରୂପେ ପୂଜା ପାଉଥାନ୍ତୁ ସେହିଠାଇଁ ॥
ପାଷାଣ ହୋଇ ତାଙ୍କର ବାକ୍ୟ ହେଉ ସିଦ୍ଧି ।
କାଷ୍ଠ ପାଷାଣ ମୃତ୍ତିକା ବିପ୍ରକାର ବଧି ॥
ଦୁର୍ଗାର ବଚନେ ଡାକେଶ୍ୱରୀ ଡାକଦେଲା ।
ହେ ଦେବ ଏ ଚରଣାଦ୍ରି ଭୂମିର ଭଜନା ॥
ଜଗତ ଜନମାଙ୍କର ଅଙ୍କା ପଡ଼ିମାଣେ ।
ଯେ ଯହିଁ ପଡ଼ିଲ ପୂଜା ପାଅ ସେହି ସ୍ଥାନେ ॥
ଶୁକମୁନି ବୋଲେ ଶୁଣ ପରୀକ୍ଷିତ ରାଜା ।
ସମସ୍ତେ ପାଷାଣ ରୂପେ ପାଇଲେକ ପୂଜା ॥
ଦେବୀମାନେ ଯନ୍ତ୍ର ଉଡ଼ିଗଲ ସେ ଗଗନେ ।
ସିଂହକୁ ଘେନିଣ ଦେବୀ ରହିଲେକ ଶୂନ୍ୟେ ॥
ବିଶୂଳ ମାଡ଼ିଣ ରହିଛନ୍ତି କାତ୍ୟାୟନୀ ।
ଭ୍ରମେ ମୈଷାସୁର ଦବଶାସ୍ତ୍ରେ ଯେ ମେଦିନୀ ॥
ପୃଥ୍ୱୀର ମଧ୍ୟରେ ସେହୁ ନ ପାରିଲା ରହି ।
କ୍ଷୀର ସମୁଦ୍ର ମଧ୍ୟରେ ହେଲା ଜଳଶାୟୀ ॥
ମହାର୍ଣ୍ଣବ ଜଳେ ଦେବ ଏହାକୁ ମୁଁ ମାଡ଼ି ।
ଅଗାଧ ଜଳରେ ପଡ଼ି ମରୁ ଏହୁ ବୁଡ଼ି ॥
ଏମନ୍ତ ବିଚାର କଲା ସେ ମହିଷାସୁର ।
ଶୂଳେକ ମାଡ଼ିଛ ଅଣ୍ଟେ ମୋହର ହୃଦର ॥
ନ ପାରିଲ ଅବଳାକୁ ମୁହିଁ କେବେ ଜିଣି ।
ଭଲ ବଳ ବହିଅଛ ଅଟେ ଏ ତରୁଣୀ ॥
ଏହାକୁ ଅଗାଧ ଜଳେ ବୁଡ଼ାଇ ମାରିବ ।
ଏଥିରୁ ବଞ୍ଚିଲେ ଦେବତାଙ୍କୁ ନ ରଖିବ ॥
ଏମାନ ଭାଅଇଛନ୍ତି ଦେବତାଏ ସିନା ।
ଅଜ ଜାଣିବା ଏହାର ବଳ ସାମର୍ଥ୍ୟ କ ନା ॥
ଏତେ ଭାବି ବୁଡ଼ିଲା ସେ ମହାର୍ଣ୍ଣବ ଜଳେ ।
ଶୂଳ ମାଡ଼ିଛନ୍ତି ଦେବୀ ତାର ବକ୍ଷସ୍ଥଳେ ॥
ବୁଡ଼ିଗଲା ଅସୁର ଯେ ଅଗାଧ ଜଳରେ ।
ଦୁର୍ଗାଦେବୀ ବୁଡ଼ିଗଲେ ତାହାର ସଙ୍ଗରେ ॥
ଲକ୍ଷେତାଳ ଜଳେ ବୁଡ଼ି ଗଲା ସେ ଦଇତ ।
ଦୁର୍ଗାଦେବୀ ତହିଁ ବୁଡ଼ି ହୋଇଲେ ଚକିତ ॥
ବିଚାରନ୍ତି ଏହାକୁ ତ ନ ପାରିଲି ମାରି ।
ଛାଡ଼ିଦେଲେ ମାରିବ ଏ ବ୍ରହ୍ମା ଆଦି କରି ॥
ଶୂଳ ଛାଡ଼ିଲେ ତ ଅଭୁ ନ ପାରିବ ଧରି ।
କିବା କରିବି ଏହାକୁ କ ଉପାୟ କରି ॥

ଧନ୍ୟ ଏହାର ଜୀବନ ବିଧାତା ରଚିଲା ।
ଜଳ ଅନଳରେ ଏହା ମରଣ ନୋହିଲା ॥
ଘୋର ଗର୍ଜନ କରଇ ଜଳରେ ମହିଷା ।
ଦୁର୍ଗାଦେବୀ ଛୁଟ୍‌ଛନ୍ଦ ମାରିବା ଭରସା ॥
ଦୁର୍ଗାଙ୍କର ଭାବନାରୁ ଏସନ ସମୟେ ।
ସର୍ବଶୁଭେ ଏକଦେବୀ ଜନମ ଯେ ହୁଏ ॥
କାନ୍ୟକ ବନରେ ବହ୍ନି ଜଳପାଣ ଯେନ ।
ଦିବ୍ୟରୂପ ପ୍ରକାଶିଲେ ପୂରିଲା ଅବନୀ ॥
ମହିଷାସୁର ହୃଦରେ ଲଗାଇ ଝିଙ୍କିଲେ ।
କ୍ଷଣକେ ଜଳଭିତରୁ କୂଳକୁ ଆଣିଲେ ॥
ମହିଷା ଅଙ୍ଗେ ମାଡଛନ୍ତି ଶୂଳ ଦୁର୍ଗା ଦେବୀ ।
ଅସୁର ଗର୍ଜନେ କମ୍ପ ଅଛି ପୃଥ୍ୱୀଦେବୀ ॥
ଦୁର୍ଗାଙ୍କ ପାଶରେ ଯାହାନାହିଁ ଆନ କେହି ।
ଏକା ସର୍ବମଙ୍ଗଳା ଯେ ଛନ୍ତି ଉଭା ହୋଇ ॥
ମହିଷା ଯନ୍ତ୍ରେ ବିନାଶ ନୋହିଲାକ ପୁଣି ।
ଅଦ୍ଭୁତେ ଦେବୀଙ୍କ ଚାହିଁଲେକ ଗୋସାମଣୀ ।
ଦେବୀଙ୍କ ମନ ଜାଣି ସେ ଦେଲେକ ସମ୍ବାଦ ।
ମନରେ ମହାମାୟେ ଗୋ ନୁହସି ବିଷାଦ ॥
ଶୁଣସେ ଗୋ ମାତା ଏବେ ମହିଷାସୁର କଥା ।
ଶିବ ପ୍ରବେଶ ଯୁଗରେ ତୋଷ ବ୍ରହ୍ମବେତ୍ତା ॥
ଅଶୀସହସ୍ର ବରଷ କଲା ଘୋର ତପ ।
ଏଣେ ବର ଦେଲେ ପିତା ତପ ଅନୁରୂପ ॥
ପୁରୁଷଙ୍କରେ ଅବଧ ମାଗିଲା ଏ ବର ।
ବିଷ୍ଣୁ ସମାନ ନ ହେଲେ ଭରିଲେ ସମର ॥
ମନ୍ତ୍ରୀ କହିଲା ବୁଝାଇ ଏହାର ଅସୁର ।
ବିଷ୍ଣୁ ହୋଇବେଟି ସ୍ତ୍ରୀରୂପେ ଅବତାର ॥
ମହିଷା ବୋଇଲା ମନ୍ତ୍ରି କିସ ତୋର ବୁଦ୍ଧି ।
ସ୍ତ୍ରୀ ଜାତକୁ ଭୟ କରି ବର କି ମାଗିବ ॥
ସ୍ତ୍ରୀ ଜାତ ପାମରୀ କିସ ଶକ୍ତି ତାଙ୍କ ହୁଏ ।
ତାହା ଜାତକୁ ମୋହର ପୁଣ କିସ ଭୟେ ॥
ମନ୍ତ୍ରୀ ବୋଲେ ଦେବଙ୍କର ଅଛନ୍ତି ଉପାୟ ।
ସ୍ତ୍ରୀ ରୂପରେ ଜନ୍ମ ହୁଏ ଦେବ ନାରାୟଣ ॥
ଏହା ଶୁଣି ମହିଷାକୁ ଲାଗିଲାଟି ଚିନ୍ତା ।
ବ୍ରହ୍ମାଙ୍କୁ ବୋଇଲା ତହୁଁ ଦୈତ୍ୟବଳବନ୍ତା ॥
ପିତା ବୋଇଲେ ରେ ମାଗୁ ଜନା ବର ଯାହା ।
ଅବଶ୍ୟ ଅନ୍ତପର୍ଯ୍ୟନ୍ତେ ଦେବ ତୋତେ ତାହା ॥
ସ୍ୱାମି ଯେଉଁ ସ୍ତ୍ରୀ ଯୁଦ୍ଧେ ଜିଣିବଟି ମୋତେ ।
ମୁଁ ବଧ ହେବ ତା ଜାନୁ ଯୌବନ ଦେଖନ୍ତେ ॥
ମାଗୋ ଏ ବର ବ୍ରହ୍ମାଙ୍କୁ ମାଗିଅଛି ପୂର୍ବେ ।
ତୁ ତାହାକୁ ବଧ କର ଯୋଡ଼ି ଅଛୁ ଏବେ ॥
ମାଗୋ ତୋର ଭଗମାର୍ଗ ନ ଦେଖାଇ ଯେବେ ।
କୋଟିଯୁଗେ ମହିଷାସୁର ନ ମରଇ ତେବେ ॥
ସ୍ୱରୂପ ଗ୍ରହଣ ହେବୁ ତୁ ଉଲଗ୍ନଶାୟୀ ।
ମହିଷା ମୋହ ହେବ ତୋର ଯୌବନକୁ ଚାହିଁ ॥
ଅଦ୍ଭୁତେ କହିଲା ସେ ଦେବୀ ଏମନ୍ତ ବାଣୀ ।
ଦୁର୍ଗା ବିସ୍ମୟ ହୋଇଲେ ତାର ବାକ୍ୟ ଶୁଣି ॥
ବୋଇଲେ ଅମର ନାଗ ଲୋକନ୍ତ ଦେଖନ୍ତେ ।
ଅଗୋ ମୁଁ ଉଲଗ୍ନ ରୂପ ହୋଇବି କେମନ୍ତେ ॥
ଯା ଶୁଣି ବୋଇଲେ ଅଦଭୁତେ ମହାଦେବୀ ।
ଉଲଗ୍ନ ହେଲେ ଦଇତ ହେବ ପରାଭବୀ ॥
ତୁ ଯେବେ ଗୋ ଏ କଥାକୁ କରୁଛୁଟି କ୍ଷମା ।
ଦେବଙ୍କ ଟିକେ ତୁଟିଲା ନୋହିବେଟି ରକ୍ଷା ॥
ସତ୍ୟ ତ୍ରେତୟା ଦ୍ୱାପର କଳିର ଏ କଥା ।
ଏମନ୍ତ ନୋହିଲେ ମହିଷା ନମରେ ଗୋ ମାତା ॥
ଏ ସମୟେ ଦେବତାଏ ପ୍ରକାଶିଲେ ବାଣୀ ।
ଯାହା କହିଲେ ଗୋ ସତ୍ୟ ଦୁର୍ଗତିତାରିଣୀ ॥
ଏ କଥାକୁ ମାଗୋ ତୁମ୍ଭେ ନ କଲେ ସମ୍ମତ ।
ନିଶ୍ଚେ ଚଉଦ ଭୁବନ ଲୋକେ ହେବେ ହତ ॥
ଦେବତାଙ୍କ ବଚନରେ ଦେବୀ ମହାମାୟୀ ।
ଅଦଭୁତେ ଦେବୀଙ୍କର ଠାରେ କଲେ ଦୟା ॥
ବୋଇଲେ ମଙ୍ଗଳେ କହୁ ମଙ୍ଗଳ ବଚନ ।
ତୋ ଯୋଗେ କଷ୍ଟରୁ ଦେବେ ପାଇଲେ ଜୀବପ୍ରାଣ
ମୋହର ସଙ୍କଟ ଯେବେ ଫେଡିଲୁ ଅବଳା ।
ତୋହର ନାମ ଗୋ ହେଉ ଶ୍ରୀ ସର୍ବମଙ୍ଗଳା ॥
ତିନିପୁରମଧ୍ୟେ ତୁହି ପାଅ ଅଗ୍ରପୂଜା ।
ବୃହସ୍ପତି ସମାନେ ତୁ ପଣ୍ଡିତା ହୁଅ ଯା ॥
ବ୍ରହ୍ମ କ୍ଷତ୍ରି ବୈଶ୍ୟ ଶୂଦ୍ର ଅଷ୍ଟାଦଶବର୍ଣ୍ଣେ ।
ତୋତେ ପୂଜା କରନ୍ତୁ ଗୋ ସର୍ବେ ତୋଷମନେ
ଜୟ କାତ୍ୟାୟନୀ ସର୍ବମଙ୍ଗଳା ଗୋ ତୁହି ।
ବିପଦଖଣ୍ଡିନୀ ନାମ ତୋହର ଅଟଇ ॥
ସଙ୍କଟତାରିଣୀ ମାଗୋ ଦୟା ତୋର ବୁଦ୍ଧି ।
ଦୁର୍ଗା ଦୁର୍ଗତି ଖଣ୍ଡିଣ କାର୍ଯ୍ୟ କରୁ ସିଦ୍ଧି ॥

ଜୀବ ଜାତ ବନାଅଛୁ ତୋହର ସେ ଉଦରୁ ।
ସକଳଁ ଚାହିଲୁ ଦୁର୍ଗା ଦେବୀଙ୍କୁ ଜୟ ଭୁ ॥
ଏମନେ ସେ ଶୁଣଇ ମଙ୍ଗଳାଙ୍କ କଥା ।
ଅପଦମାନ ଖଣ୍ଡଇ ସ୍ମରଣେ ସର୍ବବ୍ୟଥା ॥
ସର୍ବମଙ୍ଗଳା ସ୍ମରଣେ ବୁଦ୍ଧି ହୁଏ ବୃଦ୍ଧି ।
ସର୍ବମଙ୍ଗଳା ସ୍ମରଣେ ନାଶ ଯାଇ ବ୍ୟାଧି ॥
ସର୍ବମଙ୍ଗଳା ସ୍ମରଣେ ବିନାଶ ଉତ୍ପାତ ।
ସର୍ବମଙ୍ଗଳା ସ୍ମରଣେ ପୁତ୍ର ହୁଏ ଜାତ ॥
ପ୍ରତ୍ୟକ୍ଷ ବର ଦାୟିନୀ ସେହି ମହାଦେବୀ ।
ତାହାର ଚରଣ ଭଜେ ଶ୍ରୀ ସାରଳା କବି ॥
ସର୍ବମଙ୍ଗଳା ଚରଣେ ନିତ୍ୟ ଥାଉ ସେବା ।
ଶୂଦ୍ରମୁନି ସାରଳାଙ୍କୁ ଗତି ମୁକ୍ତି ଦେବା ॥
ଶୁଣ ପରୀକ୍ଷିତ ତୁ ହୋ ବୋଲି ଶୁକବ୍ରହ୍ମା ।
ମହାଦୁଷ୍ଟପଦ ମୈଷା ଅସୁର ମହିମା ॥
ଯେବଣ ବୁଦ୍ଧି କହିଲେ ସେ ସର୍ବମଙ୍ଗଳେ ।
ସେ ବଚନ ଦୁର୍ଗା ଘେନିଛନ୍ତି ହୃଦସ୍ଥଳେ ॥
ସିନ୍ଧୁ ଉତ୍ତର କୂଳକୁ ଅଣି ମହାମାୟୀ ।
ମୈଷା ନ ରହେ ପବନଠାରୁ ବେଗେ ଯାଇ ॥
ମଙ୍ଗଳା ବୋଇଲେ ମାଗୋ ବିଳମ୍ବ ନ କର ।
ଏରୂପ ଛାଡ଼ିଣ ଆନ ରୂପ ଏବେ ଧର ॥
ବିଳମ୍ବ ନ କର ସୃଷ୍ଟି ହେଉଅଛି ନାଶ ।
ବନ ଗିରି ପୂର୍ଣ୍ଣ ହୁଏ ପାଇ ସୁର ତ୍ରାସ ॥
ଦୁର୍ଗା ବୋଇଲେ ଅକର୍ମ ଅଟେ ଯେଉଁ କଥା ।
କାହିଁ ଦେଖାଇବ ନେଇ ଦେଖିବେ ଦେବତା ॥
ନ ମରୁ ପଛକେ ଏହି ଦନୁଜ ଚଣ୍ଡାଳ ।
ନ ଥାନ୍ତୁ କି ନା କେ ଦେବେ ଗଗନମଣ୍ଡଳ
ନ ଥାଉ କିନା କେ ଏହି ନବଦ୍ୱୀପା ପୃଥ୍ୱୀ ।
ତ୍ରୈଲୋକ୍ୟେ କି ଦୂଷିତା ମୁଁ ହେବି ମହାମତି ॥
ଏସନ ନିଗୂଢ଼ ବାଣୀ ଦୁର୍ଗାଙ୍କର ଶୁଣି ।
ସ୍ୱର୍ଗେ ଦେବେ ତା ଦ୍ୟନ୍ତ ରଖ ଗୋସାମଣି ॥
ମଙ୍ଗଳା ବୋଇଲେ ନାହିଁ ନ କଲୁ ଅସନ୍ତି ।
ଦେବତାଏ ହୋଇଥାନ୍ତେ ନିସ୍ତେଜ ବେଳନ୍ତି ।
କଲ୍ପ ହୋଇ ବନାଶିଲୁ ସହସ୍ରେକ ଭୁଜ ।
ଦେବେ ଦେଲେ ସମସ୍ତଙ୍କୁ ଶରୀର ନାଗଜ ॥
ପ୍ରତିଷ୍ଠା କଲି ତାହ ଦେବତାଙ୍କ ତହିଁ ।
ମହତଙ୍କର ବଚନ ଅନ୍ୟ ହେବ କାହିଁ ॥

ନଷ୍ଟଚନ୍ଦ୍ର ଦେବେବହିଲେ ସ୍ୱର୍ଗେ ତୋ ଅନ୍ତରେ ।
ପୁଣ ସ୍ଥାନଭ୍ରଷ୍ଟ ଦେବେ କହ କେଉଁ ଦୋଷେ ॥
ପୂର୍ବ ଛାଡ଼ି ପଶ୍ଚିମରେ ଉଦେ ଦିନକର ।
ଦକ୍ଷିଣ ଛାଡ଼ିଣ ସିନ୍ଧୁ ମାଡ଼ିବ ଉତ୍ତର ॥
ପର୍ବତ ଉପରେ ଯେବେ ଫୁଟିବ ନଳିନୀ ।
ତେବେ ଆନ ନୋହଇଟି ମହତଙ୍କ ବାଣୀ ॥
ଅନେକ କଷ୍ଟକ ସହି କଲେକ ଦଇତେ ।
ତେଣୁ ମହତନେ ଲଗେ ଅଟଣ୍ଡକଲେ ତୋତେ ॥
ଛାଡ଼ି ମନୁ ଭ୍ରାନ୍ତି ଖଣ୍ଡ ଦେବଙ୍କ ଅପଦ ।
ଏତେ ବୋଲି ନମିଲେକ ସର୍ବେ ପଦ୍ମପାଦ ॥
କ୍ଷଣ କାଳ ବିଶ୍ରାମ ନ କରେ ଯାତୁଧାନ ।
ପଞ୍ଚସପ୍ତ ଯୋଜନ ତ ସେ କାମ୍ୟକ ବନ ॥
ତହିଁ ପରବେଶ ଯାଇଁ କ୍ଷଣକେ ହୋଇଲା ।
ବେଳୁଁ ବେଳ ଅସୁରର ପ୍ରତାପ ବଢ଼ିଲା ॥
ତାରେଣୀ ନାମେ ଉତ୍ତରୁ ବହଇ ଯେ ନଦୀ ।
ପୁଣ ପୁଣ ମଙ୍ଗଳା ତପ ବାକ୍ୟରେ ପ୍ରବୋଧି ॥
ମଙ୍ଗଳା ବଚନ ଶୁଣି ଦୁର୍ଗତି ତାରିଣୀ ।
ଚାମୁଣ୍ଡା ରୂପକୁ ଧଇଲେକ ଗୋସାମଣୀ ॥
ବିବସନ ହେଲେ କେଶ କରିଣ ମୁକୁଳ ।
କାଛୁଟା ପିନ୍ଧିଲେ ବଡ଼ସଇ ଜାନୁ ଯେ ଯୁଗଳ
ସ୍ତନ ଯୌବନ ସମସ୍ତ ହୋଇଲାକ ଦୃଶ୍ୟ ।
ତେତିଶକୋଟି ଦେବତା ପାଇ ମହାତ୍ରାସ ॥
ଏସନ ଦେଖିଣ ମୈଷା ଚକିତେ ରହିଲା ।
ବେନି ଲୋଚନରେ ଦୁର୍ଗା ରୂପକୁ ଚାହିଁଲା ॥
ଦେବଙ୍କୁ ଦୃଷ୍ଟିରେ ଯେଉଁ ଭଗ ମାର୍ଗସ୍ଥାନ ।
ତା ଦେଖିବାକୁ ମହିଷା ହୋଇଲା ଭଜନ ॥
ମହିଷାସୁର ହୃଦରେ ଭାବେ ପୁଣ ପୁଣି ।
ପ୍ରତ୍ୟକ୍ଷେ ଏ ମହାସ୍ୱାଣୀ ଦୁର୍ଗତିତାରିଣୀ ॥
ସଂଗ୍ରାମେ ନାଶ ନୋହିଲା ଯହିଁ ମୋର କାୟେ ।
ମହାକୂଟକୁ ପାଞ୍ଚିଲା ସ୍ତ୍ରୀଲିଙ୍ଗ ଉପାୟେ ॥
ଏବେ ମୁଁ ଯେବେ ମୁଣ୍ଡକୁ ନ କରିବି ଲଜ୍ଜା ।
ପ୍ରାଣ ବିସର୍ଜନ କାଳେ ହୋଇବ କି ରକ୍ଷା ॥
ମୈଷା ଭାବିଲେ ମୋର ପଞ୍ଚଆତ୍ମା ପଞ୍ଚମନ ।
କାଳେ କାଳେ ଲଯ୍ଯ ରହି ଦୁର୍ଗାଜାନୁ ସ୍ତନ ॥
ବକ୍ଷସ୍ଥଳେ ଶୂଳ ଭୁଷା ହୋଇଅଛି ମୋର ।
ନ ଗଳଇ ଦେହରେ ଏ ତନେକ ମାତର ॥

ପିତାମହର ବଚନ ସତ୍ୟ ସତ୍ୟ ସତ୍ୟ ।
କହିଅଛି ଏ ଲୋକରେ ଗ୍ଲାନିର ଜୀବନ ॥
ଅସୁର ବର ଯେ ମୋତେ ଧାତା ଦେଇଥିଲେ ।
ମୋ ସାକ୍ଷାତେ ଏ କଥା ମୃତ୍ୟୁ ଭେଦ ସେ କହିଲେ ॥
ମୁହିଁ ସ୍ଥିର ହୋଇଣ ଯେ ରହିବଇଁ ଏବେ ।
ନିହତ ହୋଇଲେ ସତ୍ୟଭଗ୍ନ ହେବ ତେବେ ॥
ହେ ପରମ ବ୍ରହ୍ମଦେ ମୈଷା ଏହା ବିଚାରଇ ।
ଦୁର୍ଗାରୂପ ଦେଖି କରି ଚକିତେ ରହଇ ॥
ନିଷ୍ଟେଷ୍ଟେ ରହେ ତାରେଣୀ ନଦୀର କୂଳରେ ।
ଉଦରେ ମାରିଲେ ଶୂଳ ଦେବୀ ତା ବକ୍ଷରେ ॥
ଅଧୋମୁଖେ ସ୍ଥିର ସେ ଅସୁର ମହିଷା ।
ସ୍ତ୍ରୀ ଲିଙ୍ଗ ଦେଖିଣ ସେହୁ ହୋଇଲା ନିରାଶା ॥
ନିହତ ହୋଇଣ ତହିଁ ମେଷାସୁର ରହି ।
ଦୁର୍ଗା ଦେବୀଙ୍କର ମୁଖ ଅନୁକ୍ଷଣେ ଚାହିଁ ॥
ଯହିଁ ମୃତ ଶବ ପରି ମୈଷାସୁର ରହେ ।
ଦୁର୍ଗାଦେବୀଙ୍କର ମନ ପ୍ରଫୁଲ୍ଲିତ ହୁଏ ॥
ଦୁର୍ଗା ବୋଇଲେ ମଙ୍ଗଳା ବଦନକୁ ଚାହିଁ ।
ତୋହ ପ୍ରାୟ ଦେବୀ ଏକ ଦେଖିଲି ମୋ ନାହିଁ ॥
ସୁପଣ୍ଡିତା ବଜ୍ରଚନ୍ଦ୍ରା ଅଟୁ ଜାଣ ତୁହି ।
ତୋ ବଚନେ ମହିଷାକୁ ବଧ କଲି ମୁହିଁ ॥
ଅନେକ ଅନେକ ଦେବୀ କଲି ମୁହିଁ ଜନ୍ମ ।
ସମସ୍ତ ଦେବୀଙ୍କ ମଧ୍ୟେ ଅଟୁ ମୋକ୍ଷବାନ ॥
ସମସ୍ତ ସିଦ୍ଧି ମୋହର ତୋର ପରସାଦେ ।
ସିଦ୍ଧମଙ୍ଗଳା ବୋଲନ୍ତି ଲୋକେ ତୋତେ ହାଦେ ॥
ଦେବତାଙ୍କର ଅଭୀଷ୍ଟ କଲୁ ତୁହି ଶାନ୍ତି ।
ଏ ମଣ୍ଡମଣ୍ଡଳକୁ ଗୋ ପେଡିଲୁ ଦୁର୍ଗତି ॥
ସମସ୍ତ ଜନେ ତୋତେ ଗୋ ଅର୍ଚ୍ଚନା କରନ୍ତୁ ।
ଆପଦ ଅରିଷ୍ଟି ମାନ ତୋହରେ ଖଣ୍ଡନ୍ତୁ ॥
ଆକାଶେ ବହୁ ଆନନ୍ଦ ହୋଇଲେ ଦେବତା ।
ବୋଇଲେ ସଂସାର ରକ୍ଷା କଲୁ ଜଗନ୍ମାତା ॥
ଯେ ଜନ ସେବିବେ ତୋତେ ଭକ୍ତିରେ ଏ ଦିନ ।
ତାହାଙ୍କର ଦୁଃଖମାନ ହେବ ଗୋ ଖଣ୍ଡନ ॥
ଶୁଣ ହୋ ପଣ୍ଡିତ ତୁ ଉତ୍ତମ ରହସ୍ୟ ।
ଅଶ୍ୱାଷ୍ଟମେ ସେ ଅସୁର ଯହିଁ ଗଲା ନାଶ ॥
ଦୁର୍ଗାସ୍ତ୍ରଜାନୁ ଚାହିଁ ସେ ମହିଷାସୁର ।
ମୃତ ଶବ ପରି ପଡିଗଲା ହୋଇ ସ୍ଥିର ॥

ଦୁର୍ଗା ବିଗ୍ରହନ୍ତ ବହୁସାନ୍ ପରବତେ ।
ମହିଷାକୁ ମାରି ବିଜେ କରିବାକୁ ଏଥେ ॥
ଏତେ ବିଗ୍ରହଣ ମନେ ଦୁର୍ଗା ମହାମାୟେ ।
ସମସ୍ତ ଅସୁରଗଣ ଯହିଁ ହେଲେ କ୍ଷୟେ ॥
ଦୈତ୍ୟବଳ ସକଳଙ୍କୁ ନାଶି ଗୋସାମଣୀ ।
ମହା ସାନନ୍ଦ ହୋଇ ସେ ଦୁର୍ଗତିତାରିଣୀ ॥
ଚାମୁଣ୍ଡା ରୂପ ଧରିଣ ମହିଷାକୁ ମାରି ।
ସମସ୍ତ ଦେବୀମାନଙ୍କୁ ଛାମୁକୁ ହକାରି ॥
ନାରାୟଣୀ ବ୍ରହ୍ମାୟଣୀ ରୁଦ୍ରାଣୀ ଭୈରବୀ ।
ଇନ୍ଦ୍ରାୟଣୀ ବାସେଳୀ ଚର୍ଚ୍ଚିକା ମାଧବୀ ॥
କାଳିକା କଙ୍କାଳୀ ବେତାଳୀ ଯେ ଉଗ୍ରତାରା ।
ସମ୍ଭାଗ୍ନି ମାତଙ୍ଗୀ ଜମେଯାଇ ଯେ ଅପୂର୍ବ ॥
ବାମାୟଣୀ ଚଣ୍ଡୀ ଶାନ୍ତ କାନ୍ତ ମାରକମା ।
ଲୁଠାସ୍ୱ ରୁଷ୍ଟାକ୍ଷୀ ଅରୁଷ୍ଟାକ୍ଷୀ ଗୋଳକମା ॥
ଇତ୍ୟାଦି ଯେ ଚଉଷଠି ଯୋଗିନୀଗଣ ମାନ ।
ନବକୋଟି କାତ୍ୟାୟନୀ ପିଶାଚୁଣୀଗଣ ॥
ଆଉର ପଦ୍ମ ସେ ଚଣ୍ଡୀ ଶୋଣେହା ମୂରତି ।
ଡାକନ୍ତ ସହିତେ ସର୍ବେ ଛାମୁରେ ମିଳନ୍ତି ॥
ଯୋଗିନୀ ବୃନ୍ଦ ଦେଖି ଆଜ୍ଞା ଦେଲେ ଠାକୁରାଣୀ ।
ଅସୁର ବଳ ତ ଶେଷ ହୋଇଲେ ଗୋ ପୁଣି ॥
ଛେନାବନ ନଗ୍ରକୁ ସର୍ବେ ଏବେ ଯାଅ ।
ତହିଁ ଥିବା ଅସୁର ଅସୁରୀ ସର୍ବ ଖାଅ ॥
ଆଜ୍ଞା ପରମାଣେ ଧାଇଁଲେକ ଦେବୀମାନେ ।
ତକ୍ଷଣେ ତ୍ରବେଗ ହେଲେ ଛେନାବନ ସ୍ଥାନେ ॥
ଦେଖିଲେ ପୁର ଅମରାବତୀକି ଯେ ସମ ।
ପ୍ରସାଦ ଜଗତି ଅଟ୍ଟାଳିକା ମନୋରମ ॥
ଧାଇଁ ଦେବୀମାନେ ଭଙ୍ଗି ଦାରୁଣାର କଲେ ।
ଅସୁର ଅସୁରୀମାନ ଧରିଣ ଖାଇଲେ ॥
ନେଡ଼େ ବଡ଼ ରାଷ୍ଟ୍ରରେ ଯେ ହେଲା ହାଲହୋଳ ।
ଅସୁର ଅସୁରୀମାନେ ପାଡ଼ନ୍ତି ବୋବାଳ ॥
ତାହା ଶୁଣି କରି ଦେବୀମାନେ ଖୋଜି ଦିଅନ୍ତି ।
ରୁଣ୍ଡ ବସ୍ତ୍ରାବଣ ସବୁ ଧରି ଗିଳି ଯାନ୍ତି ॥
ବାଳକଙ୍କ ମେଳ ସଖା ଭଙ୍ଗି ପରକାରେ ।
ଖେଳକର ଦେବୀମାନେ ମାରନ୍ତି ସୁଖରେ ॥
ବୃଦ୍ଧ ବାଳକ ଅସୁର ଅସୁରୀ ଯେ ଥିଲେ ।
ନିମିଷକେ ଯୋଗିନୀଗଣ ମୁଖେ ନାଶ କଲେ ॥

ମେଦ ମେଦା ମାଂସ ସର୍ବେ ନହିଁ ଗ୍ରାସକଲେ ।
ସେନାବଳ ନଷ୍ଟେ ଏକାଂଶୋଷ୍ଟ ନ ରହିଲେ ॥
ଅଷ୍ଟମୀ ଅନ୍ତରେ ମହାନବମୀ ପ୍ରବେଶ ।
ନାଶ ହୋଇଲେ ଯେ ତହିଁ ସମସ୍ତ ରାକ୍ଷସ ॥
ଶୁଣ ହୋ ପରୀକ୍ଷ ରାଜା କହେ ଶୁକବ୍ରହ୍ମା ।
ଚଣ୍ଡୀଯୁଦ୍ଧର ଅନ୍ତରେ ଏମନ୍ତ ମହିମା ॥
ଅପଶ୍ୟ ଅଗୋଚରିତ ଅସମ୍ଭବ କଥା ।
ଦେବଙ୍କୁ ଦୁର୍ଲ୍ଲଭ ଅଟେ ସମର ବାରତା ॥
କନ୍ୟା ଅଷ୍ଟମୀରେ ଦୁର୍ଗା ହେଲେ ଉତପତ୍ତି ।
ନବମୀ ଦିନାର୍ଦ୍ଧେ ଦେବତାଏ କଲେ ସ୍ତୁତି ॥
ସେଦିନ ସେ ଦୁର୍ଗାଦେବୀ କେଶରୀ ଆରୁଢେ ।
ରହି ବିରଶିବଙ୍କ ଶଳେ କଲେ ଯାଇଁ ଗାଢେ ॥
ସେହି ଦିନରୁ ଯେ ତହିଁ ହୋଇଲା ସଂଗ୍ରାମ ।
ଶୁକ୍ଳାଷ୍ଟମୀ ଅନ୍ତେ ମହାନବମୀ ବିଶ୍ରାମ ॥
କନ୍ୟା ଶୁକ୍ଳ ନବମୀ କାଳସନ୍ଧି କୁମାରୀ ।
ମହାନବମୀ ସନ୍ଧିରେ ହେଲେ ମହାମାରୀ ॥
ଯେତେ ଅସୁର ଅସୁରୀମାନେ ତହିଁ ଥିଲେ ।
ଯୋଗିନୀମାନଙ୍କ ମୁଖରେ ସମସ୍ତେ ପଡ଼ିଲେ ॥
ଅସୁର ଅସୁରୀସର୍ବେ ଗଲେ ଯହିଁ ନାଶ ।
ଦେବେ ଅନେକ ଉତ୍ସବ କଲେକ ଅକାଶ ॥
ଅସୁରବଳ ନାଶିଣ ସର୍ବ ଦେବୀମାନେ ।
ପ୍ରବେଶ ହୋଇଲେ ଯାଇଁ ଦୁର୍ଗା ସନ୍ନିଧାନେ ॥
ଦୁର୍ଗାଦେବୀ ବୋଇଲେକ ତାଙ୍କ ମୁଖ ଚାହିଁ ।
ଅସୁର ବଳମାନନ୍ତ ପାଇଲ କି ତହିଁ ॥
ଦୁର୍ଗାର ବଚନେ କହନ୍ତି ଯେ ନମିଯାଇ ।
ଯେ ଯାହାରେ ଖାଇଲୁଁ ଗୋ କିଛି ତହିଁ ନାହିଁ ॥
ଶୁଣିକରି ଦୁର୍ଗାଦେବୀ ହୋଇଲେ ହରଷ ।
ଦେବତାଙ୍କ ବଇରୀତ ସବୁ ଗଲେ ନାଶ ॥
ଜୟ ଜୟ ଶବଦ ଯେ ଶୁଭିଲ ଅକାଶ ।
ଅକାଶେ ହରଷ ହେଲେ ସମସ୍ତ ତ୍ରିଦଶ ॥
ଦେବୀମାନେ ଉଭାହେଲେ ଚାହିଁ ଜୟଦୁର୍ଗେ ।
ସର୍ବମଙ୍ଗଳାକୁ ମାଏ ଡକାଇଲେ ବେଗେ ॥
ଆଜ୍ଞା ପାଇଣ ମଙ୍ଗଳା ବେଗେ୨ ଆସି ।
କରପଦ୍ମ ଯୋଡ଼ିଣ ସେ ବଚନ ସମ୍ଭାଷି ॥
କେ ଦେବି ଦୁର୍ଗେ କାହିଁକି ଡକରା ହେଉଛି ।
କେଉଁ ଆଜ୍ଞା ହୋଇବ ଗୋ କହିର ଜଣାଉଛି ॥
ଶୁଣି ଦୁର୍ଗେ ମଙ୍ଗଳାଙ୍କ କହନ୍ତି ବଚନ ।
ଦେବଙ୍କୁ ଦୁର୍ଲ୍ଲଭ ଦେଶ୍ବରର କଥାମାନ ॥
ଏହାଙ୍କ ତହିଁ ଥୋଇବା କହ ଦିବ୍ୟସ୍ଥାନ ।
ଏହାଙ୍କ ତେଜ କେ ସହିବାକୁ କି ଭାଜନ ॥
ଏକଥାକୁ ମୋତେ ବୁଦ୍ଧି କହ ଗୋ ମଙ୍ଗଳା ।
ମୁଁ ତ ଦେଖୁଅଛି ସର୍ବେ ମହ ଅନର୍ଗଳା ॥
ସର୍ବମଙ୍ଗଳା ବୋଇଲେ ଶୁଣ ଗୋସାମଣି ।
ମୁଁ ତୁମ୍ଭ ଛାମୁରେ କହୁଅଛି ମହାରାଣୀ ॥
ମୋତେ ଦିଶଇ ଗୋ ମାସ୍ତେ ଏସନେକ ବାଟ ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ସୌରାଷ୍ଟ୍ର ॥
ଏ ଚତୁର୍ଦ୍ଦିଗରେ ରହିବ ଗୋ ଦେବୀମାନେ ।
ଅମାତ ନକରିବେ ତୋ ଆଜ୍ଞା ପରମାଣେ ॥
ଦେଶ ବିଦେଶ କଟକ ପାଟଣା ଅନ୍ଦରେ ।
ଆଜ୍ଞାରେ ରହିବେ ଯାଇଁ ଯେ ଯାହା ଖଣ୍ଡରେ ॥
ମାଗୋ ଗ୍ରାମକେ ସୀମାଏ ଦେଇଥିବା ବାଣ୍ଟି ।
ସୁଖେ ଭୋଗ କରିବେ ଯେ ଯାହାର ସୀମାଟି ॥
ଦୁର୍ଗା ଯହୁଁ ଯା ଶୁଣିଲେ ମଙ୍ଗଳାଙ୍କ ବାଣୀ ।
ଅତ୍ୟନ୍ତ ସାନନ୍ଦ ହେଲେ ଦୁର୍ଗତିତାରିଣୀ ॥
ସମସ୍ତ ଦେବୀଙ୍କୁ ଦୁର୍ଗା ଡକାଇଲେ ପାଶ ।
ଗ୍ରାମକେ ରହ ଲେ ଜଣେ୨ କର ବାସ ॥
ଜମ୍ବୁଦ୍ବୀପ ପୃଥିବୀରେ ରହ ତୁମ୍ଭେ ଯାଇଁ ।
ଦେଖ କଟକ ପାଟଣା ଯାହା ମନ ଯହିଁ ॥
ଦୁଃଖୀ ଜନମାନଙ୍କର ଆପଦ ଖଣ୍ଡିବ ।
ଯେ ଯାହା ମନାସିବ ଗୋ ତା ସିଦ୍ଧ କରିବ ॥
ମୋହ ଆଜ୍ଞା ଘେନି ତୁମ୍ଭେ ରହ ଲୋ ତୁରିତ ।
ତୁମ୍ଭ ବଚନ ପ୍ରତ୍ୟକ୍ଷ ହୋଇବ ଗୋ ସତ ॥
ଏପରି ଆଜ୍ଞା ପାଇଲେ ଯହୁଁ କାତ୍ୟାୟନୀ ।
ଯେ ଯାହାରେ ରହିଲେ ସେ ଗ୍ରାମସୀମା ଘେନି ॥
ପୂର୍ବ ପଶ୍ଚିମ ଉତ୍ତର ଦିଗ ଯେ ଦକ୍ଷିଣ ।
ଯେଉଁଠାରେ ରହିଲେ ଗ୍ରାମେ ଗ୍ରାମକ ଘେନିଣ ॥
ଅଦଦ ଅରିଷ୍ଟମାନେ କରନ୍ତି ଯେ ଧାନ୍ତ ।
ଯେ ଯାରେ ରହିଲେ ହୋଇ ମହାଶାନ୍ତ ମୂର୍ତ୍ତି ॥
ଏଥୁଅନ୍ତେ ଶୁଣ ପଣ୍ଡିତ ମହାସ୍ବପ୍ନେ ।
ଦୁର୍ଗାର ଚରିତ ଶୁଣି ପାପ କର କ୍ଷୟେ ॥
ଅକାଶରେ ଦେବତାଏ ହୋଇଲେ ହରଷ ।
ବୋଇଲେ ସମସ୍ତେ ଯିବା ଦୁର୍ଗାଙ୍କର ପାଶ ॥

ନଗରରେ ଅର୍ଘ୍ୟ ଧରଣ ସଙ୍ଗ ଦେବତାଏ ।
ବୋଇଲେ ଶାନ୍ତ କରିବା ଗୁଳ ମହାମାୟେ ॥
ସମସ୍ତ ଦେବତାମାନେ ବସ୍ତ୍ରତ ସଂଗେ ।
ଭଗ୍ନ ଭବେ ପ୍ରବେଶ ହେଲେ ଅସଙ୍ଗେ ॥
ଅନେକ ବେଶ ଭୂଷଣ ହୋଇ ଦେବଗଣ ।
ବସ୍ତ୍ର ନୈବିଦ୍ୟ ସମ୍ମୁଖରେ ସେନ ଦ୍ରବ୍ୟମାନ ॥
ଦେଖିଲେ ଗୋସ୍ୱାମଣୀଙ୍କୁ ହବସନଶାସ୍ତ୍ରୀ ।
ଲଜ୍ଜାବରେ ସନ୍ନିଧିକୁ ନ ପାରଲେ ଯାଇଁ ॥
ଦେବତାଙ୍କୁ ଦେଖି କୋପକଲେ ଦେବୀ ଦୁର୍ଗେ ।
ଅଜ ବହନ୍ତା ପୁରୁଷ ନ ଥୋଇବ ସ୍ୱର୍ଗେ ॥
ଦେବେ ଅସୁରଙ୍କୁ ଦେଇଥାନ୍ତି ଏତେ ବର ।
ଏହାଙ୍କର ବରେ ନାଶ ଯାଇ ଚଳପୁର ॥
ଏହାଙ୍କ ବରକୁ ଖଣ୍ଡ୍ୟ ହୋଇବ କାହାର ।
ମମ ଭଗ ଦେଖିବାକୁ ଦଅନ୍ତି ଏ ବର ॥
ମୁଁ ନ ଉଲଗ୍ନ ହୋଇବ ଏହାଙ୍କ ବଚନେ ।
ନ ଥାନ୍ତୁ ସ୍ୱର୍ଗରେ ଏବେ ଦେବଗଣମାନେ ॥
ଦୁର୍ଗା କୋପ ଜାଣିକର ସଙ୍ଗ ଦେବତାଏ ।
ଅହାଙ୍କୁ ପଳାଇଲେ ସେ କର ମହାଭୟେ ॥
ତ୍ରୈଲୋକ୍ୟ ସୋଷଲେ ଦେବୀ ଖଣ୍ଡମୁଣ୍ଡାରୂପେ ।
ମହା କଙ୍କାଳୀ ବେତାଳୀ ଶୋଣେହା ସ୍ୱରୂପେ ।
ଉକଟ କ ରୂପ କରେ ଖପର ଯେ ଖଣ୍ଡା ।
ମୁକୁଳିତ କେଶ ବିଶ୍ୱବ୍ୟାପିତ ଚାମୁଣ୍ଡା ॥
କଙ୍କାଳୀ ରୂପକୁ ଦେବେ ନ ପାରିଲେ ସହିଁ ।
ମହାତାପ ଦେବତାଏ ନ ପାରଲେ ସହି ॥
ସମସ୍ତ ଦେବତାମାନେ କୁହେ ଗୋପ୍ୟହେଲେ ।
ବିଶ୍ୱନାଥ ଦେବତା ଯେ ଯାଇ ନ ପାରିଲେ ॥
କେଶ ଅସମ୍ଭାଳ ଲମ୍ବମାନ ଜଟାଜୁଟ ।
ନୃତ୍ୟ କରନ୍ତି ଯେ ହର ପଳାଇ ନ ପାରି ॥
ଭରହରସନାଯୁକ୍ତ ନୃତ୍ୟରଙ୍ଗେ ଖେଳା ।
ଏକବଂଶ ମୂର୍ଚ୍ଛନା ପଞ୍ଚଦଶ ମୁକୁଳା ॥
ତାଳପୃଷ୍ଠ ବୃନ୍ଦପୃଷ୍ଠ ସହିତ ଉଲ୍ଲଟ ।
ଶଙ୍ଖତାଳ ଧରଣ ସେ ତାଣ୍ଡବରେ ନଟ ॥
ପନାଙ୍ଗ ସପତସ୍ୱର ଅଥାଟି ସ୍ୱର୍ଗଣା ।
ଗଳକନ ନାଥ ଭଳ ହୋଇଲେ ଭେଟଣା ॥
ସାର ବଦଉ ଶୃଙ୍ଗାର କରୁଣାହିଁ ସେହି ।
ତ୍ରସ୍ମନ ମୋହନ ଉତ୍କଳର ସ୍ୱରୂପହିଁ ॥

ମାରୁ ତାରୁ ତୁହିଁ ଅବା ମୋର ଏହି ରୂପ ।
ତା ମନ ମୋହ ହେବ ବା ଦେଖି ମୋ ସ୍ୱରୂପ ॥
ଏମନ୍ତ ଚତୁର କଳ ନୃତ୍ୟ ସେ କରନ୍ତି ।
ପରଂବ୍ରହ୍ମନାଥ ଯେ ଅଭୟ ବିଶ୍ୱମୂର୍ତ୍ତି ॥
ଜଗତରେ ସାର ସେହି ରହସ୍ୟର କଳା ।
ଦେବତାଙ୍କୁ ମୋହନ୍ତି ସେ ସଦା ନୃତ୍ୟେ ଖେଳା
ନବଲକ୍ଷ ଡମରୁକୁ ଅନ୍ତସ୍ୱସେ ଶୂଳ ।
ପଞ୍ଚଦଶ ଲୋଚନରେ ତୁହିଁ ଦେବ ଶୂଳୀ ॥
ଶମଶାନବାସୀ ସେହି ଅଟେ ଶୂଳପାଣି ।
ଦେଖି ବଶ ହେଲ ଦେବୀ ଦୁର୍ଗତତାରଣୀ ॥
ମହାଛନ୍ଦ ନାଟ ଜାଣନ୍ତି ବିଶ୍ୱନାଥ ।
ନିକ ଭବନ ରସକୁ କେହୁ ସାମରଥ ॥
ଈଶ୍ୱର ସନ୍ନିଧେ ହେଲେ ଦେବୀ ମହାମାୟା ।
ବୋଇଲେ ଇଷ୍ଟ ଦେବତା ପୁମର ଜଟଅ ॥
ଅସୁରନ୍ତ ବଳ୍ପାଇଣ ଏତେ ଦଅ ବର ।
ଭୂମିରେ ନାଶ ଯାଉଛି ଏ ସଚରାଚର ॥
ଦେବତାଙ୍କୁ ଭଷିଲେ ମୋ ଫିଟିବ ଅରିଷ୍ଟି ।
ଅଜ ତୋ'ତେ ଭକ୍ଷଣ ମୁଁ କରିବ ଧୂର୍ଜ୍ଜଟି ॥
ଏତେ ବୋଲି ଦେବୀ ମହାମୂରତି ବିସ୍ତାରି ।
ଖଣ୍ଡମୁଣ୍ଡା ରୂପେଣ ସେହୁ ଶୋଷିଲେ ତ୍ରିପୁରି ॥
ଦେଖି ସଦାଶିବ ହଇହଇ ମୁଣ୍ଡେ ଭୟ ।
ବୋଲେ ଇଷ୍ଟ ଦେବତା ତୁ ମୋର ଶାକମ୍ଭରୀ ।
ଈଶ୍ୱର ବୋଇଲେ ଦୁର୍ଗାଦେବୀ ମୋର ମାତା ।
ଦୁର୍ଗାହିଁ ମୋହର ଇଷ୍ଟ କୂଳର ଦେବତା ॥
ଦୁର୍ଗାଦେବୀ ଦୁଃଖକୁ ମୋ କରନ୍ତି ଖଣ୍ଡନ ।
ଅନ୍ତମାନେ ସମସ୍ତେତ ସାକ୍ଷୀ ମାନ ଜାଣ ॥
ଦୁର୍ଗାହିଁ ସେ ଧାତା ଦୁର୍ଗାଦେବୀ ସେ ବିଧାତା ।
ଦୁର୍ଗା ପୃଥ୍ୱୀ ଅପ ତେଜ ଆକାଶ ବହନ୍ତା ।
ଦୁର୍ଗାହିଁ ସେ ବାୟୁ ଜ୍ଞାନ ଦୁର୍ଗାହିଁ ସେ ଧ୍ୟାନ ।
ଦୁର୍ଗା ଦେବୀ ସମସ୍ତର ମନର ପବନ ॥
ଦୁର୍ଗାହିଁ ସେ ମୋର ବନ୍ଧୁ ଦୁର୍ଗାହି ସେ ସିନ୍ଧୁ ।
ଦୁର୍ଗାଶରଣ ଧାରଣ ଅଟେ ପୂର୍ଣ୍ଣଇନ୍ଦୁ ॥
ଦୁର୍ଗାହିଁ ସେ ମୋର ଜପ ଦୁର୍ଗାହିଁ ସେ ତପ ।
ଦୁର୍ଗାହିଁ ସେ ଅଟେ ପରଂବ୍ରହ୍ମର ସ୍ୱରୂପ ॥
ଦୁର୍ଗାହିଁ ଉତ୍ପତ୍ତି କରେ ଦୁର୍ଗାହିଁ ପ୍ରଳୟ ।
ଦୁର୍ଗାହିଁ ସେ ଭୟ ଦୁର୍ଗା ଅଟଇ ଅଭୟ ॥

ଦୁର୍ଗା ଯାବନ୍ତ ସ୍ଥାବର ଅଟେ ଜାଣ ମାତା ।
ଦୁର୍ଗାହିଁ ସେ ଭକ୍ତି ମୁକ୍ତି ବର ପ୍ରଦାତା ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କର ।
ଦୁର୍ଗା ପରସନ୍ନରେ ଯେ ସମସ୍ତେ ଉଦ୍ଧର ॥
ଜଳ ସ୍ଥଳ ଅନଳ ଯେ ବନ ଅବସ୍ଥିତ ।
ଦୁର୍ଗାର ପ୍ରସାଦେ ସର୍ବେ ହୁଅନ୍ତି ଅତଯାତ ॥
ଈଶ୍ୱର ବୋଇଲେ ମାଗୋ ତୁହି ସେ ଅନାଦି ।
ମୁଁ ସିଦ୍ଧଗଣ ଯେନ୍ନ ତୋ ଚରଣରେ ବନ୍ଦି ॥
କେଶବନ୍ତ ଜନକ ତୁ ଅଟକ୍ଳଶ କରନ୍ତା ।
ରୁଦ୍ରେନ୍ତ ଅଗାଧ ଜଳେଁ ତୁହି ଉଦ୍ଧରନ୍ତା ॥
ଏମନ୍ତ ବୋଲିଣ ତହିଁ ଦେବ ପଶୁପତି ।
ଷଟସସ୍ର ଦଣ୍ଡ ପ୍ରଣମିତ ସେ ହୁଅନ୍ତି ॥
ପୁଣି ସେହୁ ଉଭା ହୋଇ ବିନୟେ କହନ୍ତି ।
ଦୁର୍ଗାହିଁ ସେ ଖଣ୍ଡିପାରେ ସକଳ ଦୁର୍ଗତି ॥
ଜନ ସମ୍ପଦ ଦାତା ତୁ ବେଦ ବଖାଣି ।
ଦୁର୍ଗା ନାମ ଅନୁକ୍ଷଣେ ବଦନରେ ଘୋଷି ॥
ଦୁର୍ଗାହିଁ ସେ ବେଦ ମନ୍ତ୍ରର ସର୍ବଶାଖା ।
ଦୁର୍ଗାହିଁ ସେ ସର୍ବକାଳେ କରଥାନ୍ତି ରକ୍ଷା ॥
ଦୁର୍ଗାହିଁ ଆଧାର ଜ୍ୟୋତି ଅଛି ସୁଷୁମ୍ନା ।
ଦୁର୍ଗାହିଁ ଯେ କେବଳ ତ ଅଟେ ବଜ୍ରସେନ୍ଧା ॥
ଦୁର୍ଗାହିଁ କେବଳ ଜପା ଅଜପା ଗାୟତ୍ରୀ ।
ଦୁର୍ଗାହିଁ ସେ ଯୋଗ୍ୟାଯୋଗ୍ୟ କ୍ଷେତ୍ର କ୍ଷେତ୍ରପାନୀ
ଦୁର୍ଗାହିଁ ସେ ଦୁର୍ଗତିରୁ ତାରେ ସର୍ବକାଳେ ।
ଶାରଳା ଦାସ ସେବଇ ଦୁର୍ଗା ପାଦତଳେ ॥
ଯହୁଁ ଅନେକ ବିନୟ ହେଲେ ପଶୁପତି ।
ଶୁଣି ଦୁର୍ଗାଦେବୀ ମନେ ହେଲେ ମହାଶାନ୍ତି ॥
ବୋଇଲେ ତୁମ୍ଭେ ଅଜ୍ଞାନ ଅଟ ଦେବଗଣ ।
ଅସୁରଙ୍କୁ ଏତେ ବର ଦିଅ କି କାରଣ ॥
ବର ଦେଇ ପୁଣି ଏତେ ବିଡମ୍ବନ କର ।
ତାଙ୍କୁ ମାରିବାକୁ ଶକ୍ତି ହୋଇବ କାହାର ॥
ତୁମ୍ଭେହେତୁ ମହତ ଯେ ସରଇ ଅସୁର ।
ଅମ୍ଭ ଶକ୍ତି ଦେଖିବାକୁ ତୁମ୍ଭର ବଳବ ॥
ଅଜ ସେ ଜାଣିବା ବଡ଼ପଣ ହୋ ତୁମ୍ଭର ।
ରଖିବ କେ ତୋତେ ଅସି କହ ହୋ ଈଶ୍ୱର ॥
ତୋତେ ମାରି ସବୁ ଦେବତାଙ୍କୁ ମୁଁ ମାରିବି ।
ଦେବତା ନାମ ସ୍ୱର୍ଗରେ କେବେ ନ ରଖିବି ॥

ସୁମର ଅରେ ଜଣ୍ଟଅ ତୋ ଇଷ୍ଟ ଦେବତା ।
ସୁମର ଅରେ ଜଣ୍ଟଅ ତୋର ମାତା ପିତା ॥
ସୁମର ଅରେ ଜଣ୍ଟଅ ତୋର ବନ୍ଧୁବର୍ଗ ।
ଭୟେ ଶିବ ନମିଲେକ ଦେବୀପାଦେ ବେଗ ॥
ପୁଣି ଉଭା ହୋଇଣ ସେ କହନ୍ତି ବିନୟେ ।
ତୁ ମୋ ଇଷ୍ଟ ଦେବତା ତ ହେଉଛୁ ନିର୍ଣ୍ଣୟେ ॥
ତୁ ମୋ ମାତା ପିତା ବନ୍ଧୁବର୍ଗ ଅଟୁ ତୁହି ।
ତୋ ବିନା କେ ମୋହର ତ ଜଗତରେ ନାହିଁ ॥
ରଖିଲେ ରଖ ତୁ ସା ସକଲେ କର ଗ୍ରାସ ।
ଏତେ କହି ନୃତ୍ୟ କରନ୍ତି ଯେ କୃତ୍ତିବାମ ॥
ଯେଉଁ ନୃତ୍ୟ ଦେଖି ଦେବତାଏ ହୋନ୍ତି ମୋହ ।
ତାହା ଦେଖିବାରେ ଦୁର୍ଗାଦେବୀ କଲେ ସ୍ନେହ ॥
ବୋଇଲେ ରେ ଜଣ୍ଟଅ ତୁ ବର ମାଗ ମାଗ ।
ଯେ ତୋହର ମନବାଞ୍ଛା ମାଗ ଦେବି ବେଗ ॥
ହୋଇଲି ପ୍ରସନ୍ନ ମାଗୁ କି ନା ତୁହି ବର ।
ଈଶ୍ୱର ବୋଇଲେ ଦେବୀ ଯେବେ ସତ୍ୟକର ॥
ଦୁର୍ଗାଦେବୀ ବୋଇଲେ ରେ ସତ୍ୟସତ୍ୟ ମୋର ।
ମାଗୁ କିନା ବର ମନେ ଯେ ଇଚ୍ଛା ତୋହର ॥
ପୁନଃ ପୁନଃ ସତ୍ୟ ତ କଲୁ ଯାଚନ୍ତି ଗିରିଜା ।
ଈଶ୍ୱର ବୋଇଲେ ଦେବୀ ତୁ ମୋର ଭାରିଯା ॥
ସତ୍ୟରେ ସମ୍ମତି କଲେ ତହିଁ କାତ୍ୟାୟନୀ ।
କୋଳ କରିଣ ଈଶ୍ୱର ଧରିଲେ ଭବାନୀ ॥
ମହା ହରଷ ସେ କଲେ ଉମା ମହେଶ୍ୱର ।
ନାରଦ କହିଲେ ଏହା ଦେବଙ୍କ ଅଗର ॥
ବିଜେ କଲେ ଉମାମହେଶ୍ୱର ଏକାସନେ ।
ଗୁଲ ଦର୍ଶନ କରିବା ବୃନ୍ଦାଦିକମାନେ ॥
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ କୁବେର ପବନ ।
ଯମ ଅଗ୍ନି ବରୁଣ ଯେ ପିତୃଗଣମାନ ॥
ତେତିଶ କୋଟି ଦେବତା ବନ୍ଦିତ ସାନନ୍ଦେ ।
ନମିଲେ ସେ ଅମ୍ବମାତଙ୍କର ପଦ୍ମପାଦେ ॥
ଉଠି ଉଭା ହୋଇ ତହୁଁ ଟେରେ କର ଦେଇ ।
ସର୍ବ ଦେବେ ସ୍ତୁତି କଲେ ଏକମୁଖ ହୋଇ ॥
ଜୟ ଜୟ ଉମାମହେଶ୍ୱର ଈଶାନ ।
ଜୟ ଜୟ ଦୁର୍ଗାଦେବୀ ହୋଇବା ପ୍ରସନ୍ନ ॥
ତରିଲୁଁ ଏ ଦୁଖପଙ୍କୁଁ ତୋହର ପ୍ରସନ୍ନେ ॥
ବସିବୁଁ ନିଶ୍ଚିନ୍ତେ ମାଗୋ ଏବେ ସ୍ୱର୍ଗସ୍ଥାନେ ।

ଚିତ୍ତେ ଚେତନ କର ଯୋଡ଼ ପିତାମହ ବହୁ ।
ଦୁର୍ଗାର ଗ୍ରୀମୁଖେ ବନ୍ଧୁ ବନସ୍ଥରେ କହୁ ॥
ଦୁର୍ଗା ବୋଇଲେ ହେ ଶୁଣ ଜଗତ କବିତା ।
ତୁଷ୍ଟପଦ ବର ଦେଲୁ ହୋଇ ବରଦାତା ॥
ଶୁଣ ହୋ ମୋର ବଚନ ସର୍ବ ଦେବତାଏ ।
ମୋତେ ପଚାରୁଛ ତହୁଁ ଯେତେ ଅପଚୟେ ॥
ମହିଷା କାମରୂପୀ ତ ହୁଏଁ ଯେତେବେଳ ।
ପୃଥ୍ୱୀମଧ୍ୟେ ନ ରହେ ସେ ଦୁଷ୍ଟ ଚଣ୍ଡାଳ ॥
ସମୁଦ୍ର ଭିତରେ ପଶିଗଲା ଯେତେବେଳେ ।
ଖଣ୍ଡକେ ବୁଡ଼ିଲି ମୁହିଁ ଅଗାଧ ଜଳେ ॥
ମୋତେ ଅଗୋଚର ଜଳେ ବୁଡ଼ିଣ ସେ ଗଲା ।
ଅଭୂତେ ମୋତେହିଁ ଜାତ ହୋଇଲା ମଙ୍ଗଳା ॥
ଜଳପାଣି ଧରିଣ ସେ ମୈଷାକୁ କେଡ଼ାଇ ।
ଓଷ୍ଠାର ଅଣିଲେ ଅସଜନ ବଟେ ଥାଇ ॥
ହେତୁ ବୁଡ଼ ହୋଇଥିଲି ମୁହିଁ ମହା ଜଳେ ।
ମୈଷାପରେ ବସି ମୁହିଁ ଅସିହେଲି କୂଳେ ॥
ଯେତେବେଳେ ମୈଷାସୁର ଦେହ ହେଲା ଖାଡ଼
ସର୍ବ ଦେବୀମାନେ ଗଲେ ଗଗନର ଉଡ଼ ॥
ସେହୁ ଦେବୀମାନେ ନାନାବିଗରେ ପଡ଼ିଲେ ।
ତେଣୁ ଯେତେ ଉଠେ ମହାପବନ ବହିଲେ ॥
ଚୌଦିଗେ ଗୃହିଲି କେହୁ ନଥିଲେ ମୋ ସାହା
ଶୂନ୍ୟମାନ ମାତ୍ର ଥିଲି ହୋଇଣ ହତାହା ॥
ଏ ଦେବୀ ବୋଇଲେ ମାଗୋ ଏହାକର ତ୍ୟଜ୍ୟ ।
ଏରୂପେ ମାରିଲେ ଗୋ ନ ମରଇ ଦନୁଜା ॥
ଦାନବର ମୃତ୍ୟୁଭେଦ କହିଲା ଏ ମୋତେ ।
ହେଲି ବିବସନଶାୟୀ କାର୍ଯ୍ୟର ନିମିତ୍ତେ ॥
ବିମୁଖ ପାଇ ମୁଁ ଗ୍ରହିଥିଲି ମହିଷାକୁ ।
ଅଛୁ କ ପ୍ରାଣେ ରଖନ୍ତି ସେ ଭୂମିମାନଙ୍କୁ ।
ଅଭୂତେ ପ୍ରସନ୍ନ ଅସି ହେଲେ ମୋତେ ଏ ଯେ ।
ତେଣୁ ବଧ କଲି ମୈଷା ସହସ୍ରେକ ଭୁଜେ ॥
ଏ ଦେବୀ ଯେବେ ଅସି ନ ଥାନ୍ତା ଅଭ ଦଣ୍ଡେ
ମୋ ଛାଡ଼ନ୍ତେ ଦୈତ୍ୟ ଘୋଟିଥାଆନ୍ତା ବ୍ରହ୍ମାଣ୍ଡେ
ସେ ଦୈତ୍ୟକୁ ବଧ କଲି ଏହାବୁଦ୍ଧି ବଳେ ।
ସଖୀ ହୋଇଥିଲା ମାତ୍ର ଏ ସର୍ବମଙ୍ଗଳେ ॥
ମୋହର ମହା ଦୁର୍ଗତି ଏହୁ ପର କଲା ।
ଦୈତ୍ୟ ବଧ ହେଲା ଏହୁ ଦେବେ ଉଦ୍ଧାରିଲା ॥

ଏହାଶିରେ ଅର୍ଘ୍ୟ ଦିଅ ସର୍ବ ଦେବତାଏ ।
ଜଗଦୁଦ୍ଧାରଣୀ ଅଟେ ଏହୁ ମହାମାୟେ ॥
ପ୍ରମନ୍ତେ ଯହୁଁ କହିଲେ ଦୁର୍ଗତିତାରଣୀ ।
ଦେବତାଏ ଅନନ୍ଦିତ ହେଲେ ତାହା ଶୁଣି ॥
ଅର୍ଘ୍ୟ ବଢ଼ାଇଲେ ସର୍ବ ମଙ୍ଗଳାଙ୍କ ଶିରେ ।
ଅନେକ ଆନନ୍ଦ ହେଲେ ବ୍ରହ୍ମା ଅଦି ସୁରେ ॥
ସର୍ବେଶ୍ୱରୀ ନାମ ତାଙ୍କୁ ଦେଲେ ଦେବତାଏ ।
ବୋଇଲେ ଏହାରେ ଦୁଃଖ ଖଣ୍ଡିଲୁଁ ସବହେଁ ॥
ଦୁର୍ଗା ବୋଇଲ ମୋତେ ଉଦ୍ଧରିଲୁ ସର୍ବେଶ୍ୱରୀ ।
ମୈଷାସୁରକୁ ଏ ଦେବୀ ଥାଉ ଚିନ୍ତା କରି ॥
ଦୁର୍ଗା ବୋଲେ ମମ ଭକ୍ତ ଯେ କରିବ ଇଚ୍ଛା ।
ସର୍ବମଙ୍ଗଳ ବୋଲିଣ ହୃଦେ କରୁ ବାଞ୍ଛା ॥
ମୋତେ ଉଦ୍ଧରିଲା ଏ ଯେ ଅଗାଧସାଗରୁ ।
ତ୍ରୈଲୋକ୍ୟ ଜନଙ୍କର ଏ ଦୁଃଖମାନ ହରୁ ॥
ଦୁର୍ଗାଦେବୀଙ୍କର ଅଜ୍ଞା ପ୍ରମାଣରେ ହାଦେ ।
ସର୍ବଦେବେ ନମିଲେକ ମଙ୍ଗଳାଙ୍କ ପାଦେ ॥
ନମସ୍ତେ କାତ୍ୟାୟନୀ ଗୋ ଭୀଷଣମୂରତି ।
ନମସ୍ତେ ନମସ୍ତେ ମାଗୋ ବିନାଶୁ ଦୁର୍ଗତି ॥
କୁଙ୍କୁମ ବର୍ଣ୍ଣ ଶରୀର ଅରକ୍ତ ଲୋଚନ ।
ସଦା ସୁଧା ବୃଷ୍ଟି କରୁ ଜଗତମୋହନ ॥
ପ୍ରତିଜ୍ଞା ସାର୍ଥକ କରୁ ଅଚଳ ପରମେ ।
ଅଜସ୍ରକୁ ଜନ୍ମ କରୁ ତୁମ୍ଭ ସର୍ବଦାଏ ॥
ଜାତ ଅନ୍ତ ମଧ୍ୟକୁ ଗୋ ତୋହର ବିକାର ।
ସଦାନ୍ତ ମଙ୍ଗଳା ନାମ ଅଟଇ ଯାହାର ॥
ଦୁର୍ଗାଙ୍କ ଅଗୋଚର ଗୋ ତୋହର ଚରିତ ।
ଜୟ ମୁଁ ବନ୍ଦିବ ମାଗୋ ମର୍ତ୍ତ୍ୟେ ହୋଇ ଜାତ ॥
ହେ ବୁଧେ ଧନ ସନ୍ତତି କର ଯେବେ ଇଚ୍ଛା ।
ସର୍ବମଙ୍ଗଳାଙ୍କୁ ହୃଦେ କର ସଦା ବାଞ୍ଛା ॥
ଶୁଣ ହୋ ପରୀକ୍ଷ ରାଜା କହେ ଶୁକମୁନି ।
ନାନା ପାତକ ଧ୍ୱଂସି ରୁ ହେଲୁ ମହାଜ୍ଞାନୀ ॥
କନ୍ୟାମାସ କୃଷ୍ଣପକ୍ଷ ସପ୍ତମୀର ଦିନ ।
ଭୌମବାର ପୁନର୍ବସୁ ନକ୍ଷ ଉଦୟମାନ ॥
ଏପରେ ହୋଇଲା ପୁଷ୍ୟା ନକ୍ଷ ବୁଧବାର ।
ଦୁର୍ଗା ବିଜେ କଲେ ରତ୍ନଗିରିର ଶିଖର ॥
ସେ ଅଷ୍ଟମୀ ରାତ୍ରେ ଚଣ୍ଡ ମୁଣ୍ଡ ପ୍ରାଣ ଗଲା ।
ଷୋଳ ଦିବସ ପର୍ଯ୍ୟନ୍ତେ ସମର ହୋଇଲା ॥

କୋଷ୍ଟ କୋଷ୍ଟ କାଟିଅକ୍ଷୌହିଣୀ ଦୈତ୍ୟବଳ ।
ପନ୍ଦର ଦିନ ସଂଗ୍ରାମେ ବିନାଶ ସକଳ ॥
କନ୍ୟା ଶୁକ୍ଳାଷ୍ଟମୀ ଦିନ ହେଲା ମହାମାରୁ ।
ଅସୁର ଅପୁଣ୍ୟ ନ ହୁରୁଇଲେ ତହିଁରୁ ॥
ନବମୀ ଦିବସରେ ମହାମାରୁ ଯେ ହୋଇଲା ।
ତେଣୁ ମହାମାରୁ ନବମୀ ତା ନାମ ହେଲା ॥
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନ ।
ଗୁରୁବାର ଶ୍ରବଣାନକ୍ଷତ୍ର ବିଦ୍ୟମାନ ॥
ତୈତିଳ ନାମେ କରଣ ଯୋଗ ନାମେ ଧୃତ ।
ସର୍ବସିଦ୍ଧ ହୋଇଲା ଯେ ଦଶମୀର ତଥ୍ୟ ॥
ସମସ୍ତ ଶୁଭ ମଙ୍ଗଳ ହେଲା ଉତପତ୍ତି ।
ତେଣୁ ଦୁଃଖହା ଦଶମୀ ନାମେ ଭବେ ଖ୍ୟାତ ॥
ଉମା ମହେଶ୍ୱର ଯେଣୁ ହେଲେ ଏକଯୋଗ ।
ସଂସାର ଜନଙ୍କ ଦୁଃଖ ନାଶ ଗଲା ବେଗ ॥
ଠାକୁର ଠାକୁରାଣୀ ଯେ କୈଳାସ ଗଲେ ।
ବ୍ରହ୍ମା ଆଦି ଦେବଗଣେ ଅଭୟ ସେ ଦେଲେ ॥
ପରୀକ୍ଷିତ ରାଜା ଅପୁତ୍ରିକ ହୋଇଥିଲେ ।
ଶ୍ରୀ ଚଣ୍ଡୀମହିମା ଶୁକ ମୁନି ଯେ କହିଲେ ।
ଷୋଳ ଦିନ ଅନ୍ତରେ ସେ ଦେଲା ପୂର୍ଣ୍ଣାହୁତି ।
ସେହି ଯୋଗରୁ ପୁତ୍ରେକ ହେଲା ଉତପତ୍ତି ।
ଯାଗ ହେତୁରୁ କୁମର ଜନମ ହୋଇଲେ ।
ଜନମେଜୟ ତାହାଙ୍କ ନାମ ଶୁକ ଦେଲେ ॥
ବୁଡ଼ୁଥିବା ସୋମବଂଶ ଉଦେ ହେଲା କାଳେ ।
ପୁତ୍ର ପୌତ୍ରୀ ହୁଏ ଚଣ୍ଡୀ ଶାସ୍ତ୍ରକୁ ଶୁଣିଲେ ॥
ଚଣ୍ଡୀଶାସ୍ତ୍ର ଶୁଣି ତୋଷ ପରୀକ୍ଷିତ ରାଜା ।
ଶୁକମୁନି ପଦ୍‌ପାଦେ କଲେ ଦିବ୍ୟ ପୂଜା ॥
ଚନ୍ଦନ କୁଣ୍ଡଳ ରତ୍ନମାଳା ଧୂପ ଦୀପ ।
ଏତେ ଦେଇ ହେଲା ଗତେ ଦଣ୍ଡ ପ୍ରଣିପାତ ।
ପଞ୍ଚକୋଷ୍ଟ ରତ୍ନ ସ୍ୱର୍ଣ୍ଣଥାଳରେ ସେ ଭରି ।
କଲେ ପାଦପୂଜା ପରୀକ୍ଷିତ ନୃପଧାରୀ ॥
ଅହେ ବୁଧଜନମାନେ ଏକମନେ ଶୁଣ ।
ଶ୍ରୀ ଚଣ୍ଡିକା ଶାସ୍ତ୍ର ସ୍ୱର ବେଦରୁ ଜନମ ॥
ଏକମନ ଏକଚିତ୍ତ କରି ଏହା ଶୁଣ ।
ଧର୍ମ ଅର୍ଥ କାମ ମୋକ୍ଷ ପାଇବ ସନ୍ତାନ ॥
ଜ୍ଞାନେ ଅଜ୍ଞାନେ ଦିଅନ୍ତି ଯେବେ ପଢ଼ୁଥାଇ ।
ଔଷଧ ବ୍ୟାଧି ନାଶିଲା ପରି ନାଶଯାଇ ॥

ଅନେକ ଜନ୍ମର ପାପମାନ କ୍ଷୟ ଯାଇ ।
ଚଣ୍ଡୀ ଶାସ୍ତ୍ର ଶୁଣିଲେ ପାପକ୍ଷୟ ହୋଇ ॥
ଶତ୍ରୁ ଜିଣିବାକୁ ଯେବେ ବଳୁର ହେ ପୁଣ ।
ଏକଲକ୍ଷ କରି ଚଣ୍ଡୀଶାସ୍ତ୍ରକୁ ଯେ ଶୁଣ ॥
ରାଜଦ୍ୱାରେ ଯାହାକୁଟି ପଡ଼ିବ ପ୍ରମାଦ ।
ଏହା ଶୁଣିଲାକ୍ଷଣି ତା ଛାଡ଼ିଯିବ ଦ୍ୱନ୍ଦ ॥
ଯେଉଁ ଜନମାନଙ୍କର ନାହିଁ ଯେ ସନ୍ତାନ ।
ଶ୍ରୀ ଚଣ୍ଡିକା ଶାସ୍ତ୍ର ଶୁଣ ହେଉ ପୁତ୍ର ଜନ୍ମ ॥
ଶ୍ରୀ ଚଣ୍ଡିକା ଶାସ୍ତ୍ରକୁଟି ଯେଉଁଜନ ଶୁଣି ।
ଲଙ୍ଘନ୍ତି ତରନ୍ତି ଯେ ଯମଦଣ୍ଡ ଜିଣି ॥
ଉପ୍ସିତମାନଙ୍କରେ ଟି ଯାହା ମନଭ୍ରାନ୍ତ ।
ଏ ଶାସ୍ତ୍ର ଶୁଣନ୍ତି ସର୍ବଦୋଷ ହୁଏ ଶାନ୍ତ ॥
ବ୍ରହ୍ମା ଯାହାଙ୍କର ନାମ ସ୍ମରେ ହୃଦଗତେ ।
ମୁହିଁ ତାହା ସଂକ୍ଷେପେଣ କହିବଟି କେତେ ॥
ଯେବଣ ଶାସ୍ତ୍ର ଏ ବେଦପୁରାଣେ ଉତ୍ତମା ।
କୃପାଜଳ ନାମେ ଯେଉଁ ମୁନି ମହାବ୍ରହ୍ମା ॥
ସେ କହି ନ ପାରିଲା ଏ ଶାସ୍ତ୍ରର ମହିମା ।
କହିବାକୁ ଯେ ଶକ୍ୟ ହେବ କେ ମନୁଷ୍ୟଅଜ୍ଞା ॥
ପରଶୁରାମ ଯାହାକୁ ନିତ୍ୟ କରେ ପୂଜା ।
ସ୍ୱର୍ଗପୁରେ ଆରାଧନା କରନ୍ତି ବଡ଼ୋଜା ॥
ଏକଚିତ୍ତ କରି ତାହା ଶୁଣ ହେ ବିଶେଷେ ।
ଶୁଭଭିଣ ବର୍ତ୍ତିବ ଯେବେ କଳିକାଳ ଧ୍ୱଂସି ॥
ମନୁ କାଳ ଚଣ୍ଡବଶ ଯାକୁ କଲେ ଲଟପ୍ଣ ।
ସେ ଦେବୀର ପ୍ରସନ୍ନରେ ମୋର ଜ୍ଞାନ ହୁଏ ॥
ଜନ୍ମେ ଜନ୍ମେ ଚଣ୍ଡୀପାଦେ ଲୁଚେ ମୋର ମଥା ।
ଏଣୁ ଜାଣିଲି ମୁଁ ଜପମନ୍ତ୍ର ଅର୍ଥ କଥା ॥
ଶ୍ରୀଚଣ୍ଡୀ ଶାରଳା ଯେ ଅଭୟ ବରଦାତା ।
ଜଗତମଧ୍ୟରେ ଯେଉଁ ଦେବୀ ଆଦିମାତା ॥
ମୋତେ ସେ ଯାହା କହିଲ ନିଶିରେ ସ୍ୱପନେ ।
ମୁଁ ତା ବଖାଣିଲି ତାର ଆଜ୍ଞା ପରମାଣେ ॥
ତେଣୁ ଜନ୍ମେ ଜନ୍ମ ଅଟେଁ ମୁଁ ତାହାର ଦାସ ।
ଏଣୁ କରି ଏ ଶାସ୍ତ୍ରକୁ କଲି ପରକାଶ ॥
ଜୟ ଜୟ ଜନନି ଗୋ ଦେବି କାତ୍ୟାୟନି ।
ଆଦି ଅନ୍ନପୂର୍ଣ୍ଣା ଭୁବି ମା ଗୋ ନାରାୟଣି ॥
ଅନାଦି ଶକ୍ତିମାତା ଗୋ ଶ୍ରୀ ଶାରଳା ଦେବି ।
ତବ ଚରଣରେ ଜନ୍ମେ ଜନ୍ମ ମୁହିଁ ସେବି ॥

ଛପନ କୋଟି ଦେବୀ ଯେ ଚୌଷଠି ଯୋଗିନୀ ।
ଅଷ୍ଟ ଚଣ୍ଡୀ ଦେବୀ ନବକୋଟି କାତ୍ୟାୟନୀ ॥
ମହାଶକ୍ତି ମଣ୍ଡଳେ ଯେଉଁ ମହାନଦବୀ ।
ତାଙ୍କ ପଦେ ଶରଣ ମୁଁ ଶାରଳା ଯେ କହ ॥
ଜନ୍ମେ ଜନ୍ମେ ଅଛଇଁ ଗୋ ମୁହିଁ ଶୂଦ୍ରମୁନ ।
କେବଳ ସେବିଲି ଦୁର୍ଗା ଶ୍ରୀଚରଣ ବେନି ॥
ଶ୍ରୀ ଦୁର୍ଗାର ଶ୍ରୀଚରଣ ତଳେ ମୁଁ ଶରଣ ।
ଶ୍ରୀ ସର୍ବମଙ୍ଗଳା ପାଦେ ମୋର ନିବେଦନ ॥

ଇତି ଶ୍ରୀ ଚଣ୍ଡୀପୁରାଣ ସମ୍ପୂର୍ଣ୍ଣ ।



କଟକ, ଅରୁଣୋଦୟ ପ୍ରେସରେ ପ୍ରିଣ୍ଟର ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ ।

# ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକମାନ କଟକ ଅରୁଣୋଦୟ ପୁସ୍ତକାଳୟରେ ବିକ୍ରୟାର୍ଥେ
ଗ୍ରାହକଗଣ ଚେଷ୍ଟାକଲେ ଅନାୟାସେ ପ୍ରାପ୍ତ ହେବେ ।

| | |
|---|---|
| ମହାଭାରତ ଆଦିପର୍ବ | ଟ ୨୳ |
| ,, ମଧ୍ୟପର୍ବ | ଟ ୨୳ |
| ,, ସଭାପର୍ବ | ଟ ୨୳ |
| ,, ବନପର୍ବ | ଟ ୨୳ |
| ,, ବିରାଟପର୍ବ | ଟ ୧। |
| ,, ଉଦ୍ଯୋଗପର୍ବ | ଟ ୧( |
| ,, ଭୀଷ୍ମପର୍ବ | ଟ ୧। |
| ,, ଦ୍ରୋଣପର୍ବ | ଟ ୦ ୳ |
| ,, କର୍ଣ୍ଣପର୍ବ | ଟ ୦ ।⁄ |
| ,, ଶଲ୍ୟପର୍ବ | ଟ ୦ ⁄ |
| ,, ଗଦାପର୍ବ | ଟ ୦ ⁄ |
| ,, କାଇଶିକା ବା ଐଷିକପର୍ବ | ଟ ୦ । |
| ,, ନାରୀ ଓ ଶାନ୍ତିପର୍ବ | ଟ ୦ ⁄ |
| ,, ଅଶ୍ୱମେଧ ଓ ଆଶ୍ରମିକପର୍ବ | ଟ ୦ ।⁄ |
| ,, ମୁଷଳୀପର୍ବ | ଟ ୦ ।⁄ |
| ,, ସ୍ୱର୍ଗାରୋହଣପର୍ବ | ଟ ୦ ।⁄ |
| ରାମାୟଣ ଆଦିକାଣ୍ଡ | ଟ ୧ ( |
| ,, ଅଯୋଧ୍ୟାକାଣ୍ଡ | ଟ ୦ ୳⁄ |
| ,, ଅରଣ୍ୟକାଣ୍ଡ | ଟ ୦ ୳⁄ |
| ,, କିଷ୍କିନ୍ଧ୍ୟାକାଣ୍ଡ | ଟ ୦ ୳⁄ |
| ,, ସୁନ୍ଦରକାଣ୍ଡ | ଟ ୦ ୳⁄ |
| ,, ଲଙ୍କାକାଣ୍ଡ | ଟ ୧୳ |
| ,, ଉତ୍ତରକାଣ୍ଡ | ଟ ୧। |
| ନୃସିଂହପୁରାଣ ୧ମ ରତ୍ନାକର | ଟ ୧ ( |
| ,, ୨ୟ ରତ୍ନାକର | ଟ ୦ ୳ |
| ,, ୩ୟ ରତ୍ନାକର | ଟ ୧( |
| ,, ୪ର୍ଥ ରତ୍ନାକର | ଟ ୧୳ |
| ,, ୫ମ ରତ୍ନାକର | ଟ ୦ ।⁄ |
| ,, ୬ଷ୍ଠ ରତ୍ନାକର | ଟ ୦ ।⁄ |
| ,, ୭ମ ରତ୍ନାକର | ଟ ୧୳ |
| ବ୍ରହ୍ମବୈବର୍ତ୍ତପୁରାଣ ବ୍ରହ୍ମଖଣ୍ଡ | ଟ ୦ ୳⁄ |
| ,, ପ୍ରକୃତିଖଣ୍ଡ | ଟ ୨( |
| ,, ଗଣେଶଖଣ୍ଡ | ଟ ୧( |
| ,, ଶ୍ରୀକୃଷ୍ଣଜନ୍ମଖଣ୍ଡ | ଟ ୨।⁄ |
| ଦଶ କେଶବ ପୁରାଣ ପ୍ରଥମସର୍ଗ | ଟ ୧। |
| ,, ଦ୍ୱିତୀୟସର୍ଗ | ଟ ୧( |
| ,, ତୃତୀୟସର୍ଗ | ଟ ୧( |
| ,, ଚତୁର୍ଥସର୍ଗ | ଟ ୦ ।⁄ |
| ,, ପଞ୍ଚମସର୍ଗ | ଟ ୦ ୳⁄ |

ଶିବପୁରାଣ ପ୍ରଥମଖଣ୍ଡ
,, ଦ୍ୱିତୀୟଖଣ୍ଡ
,, ତୃତୀୟ ଖଣ୍ଡ
,, ଚତୁର୍ଥଖଣ୍ଡ
ନାରଦ ପୁରାଣ
ମତ୍ସ୍ୟପୁରାଣ
ମାର୍କଣ୍ଡେୟପୁରାଣ (ସଚିତ୍ର)
କୂର୍ମପୁରାଣ ୧ମ ୨ୟ ଏକତ୍ର
,, ୩ୟ
ବରାହପୁରାଣ
ବିଲଙ୍କାରାମାୟଣ ପୂର୍ବଖଣ୍ଡ
ଏକତ୍ର ଉତ୍ତରଖଣ୍ଡ
ସଚିତ୍ର ଅଧ୍ୟାତ୍ମ ରାମାୟଣ
ଗଣେଶପୁରାଣ
ବୈଦେହୀଶବିଳାସ ୧ମ ଖଣ୍ଡ
,, ୨ୟ ଖଣ୍ଡ
,, ୩ୟ ଖଣ୍ଡ
,, ୪ର୍ଥ ଖଣ୍ଡ
ସଚିତ୍ର ହରିବଂଶ ୧ମ ଖଣ୍ଡ
,, ,, ୨ୟ ଖଣ୍ଡ
,, ,, ୩ୟ ଖଣ୍ଡ
,, ,, ୪ର୍ଥ ଖଣ୍ଡ
,, ,, ୫ମ ଖଣ୍ଡ
,, ,, ୬ଷ୍ଠ ଖଣ୍ଡ
,, ,, ୭ମ ଖଣ୍ଡ
ଶ୍ରୀମଦ୍ଭାଗବତ ୧ମ ସ୍କନ୍ଧ
,, ୨ୟ ସ୍କନ୍ଧ
,, ୩ୟ ସ୍କନ୍ଧ
,, ୪ର୍ଥ ସ୍କନ୍ଧ
,, ୫ମ ସ୍କନ୍ଧ
,, ୬ଷ୍ଠ ସ୍କନ୍ଧ
,, ୭ମ ସ୍କନ୍ଧ
,, ୮ମ ସ୍କନ୍ଧ
,, ୯ମ ସ୍କନ୍ଧ
,, ୧୦ମ ସ୍କନ୍ଧ (ଷୋଡ
(ଦ୍ୱାଦଶ
,, ୧୧ଶ ସ୍କନ୍ଧ
,, ୧୨ଶ ସ୍କନ୍ଧ
,, ୧୩ଶ ସ୍କନ୍ଧ

ଅରୁଣୋଦୟ ପ୍ରେସ, ବାଲୁବଜାର କଟକ
ପୋଃ ଅଃ ଚାନ୍ଦନୀଚୌକ ।

ପ୍ରିଣ୍ଟର—
ଶ୍ରୀ ନିତ୍ୟାନନ୍ଦ ସା